# ଅରଣ୍ୟ ଯାତ୍ରୀ





ବିଜୟ କେତନ ପଟ୍ଟନାୟକ

*" I think, I shall never see*
*A poem as lovely as a tree!"*

**-Joyce Kilmer**

# ଅରଣ୍ୟଯାତ୍ରୀ

(ଆତ୍ମକଥା)

## ବିଜୟ କେତନ ପଟ୍ଟନାୟକ

ପ୍ରକାଶକ : ଅପୂର୍ବା
୪୮, ମଧୁସୂଦନ ନଗର,
ଭୁବନେଶ୍ୱର - ୭୫୧୦୦୧

ପ୍ରଥମ ସଂସ୍କରଣ : ଦୀପାବଳି, ୨୦୦୮



ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : ରାଜକୁମାର

ମୂଲ୍ୟ : ୧୨୦ ଟଙ୍କା

# ARANYAYATRI

**Autobiography of Bijay Ketan Patnaik**

Publisher : **Apurba**
48, Madhusudan Nagar,
Bhubaneswar - 751 001

First Edition : Deepabali, 2008



Printed at : Apurba Off-Set
Bhubaneswar - 751 001

Cover Design : Rajkumar

**Price : Rs.120 /-(One Hundred Twenty only)**

# ଉତ୍ସର୍ଗ

'ଅରଣ୍ୟଯାତ୍ରୀ'ର ସହଯାତ୍ରୀ ତ୍ରୟ :

ପତ୍ନୀ ଲିପିକା, ପୁତ୍ର ବିଶ୍ୱଜିତ୍

ଓ

କନ୍ୟା ରୋମିଲାଙ୍କୁ...

# ଯାତ୍ରା ପୂର୍ବରୁ...

ଜୀବନର ଅନ୍ୟ ନାମ ହିଁ ଯାତ୍ରା। ମା'ର ଅମୃତ ଜଠରରୁ ଆସି ମାଟିର ମହକ ଛୁଇଁଲା ପରଠୁ ଏହାର ଅୟମାରମ୍ଭ। ସମାପ୍ତି ମୃତ୍ୟୁରେ। ଯାତ୍ରା ପଥ କେବେ ସୁରଭିତ ତ କେବେ କଣ୍ଟକିତ। ଲମ୍ବିଯାଇଥାଏ ବିନ୍ଦୁରୁ ଦିଗ୍‌ବଳୟ ଯାଏଁ। ମାଟିରୁ ଅପହଞ୍ଚ ଆକାଶ ଯାଏଁ। କେବେ ଖିଲି ଖିଲି ପବନ ତ, କେବେ ସୁନାମୀ।

'ଅରଣ୍ୟଯାତ୍ରୀ'ର ଯାତ୍ରାରେ ଟିକେ ନିଆରାପଣ ରହିଛି। ଯାତ୍ରା ଆରମ୍ଭ ହୋଇଥିଲା ୧୯୭୫ ମସିହାରେ; ଭାରତୀୟ ବନସେବାରେ ଯୋଗଦାନ କରିବା ଅବସରରେ। କିନ୍ତୁ ଯାତ୍ରାର ପ୍ରାକ୍ କଥନିକା ଦାନା ବାନ୍ଧିଥିଲା ଅନେକ ପୂର୍ବରୁ। ଖୋର୍ଦ୍ଧା ବକ୍‌ସି ଜଗବନ୍ଧୁ ବିଦ୍ୟାଧର ହା.ଇ. ସ୍କୁଲ୍‌ର ଛାତ୍ର ଥିଲାବେଳେ ସେଠିକାର ବନବିଭାଗୀୟ ଅଧିକାରୀଙ୍କ ସୁଦୃଶ୍ୟ ବଙ୍ଗଳା ଓ ତା'ର ପ୍ରଶସ୍ତ ହତା ଏ ଲେଖକକୁ ବିମୋହିତ କରିଥିଲା। ସେ ଚୌହଦି ଭିତରର ପ୍ରକୃତି, ତା'ର ସୁଠାମ ଠାଣି କରିଥିଲା ମୋତେ ଅରଣ୍ୟ-ମନସ୍କ। ପରେ ପରେ ୧୯୭୪ ମସିହାରେ ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ଅଧ୍ୟାପନା ସମୟରୁହିଁ ଆରମ୍ଭ ହୋଇଥିଲା ଅରଣ୍ୟଯାତ୍ରାର ପୂର୍ବ ପ୍ରସ୍ତୁତି।

'ଅରଣ୍ୟଯାତ୍ରୀ'ର ଯାତ୍ରାପଥ ଯେତିକି ରୋମାଞ୍ଚକର ସେତିକି ବିପଦ ସଂକୁଳ, ଯେତିକି ସଂଭାବନାମୟ ସେତିକି ଆହ୍ୱାନପୂର୍ଣ୍ଣ। ଯାତ୍ରା ପଥରେ ଅନେକ ସହଯାତ୍ରୀ ଆସିଛନ୍ତି, ଆସିଛନ୍ତି ଶୁଭେଚ୍ଛୁ, ପ୍ରଶଂସକ, ନିନ୍ଦୁକ ଓ ସମାଲୋଚକ ମଧ୍ୟ। କିନ୍ତୁ ଅନନ୍ୟ, ଅନୁପମ ଭାବେ ଏ ଯାବତ୍ ପାଦକୁ ପାଦ ମିଳାଇ ଚାଲିଛନ୍ତି ପତ୍ନୀ ଲିପିକା। ଆଗାମୀ ପ୍ରତିଶ୍ରୁତି ନେଇ ଅରଣ୍ୟଯାତ୍ରୀର ଛୋଟ ସଂସାରକୁ ଆସିଛନ୍ତି ପୁତ୍ର ବିଶ୍ୱଜିତ୍ ଓ କନ୍ୟା ରୋମିଲା। ଯାତ୍ରା ସମୟର ଛୋଟବଡ଼ ଘଟଣା, ଦୁର୍ଘଟଣା, କାହାଣୀ ଓ କଥନରେ ପ୍ରତିବିମ୍ବିତ ହୋଇଛି ସେମାନଙ୍କର ଚିତ୍ର।

ସରକାରୀ ଚାକିରି ଅବଧିରେ ଘଟିଥିବା ଘଟଣାସମୂହ ଯାହା ମନରେ ଛାପି ହୋଇଯାଇଛି, ସେ ସବୁକୁ ନିଷ୍କପଟ ଭାବେ ବ୍ୟକ୍ତ କରିବାକୁ ପ୍ରୟାସ କରାଯାଇଛି। ପାଠକେ ଏହାକୁ ନିର୍ଭେଜାଲ ଆତ୍ମକଥନ କହିପାରନ୍ତି ବା କହିପାରନ୍ତି ଏକ ସଚ୍ଚୋଟ ସ୍ୱୀକାରୋକ୍ତି।

'ଅରଣ୍ୟଯାତ୍ରୀ' ସ୍ତମ୍ଭରେ ଚାକିରି ଜୀବନର ଅଙ୍ଗେନିଭା ଘଟଣାକୁ ଏମିତି ଢଙ୍ଗରେ ଲେଖିବାକୁ ପ୍ରଥମରୁ ପ୍ରେରଣା ଦେଇ ଆସିଛନ୍ତି ସମ୍ଭ୍ରାନ୍ତ ପତ୍ରିକା 'ଅପୂର୍ବା'ର ସଂପାଦକ, ଗାଳ୍ପିକ କ୍ଷୀରୋଦ ଚନ୍ଦ୍ର ପତି। ଲେଖାଗୁଡ଼ିକ କ୍ରମାଗତଭାବେ ନିଜ ପତ୍ରିକାରେ ସ୍ଥାନିତ କରି ପରେ ସଂକଳିତ କରିବାର ଉଦ୍ୟମ କରିଥିବାରୁ ସେ ନିଶ୍ଚିତଭାବେ ଧନ୍ୟବାଦାର୍ହ। 'ଅରଣ୍ୟଯାତ୍ରୀ'ର ପ୍ରତ୍ୟେକଟି ପରିଚ୍ଛଦକୁ ନିର୍ଭୁଲ୍‌ଭାବେ ପରିସ୍ଫୁଟନ କରିବାରେ ଯାହାଙ୍କର ଯାଦୁକରୀ ସ୍ପର୍ଶ ରହିଛି, ସେ ମୋର ପ୍ରିୟ କବି, ବନ୍ଧୁ କମଳାକାନ୍ତ ପଣ୍ଡା (କଳ୍ପକାନ୍ତ)। ପୁସ୍ତକଟିର ପ୍ରଚ୍ଛଦ ତଥା ସନ୍ନିବେଶିତ ରେଖାଚିତ୍ରଗୁଡ଼ିକ ନିଷ୍ପାପର ଭାବରେ ଆଙ୍କି ଦେଇଥିବାରୁ ନନ୍ଦନକାନନର ଶିଳ୍ପୀ ରାଜକୁମାରଙ୍କୁ ଅଶେଷ ଧନ୍ୟବାଦ।

-ଲେଖକ

# ସୂଚୀପତ୍ର

# ଯାତ୍ରା ଆରମ୍ଭ



ପିଲାଟି ଦିନରୁ ମୁଁ ପ୍ରକୃତି ମନସ୍କ ।

ପାଞ୍ଚ ନମ୍ବର ଜାତୀୟ ରାଜପଥ କଡ଼ରେ, ଖୋର୍ଦ୍ଧା ସହରର ପ୍ରବେଶ ଦ୍ୱାରରେ ଅବସ୍ଥିତ ମୋ' ଗାଁ ମୁକୁନ୍ଦ ପ୍ରସାଦ । ଗାଁର ପ୍ରାକୃତିକ ଶୋଭା ସମ୍ଭାର, ମେଲଣ ପଡ଼ିଆ, ଆମ୍ବତୋଟା, କଇଁ ଫୁଲରେ ଭର୍ତ୍ତି ବଡ଼ ପୋଖରୀ, ପୋଖରୀ ତୁଠରେ କଦମ୍ବ ବଣ ଏବଂ ଦକ୍ଷିଣ-ପୂର୍ବ ପଟେ ଗ୍ରାମ୍ୟ ଶ୍ମଶାନ କଡ଼େ କଡ଼େ ବରୁଣେଇ ପାହାଡ଼ ନାସି ପର୍ଯ୍ୟନ୍ତ ଲମ୍ବିଯାଇଥିବା ବେତ, ବଇଁଚ କୋଳିର ବୁଦୁବୁଦିକିଆ ବଣ-ଏମିତି ବଣ ଜଙ୍ଗଲ ଭରା ପ୍ରାକୃତିକ ପରିବେଶରେ ତଲ୍ଲୀନ ଥିଲା ମୋର ପିଲାଦିନ । ଖୋର୍ଦ୍ଧା ବକ୍‌ସି ଜଗବନ୍ଧୁ ବିଦ୍ୟାଧର ହା.ଇ.ସ୍କୁଲର ଛାତ୍ର ଥିଲାବେଳେ, ସ୍କୁଲ ସନ୍ନିକଟ ବଙ୍ଗଳାର ବିସ୍ତୃତ ବଗିଚା ଭିତରକୁ ଆମେ ଲୁଚିଲୁଚି ପଶୁ । ଭୂତ କୋଠି ଭଳି ବଙ୍ଗଳା ଓ ବଙ୍ଗଳାକୁ ବେଢ଼ି ରହିଥିବା ପରିବ୍ୟାପ୍ତ ବଗିଚାକୁ ଜଗି ରହୁଥିବା ଏକମାତ୍ର ମାଳୀଟିଏ, ବେଳେ ବେଳେ ଦିପହର ବେଳକୁ ଶୋଇ ପଡିଥାଏ; ନଚେତ୍ ଖାଇବା ପାଇଁ ବାହାରକୁ ଯାଇଥାଏ । ସେହି

ସମୟରେ ଆମେ ସ୍କୁଲ ପିଲାମାନେ ବଗିଚାରୁ ଜାତି ଜାତିକା ମିଠାଫଳ ଲୁଟିବାରେ ଲାଗିଯାଉ । ସପେଟା, ଜାମ୍‌ରୋଲ, କାରିସା, ଅଁଳା, ଲିଚୁ, ଆମ୍ବ, ଜାମୁ, ଲଙ୍କା ଆମ୍ବ ଏମିତି କେତେ କ'ଣ । ଯେଉଁ ଫଳ ଯେତେବେଳେ ଫଳିଥାଏ । ବେଳେ ବେଳେ ମାଳୀ ହାତରେ ଧରା ପଡ଼ିଯାଉ । କାକୁତି ମିନତି ନେହୁରା ହୋଇ, ନ ହେଲେ ଆମ ପକେଟ ଖର୍ଚ୍ଚରୁ ମାଳୀକୁ କିଛି ହାତ ଗୁଞ୍ଜାଦେଇ ଅନେକବାର ମୁକୁଳିଛୁ । ସେହି ବିରାଟ ବଗିଚା ଭିତରେ ଥିବା ବଙ୍ଗଳାଟିର ନାଁ ଥିଲା 'ଡଟ୍‌ସ୍‌ୱାର୍ଥ ବଙ୍ଗଳା' । ଶୁଣିବାକୁ ମିଳେ ଜଙ୍ଗଲ ବିଭାଗର ଜଣେ ବଡ଼ ସାହେବ ଥିଲେ ଡଟ୍‌ସ୍‌ୱାର୍ଥ । ସେ ଖୋର୍ଦ୍ଧାର ଡି.ଏଫ୍.ଓ ଥିଲାବେଳେ ଦଶ ଏକର ପରିମିତ ଏହି ଜାଗାଟିକୁ କିଣି ସେଠି କୋଠି ତିଆରି କରିଥିଲେ ଏବଂ କୋଠି ଚାରିପଟେ ଆମ୍ବ, ପଣସ, ଲିଚୁ, ସପେଟା ଆଦି ଫଳ ଗଛର ସୁନ୍ଦର ବଗିଚାଟିଏ ସୃଷ୍ଟି କରିଥିଲେ । ଚାକିରୀରୁ ଅବସର ନେଲାପରେ ସେ ଏହି କୋଠିରେ ରହୁଥିଲେ ବୋଲି ଲୋକେ କୁହନ୍ତି । ତାଙ୍କ ଅନ୍ତେ ଏଠି ଆଉ କେହି ରହୁ ନାହାନ୍ତି । ମାଳୀଟି ଯାହା ବର୍ଷସାରା ବଙ୍ଗଳା ଓ ତତ୍ ସଂଲଗ୍ନ ବଗିଚାକୁ ଜଗି ରହିଥାଏ ।

ଡଟ୍‌ସ୍‌ୱାର୍ଥ କୋଠିର ଠିକ୍ ସାମନା ସାମ୍‌ନି, ରାଜପଥର ଅପର ପାର୍ଶ୍ୱରେ ଖୋର୍ଦ୍ଧା ଡି.ଏଫ୍.ଓ ଙ୍କ ବଙ୍ଗଳା ଓ ଅଫିସ୍ । ବନ ବିଭାଗର କେତୋଟି ହାତ ଗଣତି ପୁରାତନ ଡିଭିଜନ ଅଫିସ୍ ଭିତରୁ ଏହା ଅନ୍ୟତମ । ବ୍ରିଟିଶ ଅମଳର ଦୋ ଛପରି ଚାଳ । କୋଠି ଯେମିତି ବଡ଼, ତାହାଠୁ କେତେ ଗୁଣ ବଡ଼ ଡି.ଏଫ୍.ଓ.ଙ୍କ ବଙ୍ଗଳାର ହତା । ଖୋର୍ଦ୍ଧାରେ ଏମିତି କେବଳ ଦୁଇଟି ବଡ଼ ବଙ୍ଗଳା ସେତେବେଳେ ଥିଲା । ଗୋଟିଏ ଫରେଷ୍ଟ ବଙ୍ଗଳା ତ ଅନ୍ୟଟି ସବ୍ କଲେକ୍ଟରଙ୍କର । ପୂର୍ବରୁ ଦୁଇଟିଯାକ ପଦବୀ ଇଂରେଜ ଅଫିସର ମାନେହିଁ ଅଳଙ୍କୃତ କରୁଥିଲେ । କେବଳ ବଙ୍ଗଳାର ଆକର୍ଷଣ ନୁହେଁ । ଆମେ ସ୍କୁଲରେ ପଢ଼ିଲାବେଳେ ଖୋର୍ଦ୍ଧା ଓ ତା' ଆଖପାଖ ଅଞ୍ଚଳରେ ପ୍ରାୟ ଡର୍ଜନ ସରିକି ଅଫିସର ବନ ବିଭାଗର ବିଭିନ୍ନ ଉଚ୍ଚ ପଦ ପଦବୀରେ ଅବସ୍ଥାପିତ ଥିଲେ । ଏ ସବୁ ପରିବେଶ ଓ ପରିସ୍ଥିତିର ଆକର୍ଷଣ, ସ୍କୁଲ ଜୀବନରୁହିଁ ଜଙ୍ଗଲ ବିଭାଗରେ ଭବିଷ୍ୟତରେ ଯୋଗଦେବା ନିମନ୍ତେ ମୋ ମନରେ ଅହେତୁକ ଆଗ୍ରହ ଜନ୍ମାଇଥିଲା ।

ସମୟକ୍ରମେ ମୋ ଜୀବନର ଯାତ୍ରାପଥ ଭିନ୍ନ ମୋଡ଼ ନେଇଥିଲା । ସ୍କୁଲରୁ ଫାଷ୍ଟ ଡିଭିଜନ୍‌ରେ ମାଟ୍ରିକ ପାଶ୍ କଲାପରେ, ଖୋର୍ଦ୍ଧା ପ୍ରାଣନାଥ କଲେଜରୁ ଆଇ.ଏସ୍‌ସି, ଭୁବନେଶ୍ୱରସ୍ଥିତ ବି.ଜେ.ବି କଲେଜରୁ ବି.ଏସ୍‌ସି ଏବଂ ପରିଶେଷରେ ଉତ୍କଳ

ବିଶ୍ୱବିଦ୍ୟାଳୟ ବାଣୀବିହାରରୁ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ହାସଲ କଲି ୧୯୭୧ ମସିହାରେ । ଘରର ଆର୍ଥିକ ଦୁରବସ୍ଥା ହେତୁ, ସ୍ନାତକୋତ୍ତର ପରୀକ୍ଷା ଦେଇ ସାରିବା ପରେ ପରେ ଚାକିରି ଅନ୍ୱେଷଣରେ ଖୋର୍ଦ୍ଧା ନିକଟସ୍ଥ ଦଧିମାଛ ଗାଡ଼ିଆ ହାଇସ୍କୁଲକୁ ଯାଇଥିଲି । ମୁଁ ବକ୍‌ସି ଜଗବନ୍ଧୁ ବିଦ୍ୟାଧର ହାଇସ୍କୁଲରେ ପଢୁଥିବା ସମୟରେ, ସେଠିକାର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଦିବ୍ୟସିଂହ ପଟ୍ଟନାୟକ (ବର୍ତ୍ତମାନ ସ୍ୱର୍ଗତଃ) ସେତେବେଳକୁ ଚାକିରିରୁ ଅବସର ଗ୍ରହଣ କରି, ଦଧିମାଛ ଗାଡ଼ିଆ ହାଇସ୍କୁଲର ପରିଚାଳନା ପରିଷଦର ସଭାପତି ଥାନ୍ତି । ତାଙ୍କୁ ଦେଖାକରି ସମସ୍ତ ବିଷୟ ଜଣାଇବା ପରେ, ସେ ମୋତେ ସହକାରୀ ଶିକ୍ଷକ ଭାବରେ ସ୍କୁଲରେ ଯୋଗ ଦେବାକୁ ନିଯୁକ୍ତି ପତ୍ର ଦେଲେ । ଯେଉଁଦିନ ମୋର ଦଧିମାଛ ଗାଡ଼ିଆ ହା.ଇ.ସ୍କୁଲରେ ଯୋଗ ଦେବାର କଥା, ତାର ଦୁଇଦିନ ପୂର୍ବରୁ ମୋତେ ଆଉ ଗୋଟେ ଭଲ ଚାକିରୀ ମିଳିଗଲା । ବାଣୀବିହାର ପଦାର୍ଥ ବିଜ୍ଞାନ ବିଭାଗରେ ନୂଆକରି ଖୋଲା ଯାଇଥିବା କମ୍ପୁଟର ସେଣ୍ଟରରେ ଆସିଷ୍ଟାଣ୍ଟ ପ୍ରୋଗ୍ରାମର୍ । ମାସିକ ବେତନ ଟ୨୪୫ଙ୍କା । ସେ ସମୟରେ ବେସରକାରୀ କଲେଜର ଅଧ୍ୟାପକମାନଙ୍କୁ ମଧ୍ୟ ସେତିକି ମାତ୍ର ଦରମା ମିଳୁଥାଏ । ମୋ ବଦଳରେ ପଦାର୍ଥ ବିଜ୍ଞାନ ବିଭାଗରେ ମୋର ସହପାଠୀ ଏବଂ ଅନ୍ତରଂଗ ବଂଧୁ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କୁ ଦଧିମାଛଗାଡ଼ିଆ ହାଇସ୍କୁଲରେ ନିଯୁକ୍ତି ଦେବାପାଇଁ ଦିବ୍ୟସିଂହ ସାର୍‌ଙ୍କୁ ଅନୁରୋଧ କରିଥିଲି । ସେ ମଧ୍ୟ ତତ୍‌କ୍ଷଣାତ୍ ରାଜି ହୋଇଗଲେ । ତେଣୁ ମୋ ବଦଳରେ ଦଧିମାଛ ଗାଡ଼ିଆ ହାଇ ସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଜଏନ୍ କଲେ ବଂଧୁ ଗୋପୀନାଥ । ତାଙ୍କ ଘରର ଆର୍ଥିକ ଅବସ୍ଥା ମଧ୍ୟ ସ୍ୱଚ୍ଛଳ ନଥିଲା । ସେଠାକାର ହା.ଇ.ସ୍କୁଲରେ କିଛିଦିନ ଶିକ୍ଷକତା କଲାପରେ ସେ କଟକ ଷ୍ଟୁଆର୍ଟ କଲେଜରେ ଅଧ୍ୟାପକ ଚାକିରି ପାଇଗଲେ । ଅଧ୍ୟାପକରୁ ଓଡ଼ିଶା ପ୍ରଶାସନିକ ସେବାରେ ପ୍ରବେଶ ଏବଂ ବର୍ତ୍ତମାନ ଶ୍ରୀଯୁକ୍ତ ମହାନ୍ତି ଭାରତୀୟ ପ୍ରଶାସନିକ ସେବାର ଜଣେ ପଦସ୍ଥ ଅଫିସର (ଏବେ ଅବସରପ୍ରାପ୍ତ) ।

ମୁଁ ବାଣୀବିହାର ପଦାର୍ଥ ବିଜ୍ଞାନ ବିଭାଗରେ ଖୋଲାଯାଇଥିବା କଂପ୍ୟୁଟର ସେଣ୍ଟରରେ ଜଏନ୍ କଲି । ଏହାର କିଛିଦିନ ପରେ ୧୯୭୧ ମସିହା ଏମ୍.ଏସ୍‌ସି ପଦାର୍ଥ ବିଜ୍ଞାନ ବିଭାଗର ପରୀକ୍ଷାଫଳ ପ୍ରକାଶ ପାଇଲା । ମୁଁ ପ୍ରଥମ ଶ୍ରେଣୀରେ ରାଜ୍ୟରେ ପଞ୍ଚମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲି । ତା'ପରବର୍ଷ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର ସରକାରୀ କଲେଜରେ ଆଡହକ୍ ଅଧ୍ୟାପକ ଭାବରେ ମୋର ନିଯୁକ୍ତି ପତ୍ର ଆସି ପହଞ୍ଚିଲା । କିନ୍ତୁ ଉଚ୍ଚତର ଗବେଷଣା କରିବା ପାଇଁ ମନସ୍ଥିର କରି ସାରିଥିବାରୁ ମୁଁ ବାରିପଦା

କଲେଜରେ ଜଏନ୍ କରି ନଥିଲି । ବାଣୀବିହାର କମ୍ପୁଟର ସେଣ୍ଟରରେ କାର୍ଯ୍ୟ କରୁଥିବା ସମୟରେ, ପଦାର୍ଥ ବିଜ୍ଞାନ ବିଭାଗର ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ଡ. ବିଭୂତି ଭୂଷଣ ଦେଓଙ୍କ ତତ୍ତ୍ୱାବଧାନରେ ଥିଓରିଟିକାଲ୍ ଫିଜିକ୍ସରେ ଉଚ୍ଚତର ଗବେଷଣା କରିବା ପାଇଁ ଅନୁବନ୍ଧିତ ହେଲି । ପିଲାଟି ଦିନରୁ ପ୍ରକୃତି ଓ ପରିବେଶପ୍ରତି ରହି ଆସିଥିବା ଦୁର୍ବଳତା ଓ ସେହି ଦୁର୍ବଳତାରୁ ଜଙ୍ଗଲ ବିଭାଗରେ କାର୍ଯ୍ୟ କରିବା ନିମନ୍ତେ ସୃଷ୍ଟି ହୋଇଥିବା ସ୍ୱପ୍ନ କ୍ରମଶଃ ଅସ୍ପଷ୍ଟ ହୋଇ ଆସୁଥିଲା ।

ସାଂସାରିକ ଜଞ୍ଜାଳର ବାଧ୍ୟବାଧକତା ଓ ପରିସ୍ଥିତିର ବାସ୍ତବତାକୁ ବିଚାରକୁ ନେଇ ମୁଁ ସ୍ଥିର କରିନେଲି, ପଦାର୍ଥ ବିଜ୍ଞାନରେ ପି.ଏଚ୍‌ଡି. ଡିଗ୍ରୀ ହାସଲ କଲାପରେ ଭବିଷ୍ୟତରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟରେ ସାମିଲ୍ ହେବି ।

ବାଣୀବିହାର କମ୍ପୁଟର ସେଣ୍ଟରରେ କାର୍ଯ୍ୟ କରିବା ଅବସରରେ, ମୋର ରେଭେନ୍ସା କଲେଜର ତତ୍କାଳୀନ ପ୍ରାଧ୍ୟାପକ ଶ୍ରୀଯୁକ୍ତ ଦେବକାନ୍ତ ମିଶ୍ରଙ୍କ ସହିତ ପରିଚୟ ହୋଇଥିଲା । ସେ ମଧ୍ୟ ପ୍ରଫେସର ଦେଓଙ୍କ ଅଧୀନରେ, ପଦାର୍ଥ ବିଜ୍ଞାନରେ ଉଚ୍ଚତର ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ସୂତ୍ରରେ ଅନେକ ସମୟରେ ବିଭାଗର ତଳ ମହଲାରେ ଥିବା କମ୍ପୁଟର ସେଣ୍ଟରରେ ସେ ଆସି ବସୁଥିଲେ । ଦିନେ ବାର୍ତ୍ତାଳାପ ଅବସରରେ ଦେବକାନ୍ତ ବାବୁ ଦୁଃଖ ପ୍ରକାଶ କରି କହିଥିଲେ, ପଦାର୍ଥ ବିଜ୍ଞାନରେ ଗବେଷଣା କରିବା ତାଙ୍କୁ ଭଲ ଲାଗୁନି । ବରଂ ନିଜ କାର୍ଯ୍ୟସ୍ଥଳୀକୁ ଫେରିଯାଇ ଜନପ୍ରିୟ ଓଡ଼ିଆ ଭାଷାରେ ବିଜ୍ଞାନ ସମ୍ବନ୍ଧୀୟ ଲେଖାଲେଖି କରିବାକୁ ଚାହାନ୍ତି । ପରେ ଅବଶ୍ୟ ସେ ପଦାର୍ଥ ବିଜ୍ଞାନରେ ଗବେଷଣା କରିବା ଛାଡ଼ିଦେଇ ରେଭେନ୍ସା କଲେଜକୁ ଫେରି ଯାଇଥିଲେ ଏବଂ ଏହାର ଅନେକ ଦିନ ପରେ ଓଡ଼ିଆ ସାହିତ୍ୟରେ ଗବେଷଣା କରି ପି.ଏଚ୍‌ଡି. ଡିଗ୍ରୀ ହାସଲ କଲେ । ଏଠି ଏ ପ୍ରସଙ୍ଗ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ବାଣୀବିହାରରେ ପଢୁଥିବା ସମୟରେ ମୁଁ ମଧ୍ୟ କବିତା ଲେଖୁଥିଲି । ସେତେବେଳେ କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି' ଓ 'ନବରବି' ପତ୍ରିକାରେ ମୋର କବିତା ବରାବର ବାହାରୁଥିଲା । କିନ୍ତୁ ରିସର୍ଚ୍ଚକାମରେ ଜଏନ୍ କରିବା ପରଠାରୁ ଲେଖାଲେଖି ପ୍ରାୟତଃ କମିଯାଇଥିଲା । ଦେବକାନ୍ତ ମିଶ୍ରଙ୍କ ସହ ମିଶିବାପରେ ମୁଁ ପୁନର୍ବାର ଲେଖାଲେଖିରେ ମନ ବଳାଇଲି । ବିଶେଷକରି ସରଳ ଭାଷାରେ ବିଜ୍ଞାନ ତଥ୍ୟ ସମ୍ବଳିତ ପ୍ରବନ୍ଧ ଲେଖିଲି । ରାଜ୍ୟରେ ସେ ସମୟରେ ପ୍ରଥମକରି କମ୍ପୁଟର ପ୍ରବେଶ ଘଟୁଥାଏ ।

ତେଣୁ ପିଲାମାନଙ୍କ ପାଇଁ କମ୍ପ୍ୟୁଟର ସମ୍ବନ୍ଧୀୟ ଅନେକ ଗୁଡ଼ିଏ ଫିଚର ମଧ୍ୟ ଲେଖିଲି । ପଦାର୍ଥ ବିଜ୍ଞାନ ବିଭାଗର ତତ୍‌କାଳୀନ ପ୍ରାଧ୍ୟାପକ ଡ. କୁଳମଣି ସାମଲ, ବିଜ୍ଞାନ ଭିତ୍ତିକ ପ୍ରବନ୍ଧ ଲେଖିବାରେ ମୋର ଦିଗ୍‌ଦର୍ଶକ ଓ ଗୁରୁ ଥିଲେ । ପ୍ରଫେସର ସାମଲଙ୍କ ପ୍ରୋତ୍ସାହନରେ ମୁଁ ଓ ମୋର ଜଣେ ସହପାଠିନୀ ମିଶି, ବିଭିନ୍ନ ଯନ୍ତ୍ରପାତିର କ୍ରମ ଉତ୍ତରଣ ସଂପର୍କରେ ଶିଶୁମାନଙ୍କ ପାଇଁ 'ଯନ୍ତ୍ରପାତି' ପୁସ୍ତିକା ରଚନା କରୁଥିଲୁ । ପରବର୍ତ୍ତୀ ସମୟରେ ରାଜ୍ୟ ସରକାରଙ୍କ ଶିଶୁ ସାହିତ୍ୟ ସମିତି ଦ୍ୱାରା ୧୯୭୫ ମସିହା ପାଇଁ ଏହି ବହିଟି ପୁରସ୍କୃତ ହୋଇଥିଲା ।

ତାତ୍ତ୍ୱିକ ପଦାର୍ଥ ବିଜ୍ଞାନରେ ଗବେଷଣା ନିମନ୍ତେ ଆବଶ୍ୟକ ପଡୁଥିବା ଉଚ୍ଚତର ମ୍ୟାଥମେଟିକ୍‌ସରେ ଜ୍ଞାନ ଆହରଣ ନିମନ୍ତେ ମୁଁ ବର୍ଷକିଆ କୋର୍ସରେ ସାମିଲ୍ ହୋଇଥାଏ । ବାଣୀବିହାର ହଷ୍ଟେଲ ଛାଡ଼ିବା ପରେ ସତ୍ୟନଗରରେ ଗୋଟିଏ ଛୋଟିଆ ଭଡ଼ାଘର ନେଇ ରହୁଥାଏ । ପ୍ରାକ୍ ଗବେଷଣା ପ୍ରସ୍ତୁତି ଏବଂ କମ୍ପ୍ୟୁଟର ପ୍ରୋଗ୍ରାମିଙ୍ଗ୍ ଭିତରେ ସମୟ ବିତିଯାଉଥାଏ । ହଠାତ୍ ଅକାଳ ଚଡ଼କ ପଡ଼ିଲା ମୋ' ପରିବାର ଉପରେ । ୧୯୭୩ ମସିହା ମେ' ମାସ ଆଠ ତାରିଖ ଦିନ ଆକସ୍ମିକ ଭାବରେ ବାପାଙ୍କର ଦେହାନ୍ତ ହୋଇଗଲା । ଏବଂ ଘଟଣାଚକ୍ରରେ ଅଧ୍ୟୟନ ଶେଷ ପରେ ମୁଁ ନିଜର ସ୍ଥିତି ସୁଦୃଢ଼ କରିବା ପୂର୍ବରୁ ହିଁ ପରିବାରର ସମସ୍ତ ଦାୟିତ୍ୱ, ବଡ଼ପୁଅ ହିସାବରେ ମୋ ମୁଣ୍ଡ ଉପରେ ଲଦି ହୋଇଗଲା । ଖୋର୍ଦ୍ଧା ଡାକ୍ତରଙ୍କ ପରାମର୍ଶ କ୍ରମେ ବାପାଙ୍କୁ ଆମେ କଟକ ବଡ ଡାକ୍ତରଖାନା ନେଇଯାଇଥିଲୁ କିନ୍ତୁ ରାସ୍ତାରେ ହିଁ ବାପା 'କୋମା'କୁ ଆସିଗଲେ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜରେ ଆଡ୍‌ମିଶନ ନେବାର ଚବିଶ ଘଣ୍ଟା ଭିତରେ ହିଁ ବାପାଙ୍କ ମୃତ୍ୟୁ ହୋଇଥିଲା । ମୁଁ, ବୋଉ ଓ ଆମର ଜଣେ ସଂପର୍କୀୟ ଦାଦା, ଗୋଟିଏ ଟ୍ରେକର୍‌ରେ ବାପାଙ୍କ ଶବକୁ ନେଇ, ଅତିକ୍ରାନ୍ତ ସଂଧ୍ୟାରେ ଗାଁରେ ଆସି ପହଞ୍ଚିଲୁ । ଶବ ସତ୍କାର, ଦଶାହ, ଶୁଦ୍ଧିକ୍ରିୟା ଆଦି ସମସ୍ତ ଆନୁସଙ୍ଗିକ କାର୍ଯ୍ୟପାଇଁ ମୋତେ ପୁନର୍ବାର ଦୁଇସପ୍ତାହ ଛୁଟି ବଢ଼େଇବାକୁ ପଡିଲା । ଏହାପରେ ପ୍ରାୟ ପ୍ରତି ସପ୍ତାହରେ ମୋତେ ଗାଁକୁ ଆସିବାକୁ ପଡୁଥାଏ । ଆମର ପାରିବାରିକ ସ୍ଥିତି ସେତେଟା ଭଲ ନଥାଏ । ଘରେ ବିଧବା ମା'କୁ ଛାଡ଼ିଦେଲେ ମୋ' ତଳକୁ ଦୁଇ ଭଉଣୀ ଏବଂ ସେମାନଙ୍କ ତଳକୁ ଦୁଇ ସାନଭାଇ । ଦାୟିତ୍ୱ ବୁଝାସୁଝା କରିବା ପାଇଁ ଘରେ ଆଉ ପୁରୁଷ ଲୋକ କେହି ନଥାନ୍ତି । ଏହି ସବୁ କାରଣରୁ ଗବେଷଣା କାର୍ଯ୍ୟ ଓ କମ୍ପ୍ୟୁଟର ପ୍ରୋଗ୍ରାମିଙ୍ଗ୍ କାର୍ଯ୍ୟରେ ମୋର ଅନିୟମିତତା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ମୁଁ ନିଜେ ବୁଝିପାରୁଥିଲି, ସାଂସାରିକ ଜଞ୍ଜାଳରେ

ବ୍ୟସ୍ତରହି ମୁଁ ମୋର କର୍ତ୍ତବ୍ୟ ଏବଂ ଗବେଷଣା କାର୍ଯ୍ୟରେ ଅବହେଳା କରି ଚାଲିଛି । ଅଥଚ ମୁଁ ଥିଲି ନାଚାର, ଅନନ୍ୟୋପାୟ ।

ବାଣୀବିହାର ପଦାର୍ଥ ବିଜ୍ଞାନ ବିଭାଗରେ ପ୍ରଫେସର ଥିଲେ ଶ୍ରୀଯୁକ୍ତ ବିଭୂତି ଭୂଷଣ ଦେଓ । ସେ ବେଶ୍ କଡ଼ା ମିଜାଜର ଲୋକ । ଅଧ୍ୟାପନାରେ ଯେମିତି ଧୁରନ୍ଧର, ଶାସନ ଓ ଶୃଙ୍ଖଳା ରକ୍ଷା କରିବାରେ ସେମିତି ପ୍ରବୀଣ । କାମରେ ମୋର ଏ ପ୍ରକାର ଖଇଚା ମନୋବୃତ୍ତିକୁ ସେ ବରାବର ନାପସନ୍ଦ କରୁଥିଲେ । ବେଳେ ବେଳେ ସପ୍ତାହାନ୍ତରେ ଗାଁକୁ ଯିବାକୁ ଛୁଟିଦେବା ପାଇଁ ରାଜି ହେଉ ନଥିଲେ । କିନ୍ତୁ ପରିବାରର ଦୟନୀୟ ପରିସ୍ଥିତି, ମୋତେ ବାରଂବାର ଗାଁକୁ ଯାଇ ଘରର ଭଲମନ୍ଦ ବୁଝିବାକୁ ଏକରକମ ବାଧ୍ୟ କରୁଥିଲା । ଅନେକ ହୁଏତ ଜାଣିନଥିବେ ଉଚ୍ଚତର ଗବେଷଣା କ୍ଷେତ୍ରରେ 'ଗାଇଡ୍' ହିଁ ପ୍ରଶିକ୍ଷାର୍ଥୀ ପାଇଁ ସାକ୍ଷାତ୍ ଭଗବାନ୍ । 'ଗାଇଡ୍' ଥରେ ବିଗିଡ଼ିଗଲେ ପି.ଏଚ୍‌ଡି କରିବାକୁ ତିନିବର୍ଷ କଣ, ତରିଶବର୍ଷ ବି ଲାଗି ଯାଇପାରେ । ପ୍ରଫେସର ଦେଓଙ୍କ ଅଧୀନରେ ଗବେଷଣା କରିବାପାଇଁ ମୋର ଉପର ବ୍ୟାଚ୍ ରେଭେନ୍‌ସା କଲେଜର ଜଣେ ଛାତ୍ର ଶ୍ରୀଯୁକ୍ତ ଇକ୍‌ବଲ୍ ମଧ୍ୟ ଅନୁବନ୍ଧିତ ହୋଇଥାନ୍ତି । ଆମ ଦୁହିଙ୍କ ଉପରେ ପ୍ରଫେସର ଦେଓ ସନ୍ତୁଷ୍ଟ ନଥାନ୍ତି । ସହଯୋଗ କରିବା ତ ଦୂରର କଥା ବରଂ ଗବେଷଣାର ବିଷୟବସ୍ତୁ ସ୍ଥିର କରିବାରେ ମଧ୍ୟ ଆମକୁ ଅଯଥା ହଇରାଣ କରିବା ଆରମ୍ଭ କରିଦେଲେ ସେ । ତେଣୁ ଆମେ ଦୁହେଁ ଦିନେ ଏକାନ୍ତରେ ବିଚାର ବିମର୍ଷ କରି ବାଣୀବିହାର ଛାଡ଼ିବା ପାଇଁ ସ୍ଥିରକଲୁ । ଏହାପରେ ମୁଁ ଅନ୍ୟ କାହାକୁ ନ ଜଣାଇ ନିଜସ୍ୱ ଚେଷ୍ଟାରେ ଅନ୍ୟତ୍ର ଚାକିରି ସଂଧାନରେ ଲାଗିପଡ଼ିଲି ।

ସେ ସମୟରେ ବେସରକାରୀ କଲେଜ ପାଇଁ ମଧ୍ୟ ଅଧ୍ୟାପକ ନିଯୁକ୍ତି ତାଲିକା ଡି.ପି.ଆଇ. ଅଫିସ୍ ପ୍ରସ୍ତୁତ କରୁଥାନ୍ତି । ପଦାର୍ଥ ବିଜ୍ଞାନ ଅଧ୍ୟାପକ ତାଲିକାରେ ମୋ ନାଁ ତୃତୀୟ ସ୍ଥାନରେ ଥିଲା । ସୌଭାଗ୍ୟବଶତଃ ମୋ ଉପରେ ଥିବା ଦୁଇଜଣ ପ୍ରାର୍ଥୀ ସେତେବେଳକୁ ଭୁବନେଶ୍ୱରର ରିଜିଓନାଲ କଲେଜ ଅଫ୍ ଏଜୁକେସନରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇ ସାରିଥାନ୍ତି । ବେସରକାରୀ କଲେଜ ପାଇଁ ବିଜ୍ଞାନ ବିଭାଗରେ ଅଧ୍ୟାପକ ଚୟନ ଦାୟିତ୍ୱରେ ଥିବା ତତ୍‌କାଳୀନ ଡେପୁଟି ଡି.ପି.ଆଇ.ଶ୍ରୀଯୁକ୍ତ ସନ୍ତୋଷ କୁମାର ମହାନ୍ତି ଏହା ପୂର୍ବରୁ ବି.ଜେ.ବି କଲେଜରେ ପଦାର୍ଥ ବିଜ୍ଞାନର ଅଧ୍ୟାପକ ଥିଲେ । ପଦାର୍ଥ ବିଜ୍ଞାନର ସ୍ନାତକ ଛାତ୍ର ହିସାବରେ, ସେହି ସମୟରେ ସେ ମୋତେ ଜାଣିଥିଲେ, ତେଣୁ ତାଙ୍କ ସହାୟତାରେ ଡି.ପି.ଆଇ. ଅଫିସ୍‌ରୁ ନାଁ ସୁପାରିଶ କରି, ମୁଁ ଖୋର୍ଦ୍ଧା ପ୍ରାଣନାଥ

ମହାବିଦ୍ୟାଳୟରେ ନିଯୁକ୍ତି ପାଇଁ ଦରଖାସ୍ତ କଲି । ସେଠି ମଧ୍ୟ ପଦାର୍ଥ ବିଜ୍ଞାନ ବିଭାଗରେ ଗୋଟିଏ ଅଧ୍ୟାପକ ପଦବୀ ଖାଲିଥାଏ । ଯେହେତୁ କଲେଜଟି ମୋ ଗାଁରେ ଅବସ୍ଥିତ ଏବଂ ମୁଁ ସେହି କଲେଜର ଛାତ୍ର ହିସାବରେ ୧୯୬୭ ମସିହା ପ୍ରିପ୍ରଫେସନାଲ ପରୀକ୍ଷାରେ, ସମଗ୍ର ରାଜ୍ୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି କଲେଜ ପାଇଁ ଗୌରବ ଆଣି ଦେଇଥିଲି, ତେଣୁ କଲେଜ ପରିଚାଳନା ସମିତି ଅଧକ୍ଷ ଡ. ପ୍ରାଣନାଥ ମହାପାତ୍ର, ମୋତେ ଆଗ୍ରହ ସହକାରେ ଅଧ୍ୟାପକ ପଦବୀରେ ନିଯୁକ୍ତି ପ୍ରଦାନ କରିଥିଲେ । ନିଯୁକ୍ତି ପତ୍ର ପାଇ ସାରିଲା ପରେ ମୁଁ ସଂଗେ ସଂଗେ ଫେରିଆସି ବାଣୀବିହାର କମ୍ପୁଟର ସେଣ୍ଟରରେ ନିଜର ଇସ୍ତଫା ପ୍ରଦାନ କରିଥିଲି ।

ଏବେ ବି ମୋର ସ୍ପଷ୍ଟ ମନେଅଛି, ଇସ୍ତଫା ପ୍ରଦାନ କରିବା ଦିନ ଅପରାହ୍ନରେ ମୁଁ ଓ ମୋର ବଂଧୁ ଶ୍ରୀ ଇକ୍‌ବଲ୍ (ଯିଏକି କିଛିଦିନ ଆଗରୁ ଓଡ଼ିଶା ବାହାରେ ଅନ୍ୟ ଏକ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବା ପାଇଁ, ପ୍ରଫେସରେ ଦେଓଙ୍କ ନିକଟରୁ ଅବ୍ୟାହତି ନେଇଥିଲେ ) ବାଣୀବିହାର ପୋଷ୍ଟ ଅଫିସ୍‌ରେ ବସିଥିଲୁ । ସେଠି ଅଚାନକ ପ୍ରଫେସର ଦେଓଙ୍କ ସହିତ ସାକ୍ଷାତ ହୋଇଗଲା । ଆଗରୁ ଆମ ଦୁହିଁଙ୍କ ଉପରେ ସେ ବେଶ୍ ବିରକ୍ତ ଥିଲେ । ତେଣୁ ସଂଗେ ସଂଗେ କଟୁ ମନ୍ତବ୍ୟ ଦେଲେ 'ବୋଥ୍ ଅଫ୍ ୟୁ ଉଇଲ ସଫର ଇନ୍ ଫ୍ୟୁଚର୍' । ସେତେବେଳେ ମୁଁ ଉତ୍ତର ଦେଇଥିଲି, ସାର୍ ମନୁଷ୍ୟ ଯାହା ଇଚ୍ଛାକରେ, ତାହା ସବୁବେଳେ ପାଇ ନଥାଏ । ପଦାର୍ଥ ବିଜ୍ଞାନରେ ଉଚ୍ଚତର ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ପଦବୀ ପାଇବା ପାଇଁ ମୁଁ ଆଶା ରଖିଥିଲି । ବେଳେବେଳେ ସମୟର ଉଜାଣି ସୁଅରେ, ପରିସ୍ଥିତି ଏମତି ମୋଡ଼ ନିଏ ଯେ, ମଣିଷର ଆଶା ଆଶାରେ ହିଁ ରହିଯାଏ । ସେମିତି ଏକ ପରିସ୍ଥିତିର ଚାପରେ, ମୋ ଜୀବନର ଗତିପଥ ବଦଳାଇବାକୁ ମୁଁ ବାଧ୍ୟ ହୋଇଛି । ଦେଖାଯାଉ, ଭବିଷ୍ୟତରେ ଭାଗ୍ୟ କେଉଁ ଦିଗକୁ ଟାଣି ନେଉଛି ।

୧୯୭୪ ମସିହା ଜାନୁଆରୀ ମାସ ପ୍ରଥମ ସପ୍ତାହରେ ମୁଁ ବାଣୀବିହାର କମ୍ପୁଟର ବିଭାଗରୁ ଅବ୍ୟାହତି ନେଇ, ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ପଦାର୍ଥ ବିଜ୍ଞାନ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦାନ କଲି । ସେହି ବର୍ଷ ଖୋର୍ଦ୍ଧା କଲେଜରେ ପଦାର୍ଥ ବିଜ୍ଞାନରେ ସ୍ନାତକ ଶ୍ରେଣୀ ଖୋଲିଥାଏ । ଏହି ସ୍ନାତକ ବିଭାଗର ସଂପୂର୍ଣ୍ଣ ଦାୟିତ୍ୱ ମୋତେ ଦିଆଗଲା । ଏହା ବ୍ୟତୀତ ପ୍ରି ୟୁନିଭରସିଟି ଓ ପ୍ରି ପ୍ରଫେସନାଲ୍ କୋର୍ସରେ ମଧ୍ୟ କିଛିଟା କ୍ଲାସ ନେବାକୁ ପଡୁଥିଲା । କଲେଜର ଛାତ୍ରମାନଙ୍କୁ ଶିକ୍ଷାଦାନରେ କୌଣସି

ଅବହେଳା ନ କରି, ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ସୁଚାରୁରୂପେ ସଂପାଦନା କଲାପରେ ମଧ୍ୟ ହାତରେ ଯଥେଷ୍ଟ ସମୟ ରହୁଥିଲା ଏବଂ ସେହି ସମୟରେ ମୁଁ କମ୍ପିଟେଟିଭ୍ ପରୀକ୍ଷା ପାଇଁ ପଢ଼ାପଢ଼ି କରୁଥିଲି । ଟିକିଏ ଫୁରୁସତ୍ ପାଇଲେ ଘରକୁ ଚାଲିଆସି ଅଧ୍ୟୟନ କରୁଥିଲି । କାରଣ କଲେଜଠାରୁ ମୋ ଘରର ଦୂରତା ମାତ୍ର ଦୁଇ ଫର୍ଲଙ୍ଗ ଥିଲା ।

ବନ ବିଭାଗରେ କାର୍ଯ୍ୟ କରିବା ପାଇଁ ପିଲାଦିନରୁ ରହିଥିବା ସୁପ୍ତ ଇଚ୍ଛାକୁ ସାକାର କରିବାପାଇଁ ଅବସର ଏବଂ ସୁଯୋଗ ଆସି ଜୁଟିଲା । ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ ଦ୍ୱାରା ହେଉଥିବା ସର୍ବଭାରତୀୟ ବନସେବା (ଆଇ.ଏଫ.ଏସ୍.) ପରୀକ୍ଷା ପାଇଁ ମୁଁ ଦରଖାସ୍ତ କଲି ଏବଂ ପୂର୍ଣ୍ଣ ପ୍ରସ୍ତୁତି ସହ ଅଗଷ୍ଟ ମାସରେ ଲିଖିତ ପରୀକ୍ଷାରେ ବସିଲି । ନଭେମ୍ବର ମାସ ପ୍ରଥମ ସପ୍ତାହରେ ୟୁନିଅନ୍ ପବ୍ଲିକ୍ ସର୍ଭିସ କମିଶନଙ୍କଠାରୁ ରେଜିଷ୍ଟାର୍ଡ ଚିଠିଟିଏ ପାଇଲି । ମୁଁ ଲିଖିତ ପରୀକ୍ଷାରେ କୃତକାର୍ଯ୍ୟ ହୋଇଛି ଏବଂ ଡିସେମ୍ବର ମାସ ଶେଷ ସପ୍ତାହରେ ଦିଲ୍ଲୀଠାରେ ମୌଖିକ ପରୀକ୍ଷା, ୱାକିଙ୍ଗ ଟେଷ୍ଟ ଓ  ଡାକ୍ତରୀ ପରୀକ୍ଷାରେ ଉପସ୍ଥିତ ହେବାପାଇଁ ତାରିଖ ଧାର୍ଯ୍ୟ କରି ଜଣାଇ ଦିଆଯାଇଥିଲା ଚିଠିଟିରେ । ସଫଳତାର ସିଢ଼ି ଚଢ଼ିବାର ଏହା ମୋ ପାଇଁ ଥିଲା ପ୍ରଥମ ପାହାଚ ।

ମୋ'ପରି ଏକ ଗ୍ରାମୀଣ ଯୁବକ ପାଇଁ ଏକା ଏକା ଦିଲ୍ଲୀ ଯାଇ ମୌଖିକ ପରୀକ୍ଷା ଦେବା, ଏକ ଦୁଃସାହସିକ ଅଭିଯାନ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପୂର୍ବରୁ ମାତ୍ର ଦୁଇଥର କଟକ ଯାଇଥିଲି । ଥରେ ରେଭେନ୍ସା କଲେଜରେ ବି.ଏସ୍‌ସିରେ ଆଡମିଶନ ନେବାପାଇଁ । ୧୯୬୭ ମସିହାରେ ପ୍ରଥମ ଥର ପାଇଁ ହଜାରେ ବର୍ଷର କଟକ ସହର ଭିତରକୁ ପ୍ରବେଶ କରିଥିଲି । ପରେ ପରେ ଭୁବନେଶ୍ୱର ବି.ଜେ.ବି. କଲେଜରେ ସିଟ୍ ପାଇଯିବାରୁ ଆଉ ରେଭେନ୍ସା କଲେଜ ଯିବା ଆବଶ୍ୟକ ହୋଇ ନଥିଲା । ସୌଭାଗ୍ୟବଶତଃ ପଦାର୍ଥ ବିଜ୍ଞାନ ଉପାଧ୍ୟୁତ୍ତର ଶ୍ରେଣୀର ମୋର ଜଣେ ସହପାଠୀ ଓ ଅନ୍ତରଂଗ ବଂଧୁ ହର ପ୍ରସନ୍ନ ମହାପାତ୍ର ସେତେବେଳେ ଦିଲ୍ଲୀରେ ଚାକିରି କରୁଥିଲେ । ଏମ୍.ଏସସି. ପଢ଼ିବା ସମୟରେ ହିଁ ସେ ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ମହୀଶୂରରେ ପ୍ରୋବେସନାରୀ ଅଫିସର ଭାବେ ନିଯୁକ୍ତି ପାଇଥିଲେ । ବଂଧୁଙ୍କ ସହିତ ଯୋଗାଯୋଗ କରି ଦିଲ୍ଲୀରେ ତାଙ୍କ ବସା ଠିକଣା ବୁଝିନେଲି । ତଥାପି ମନରେ ଭୟ ଥାଏ । ଦ୍ୱିଧା ଓ ଦ୍ୱନ୍ଦ୍ୱ ଭିତରେ ମୁଁ ଖୋର୍ଦ୍ଧା ରୋଡ ଷ୍ଟେସନରୁ ଦିଲ୍ଲୀ ଅଭିମୁଖେ ଉତ୍କଳ ଏକ୍‌ପ୍ରେସରେ ଯାତ୍ରା କଲି ।

ଦ୍ୱିତୀୟ ଦିନ ଦିଲ୍ଲୀ ଷ୍ଟେସନରେ ପହଞ୍ଚିଲାବେଳକୁ ସଂଧ୍ୟା ଆଗତ ପ୍ରାୟ । ମନରେ ଭୟ । କେମିତି ଏକ ଅଜଣା, ଅଶୁଣା ଜାଗାରେ ଖୋଜିପାଇବି 'ବିକାଶ ନଗର' ଓ

ସେଠିଥିବା ବଂଧୁଙ୍କ ଭଡାଘର । ଅଟୋଟିଏ କରି ବିକାଶନଗର ଯିବାକୁ କହିଲି । ହେଲେ ଠିକଣା ଖୋଜି ଘର ପାଇଲାବେଳକୁ ରାତି ସାଢ଼େ ସାତଟା ବା ଆଠଟା ହେଲାଣି । ବଂଧୁଙ୍କୁ ଦେଖିଲା ପରେ ଛାତିରେ ପ୍ରାଣ ପଶିଲା । ଅଂଧକୁ ଅଶାବାଡ଼ିର ସାହାରାଟି ମିଳିଗଲା ଯେମିତି । ବଂଧୁ ଅବିବାହିତ । ଏକାକୀ ପ୍ରଥମ ମହଲାର ଗୋଟିଏ କୋଠରି ଭଡ଼ାନେଇ ରହୁଥାନ୍ତି । ସାମାନ୍ୟ କିଛି ରାତ୍ରୀ ଭୋଜନ କରିନେଇ ଆମେ ଦୁହେଁ ବିଛଣାରେ ପଡି ଗପି ଚାଲିଲୁ । ଅତୀତର କାହାଣୀ । ତିନିବର୍ଷ ତଳର ଛାତ୍ର ଜୀବନର କଥା ଓ ଗାଥା । ବାଣୀବିହାର ଇଷ୍ଟ ହଷ୍ଟେଲରେ କଟେଇଥିବା ଦୁଇ ବର୍ଷର ସଂଭାବନାମୟ ଜୀବନ କାହାଣୀ ।

ପରଦିନ ମୋର ମୌଖିକ ପରୀକ୍ଷା ପବ୍ଲିକ୍ ସର୍ଭିସ କମିଶନ ଅଫିସ 'ଢୋଲପୁର' ହାଉସ୍‌ଠାରେ ଥାଏ । ସକାଳ ଆଠଟା ସୁଦ୍ଧା ବନ୍ଧୁ ମୋତେ ସ୍କୁଟରରେ ଛାଡ଼ିଦେଇ ଅଫିସକୁ ବାହାରିଗଲେ ।  ଦିନ ବାରଟା ବେଳକୁ ମୋତେ ମୌଖିକ ପରୀକ୍ଷା ପାଇଁ ବୋର୍ଡ ରୁମ୍‌କୁ ଡକାଗଲା ଏବଂ ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ଇଣ୍ଟରଭ୍ୟୁ ଚାଲିଲା । ବୋର୍ଡରେ ବୋଧହୁଏ ପାଞ୍ଚରୁ ଛଅଜଣ ସଦସ୍ୟ ଥିଲେ । ଓଡ଼ିଶାର ସମ୍ବଲପୁର ବିଶ୍ୱବିଦ୍ୟାଳୟର ତତ୍‌କାଳୀନ କୁଳପତି ଶ୍ରୀଯୁକ୍ତ ଭୁବନେଶ୍ୱର ବେହେରା (ସ୍ୱଗତ) ଥିଲେ ଅନ୍ୟତମ ସଦସ୍ୟ । ସେ ମହାଶୟ ମୋତେ ଜଗନ୍ନାଥ ସଂସ୍କୃତି ଉପରେ ଏକାଧିକ ପ୍ରଶ୍ନ ପଚାରିଥିଲେ । ମୁଁ ତାର ଯଥାଯଥ ଉତ୍ତର ଦେଇଥିଲି । ଅନ୍ୟଜଣେ ବିଶେଷଜ୍ଞ ସଭ୍ୟଙ୍କର ମୋ ପାଇଁ ପ୍ରଶ୍ନଥିଲା କାଜୁ ବାଦାମ ପତ୍ର ଓ କାଜୁରିନା (ଝାଉଁ) ପତ୍ର ମଧ୍ୟରେ ପାର୍ଥକ୍ୟ ବା ତଫାତ୍ କ'ଣ ? ମୁଁ ଉଭିଦ ବିଜ୍ଞାନ ବିଷୟରେ ବିଶେଷ କିଛି ଜାଣେ ନାହିଁ ବୋଲି ସ୍ପଷ୍ଟ ଭାବେ ଉତ୍ତର ଦେଇଥିଲି । କାରଣ ପ୍ରିୟୁନିଭରସିଟି ପରେ ପରେ ମୁଁ ବାୟୋଲଜି ଛାଡ଼ିଦେଇ, ଚତୁର୍ଥ ଇଚ୍ଛାଧୀନ ବିଷୟବସ୍ତୁରେ 'ଇକୋନ୍‌ମିକ୍‌ସ' ନେଇଥିଲି । ପରେ ଜାଣିଲି ଯେ, କାଜୁରିନା (ଝାଉଁ) ପତ୍ରଟି ପତ୍ର ନୁହେଁ, ରୂପାନ୍ତରିତ କାଣ୍ଡ । ସେଦିନ ଅପରାହ୍ଣରେ ଅନ୍ୟ ଏକ ସ୍ଥାନରେ ବିଶେଷଜ୍ଞ ଡାକ୍ତରମାନଙ୍କ ଦ୍ୱାରା, ଆମର ମେଡିକାଲ ଟେଷ୍ଟ ମଧ୍ୟ କରାଗଲା ।

ତା'ପର ଦିନ ଥାଏ ରବିବାର୍ । ୱାକିଙ୍ଗ୍ ଟେଷ୍ଟ ପାଇଁ ଦିଲ୍ଲୀ ଚିଡ଼ିଆଖାନାରେ ଚାଲିବାର ବ୍ୟବସ୍ଥା କରାଯାଇଥାଏ । ଚାରିଘଣ୍ଟା ଭିତରେ ୧୬ ମାଇଲ୍ ଅର୍ଥାତ୍ ୨୫ କିଲୋମିଟର ଚାଲିବାକୁ ପଡିବ । ଏହା ଏକ ଏଣ୍ଡ୍ୟୁରାନ୍‌ସ ଟେଷ୍ଟ କୁହାଯାଇପାରେ । କେବଳ ବନ ବିଭାଗରେ ଚାକିରି ଆଶାୟୀ ପରୀକ୍ଷାର୍ଥୀମାନଙ୍କ ପାଇଁ ଏହି ଟେଷ୍ଟ କରାଯାଇଥାଏ । ଡିସେମ୍ବର ପ୍ରାୟ ୬ଟା ବେଳକୁ ବଂଧୁ ମୋତେ ସ୍କୁଟରରେ ନେଇ ଦିଲ୍ଲୀ

'ଯୁ'ରେ ପହଞ୍ଚିଲେ । ଚିଡ଼ିଆଖାନା ଭିତରେ ଥିବା ଏକ ବୃତ୍ତାକାର ପଥରେ ଚାଲିବାର ବନ୍ଦୋବସ୍ତ ହୋଇଥାଏ । ଥରେ ଏହି ରାସ୍ତାରେ ଚାଲି ଆସିଲେ ୨.୫ କିଲୋମିଟର ଅତିକ୍ରମ ହୋଇଥାଏ । ତେଣୁ ନିର୍ଦ୍ଧାରିତ ଚାରିଘଣ୍ଟା ଭିତରେ ମୋଟ ଦଶ ରାଉଣ୍ଡ ବୁଲିବାର ଥାଏ । ଅନ୍ୟାନ୍ୟ ପ୍ରାର୍ଥୀମାନଙ୍କ ଠାରୁ ଜାଣିଲି, ସେମାନେ ରୀତିମତ ପ୍ରାକ୍‌ଟିସ କରି ଆସିଛନ୍ତି । ମୁଁ କିନ୍ତୁ ୱାକିଙ୍ଗ ଟେଷ୍ଟକୁ ଏତେଟା ଗୁରୁତ୍ୱ ଦେଇ ନଥିଲି । ଚାଲିବା ଅଭ୍ୟାସ ମୋର ପିଲାଦିନୁ ଥିଲା । ସାତବର୍ଷ ବୟସରେ ମଧ୍ୟ ମୁଁ ଗାଁରୁ ଖୋର୍ଦ୍ଧା ଟ୍ରେନିଂ ସ୍କୁଲକୁ ତିନି କିଲୋମିଟରରୁ ଊର୍ଦ୍ଧ୍ୱ ରାସ୍ତା ପ୍ରତିଦିନ ଚାଲି ଚାଲି ଯାଉଥିଲି ।

ସକାଳ ସାଢ଼େ ଛଅଟା ବେଳକୁ ଦିଲ୍ଲୀ ଚିଡ଼ିଆଖାନା ଦାୟିତ୍ୱରେ ଥିବା ଡି.ଏଫ୍.ଓ.ଙ୍କ ତତ୍ତ୍ୱାବଧାନରେ ଟେଷ୍ଟ ଆରମ୍ଭ ହେଲା । ମାତ୍ର ସାତ ରାଉଣ୍ଡ ବୁଲି ସାରିଲା ବେଳକୁ ମୋର ଦୁରବସ୍ଥା କହିଲେ ନସରେ । ବାଁ ଆଣ୍ଠୁ ଫୁଟବଲ ପରି ଫୁଲି ଯାଇଥାଏ । ଛୋଟେଇ ଛୋଟେଇ ଚାଲିବା ମଧ୍ୟ ସଂଭବ ହେଉନଥାଏ । ଅନନ୍ୟୋପାୟହୋଇ ରାସ୍ତାକଡରେ ଗୋଟିଏ କାଠ ବେଞ୍ଚ ଉପରେ ବସିପଡ଼ିଲି । ଅଳ୍ପ ସମୟ ଭିତରେ ଅନ୍ୟ ଦୁଇ ତିନି ଜଣ ସହ ପରୀକ୍ଷାର୍ଥୀ ସେଠି ପହଞ୍ଚିଗଲେ ଏବଂ ମୋତେ ଚାଲିବା ପାଇଁ ପ୍ରବର୍ତ୍ତାଇଲେ । ଏପରିକି ତିନିଜଣ ମିଶି ମୋତେ ଗୋଟିଏ ରାଉଣ୍ଡର ଅଧାଅଧି ବାଟ ଟେକି ଟେକି ନେଇଗଲେ । କୌଣସିମତେ ଆଠ ରାଉଣ୍ଡ ଅର୍ଥାତ୍ କୋଡ଼ିଏ କିଲୋମିଟର ରାସ୍ତା ଅତିକ୍ରମ କରି ସାରିଲାପରେ ମୁଁ ଦେଖିଲି, କୌଣସି ଉପାୟରେ ମଧ୍ୟ ଆଉ ଚାଲିବା ସଂଭବ ନୁହେଁ । ସମୟ ନିର୍ଘଣ୍ଟ ସରି ସରି ଆସୁଛି । ତେଣୁ ମୋତେ 'ଯୁ' ଫାଟକ ନିକଟସ୍ଥ ଅଫିସରେ ଛାଡ଼ିଦେଇ, ସେମାନଙ୍କୁ ଆଗେଇ ଯିବା ପାଇଁ ଅନୁରୋଧ କଲି । ସେ ସମୟରେ ଦିଲ୍ଲୀର ଫିରୋଜଶାହା କୋଟ୍‌ଲା ଗ୍ରାଉଣ୍ଡରେ ବୋଧହୁଏ ଭାରତ ଓ ନ୍ୟୁଜିଲାଣ୍ଡ ମଧ୍ୟରେ କ୍ରିକେଟ୍ ଟେଷ୍ଟ ମ୍ୟାଚ୍ ଚାଲିଥାଏ ଏବଂ ତାହାର ସିଧା ପ୍ରସାରଣ ଟେଲିଭିଜନରେ ହେଉଥାଏ । ପୂର୍ବରୁ ଗାଁରେ କେବେ ଟେଲିଭିଜନ ଦେଖିବାର ଅବକାଶ ଆସିନଥିଲା । ତେଣୁ ଅଫିସ୍‌ରେ ବସି, ଖେଳ ଦେଖୁଥିବା ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କ ସହିତ ମିଶି କ୍ରିକେଟ୍ ମ୍ୟାଚ୍ ଦେଖିଲି । ପ୍ରକାଶ ଥାଉକି, ମୋ ବ୍ୟତୀତ ଅନ୍ୟ ସମସ୍ତେ ୱାକିଙ୍ଗ ଟେଷ୍ଟରେ କୃତକାର୍ଯ୍ୟ ହୋଇଥିଲେ । ସେଦିନ ରବିବାର ଥିବାରୁ ଦିନ ପ୍ରାୟ ଏଗାରଟା ବେଳକୁ ବନ୍ଧୁ ଶ୍ରୀ ମହାପାତ୍ର ମୋତେ ନେବାପାଇଁ ସ୍କୁଟର ଧରି ଆସି ପହଞ୍ଚିଲେ । ମୋଠାରୁ ସମସ୍ତ ଖବର ଶୁଣି ଏବଂ ମୋର ଦୁରବସ୍ଥା ଦେଖି ହତାଶ ହୋଇଗଲେ । ମୁଁ କୌଣସି ପ୍ରକାରେ ଚାଲିବା ଅବସ୍ଥାରେ ନଥାଏ । ଅନ୍ୟମାନେ ଟେକାଟେକି କରି ନେଇ ମୋତେ ସ୍କୁଟର ପଛରେ

ବସାଇଲେ ଓ ଆମେ ଫେରି ଆସିଥିଲୁ । ରାତିରେ ବଂଧୁ ଆଣିଥିବା କିଛି ମଲମ ଆଣ୍ଠୁରେ ମାଲିସ୍ କଲି ଓ ପେନ୍‌କିଲର ଖାଇଦେଇ ଶୋଇଗଲି ।

ଗୋଟିଏ ଦିନ ପୂରା ବିଶ୍ରାମ ନେବାପରେ, ଦ୍ୱିତୀୟ ଦିନକୁ ମୋର ଅବସ୍ଥା ସ୍ୱାଭାବିକ ହେଲା । ମୁଁ ଉତ୍କଳ ଏକ୍‌ସପ୍ରେସରେ ଖୋର୍ଦ୍ଧା ରୋଡ଼ ଫେରିଆସିଲି ଓ ସେଠୁ ବସ୍ ଧରି ଗାଁକୁ ଗଲି । ମୋର ବିଫଳତାର ବୃତ୍ତାନ୍ତ କାହା ଆଗରେ କହି ନଥାଏ । ମନେ ମନେ ଭଜି ହେଉଥିଲି ଫାଇନାଲ୍ ରେଜଲଟ୍ ଫେଲ୍ ମାରିବା କଥା ସମସ୍ତଙ୍କୁ କହି କାହିଁକି ଅଯଥାରେ ଲୋକହସା ହେବି ।

ସ୍ୱାଭାବିକ ଭାବରେ କଲେଜ ଯିବାଆସିବା କଲି । ଯିଏ ପଚାରନ୍ତି, ତାଙ୍କୁ କହିଦିଏ ଚେଷ୍ଟାତ କରିଛି । ଦେଖାଯାଉ ଭାଗ୍ୟରେ କ'ଣ ଅଛି ? କିନ୍ତୁ ମୋ ଭାଗ୍ୟଫଳ ମୁଁ ଜାଣି ସାରିଥାଏ । ୧୯୭୫ ମସିହା ଫେବୃଆରୀ ମାସ ପ୍ରଥମ ବା ଦ୍ୱିତୀୟ ସପ୍ତାହ ହେବ ବୋଧହୁଏ । କଲେଜ ଯିବାକୁ ବାହାରିଛି । ଏହି ସମୟରେ ଗାଁର ଡାକିଆ 'ଉସ୍‌ମାନ୍' ରେଜିଷ୍ଟ୍ରି ଡାକଟିଏ ଆଣି ଧରେଇ ଦେଲା । ଭାରତ ସରକାରଙ୍କର କୃଷି ଓ ବନ ମନ୍ତ୍ରଣାଳୟରୁ ଚିଠି ଆସିଥାଏ । ଚିଠିଟି ଖୋଲି ପଢ଼ିବା ଆଗରୁ ମନେ ମନେ ଭାବିନେଲି ଏହା ନିଶ୍ଚୟ ସୌଜନ୍ୟ ମୂଳକ ଚିଠି ହୋଇଥିବ । ଯେଉଁଥିରେ ଦୁଃଖ ପ୍ରକାଶ କରି ଜଣାଇ ଦିଆଯାଇଥିବ ଯେ, ଆପଣ ଭାରତୀୟ ବନସେବା ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । କିନ୍ତୁ ଚିଠିଟି ଖୋଲିଲା ପରେ ମୋ ପାଇଁ ଏକ ସଂପୂର୍ଣ୍ଣ ଭିନ୍ନ ସଂବାଦ ସେଥିରେ ଥିଲା । ଲେଖାଥିଲା-ଆପଣ ଭାରତୀୟ ବନସେବାରେ ଉଭୟ ଲିଖିତ ଓ ମୌଖିକ ପରୀକ୍ଷାରେ କୃତକାର୍ଯ୍ୟ ହୋଇଛନ୍ତି । ମେଡିକାଲ୍ ଏକ୍‌ଜାମିନ୍‌ସେନରେ ଉପଯୁକ୍ତ ବିବେଚିତ ହୋଇଛନ୍ତି । କିନ୍ତୁ ଦୁଃଖର ବିଷୟ ଯେ, ନିର୍ଦ୍ଧାରିତ ସମୟ ନିର୍ଘଣ୍ଟ ଭିତରେ ଆପଣ ୨୫ କିଲୋମିଟର ସଂପୂର୍ଣ୍ଣ କରି ପାରିନାହାନ୍ତି, ଆପଣ ଯଦି ଆଉଥରେ ଏହି ଟେଷ୍ଟ ଦେବାପାଇଁ ଆଗ୍ରହୀ ତେବେ ସାତଦିନ ମଧ୍ୟରେ ଉପଯୁକ୍ତ କାରଣ ଦର୍ଶାଇ ଆବେଦନ କରି ପାରିବେ ।

ଓଡ଼ିଆରେ ଗୋଟିଏ ଢଗ ଅଛି 'ମଲୁ ଖୋଜୁଥିଲା ପଇଡ ପାଣି । ବଇଦ କହିଲା ପି' ତୋରାଣି ।' ୱାକିଙ୍ଗ୍ ଟେଷ୍ଟ ଅସଂପୂର୍ଣ୍ଣ ହେଲା ପରଠାରୁ ମୁଁ ପ୍ରାର୍ଥନା କରୁଥିଲି, ଈଶ୍ୱର, ମୋତେ ପୁନର୍ବାର ଏହି ଟେଷ୍ଟ ପାଇଁ ସୁଯୋଗ ମିଳନ୍ତା କି ? ଈଶ୍ୱରଙ୍କ ଅସୀମ କରୁଣାରୁ ସେହି ସୁଯୋଗ ଏବେ ଆସି ପହଞ୍ଚିଛି । ତେଣୁ ବିଳମ୍ୱ ନକରି ୱାକିଙ୍ଗ ଟେଷ୍ଟ ସମୟରେ ମୁଁ

ଅସୁସ୍ଥ ଥିଲି ବୋଲି ଡାକ୍ତରୀ ସାର୍ଟିଫିକେଟ ଯୋଗାଡ଼ କରି ଏବଂ ଦିଲ୍ଲୀର ଆଶାତୀତ ଥଣ୍ଡା ଓ କୋହଲା ପାଗ ଯୋଗୁଁ ହଠାତ୍ ଆଡଜଷ୍ଟ କରିପାରିଲି ନାହିଁ ବୋଲି କାରଣ ଦର୍ଶାଇ ପୁନର୍ବାର ମୋତେ ସୁଯୋଗ ଦେବାପାଇଁ ଭାରତ ସରକାରଙ୍କର କୃଷି ଓ ବନ ମନ୍ତ୍ରଣାଳୟକୁ ନିବେଦନ କଲି । ଘରେ କେବଳ ବୋଉକୁ ସମସ୍ତ ଘଟଣା ଜଣାଇଲି । ମା'ର ଆଶୀର୍ବାଦ ବିନା ପୁଅ କ'ଣ କେଉଁ କାର୍ଯ୍ୟରେ ସଫଳ ହୋଇପାରେ ?

ପରଦିନ ପ୍ରତ୍ୟୁଷରୁ କ୍ଷିପ୍ରଗତିରେ ଚାଲିବା ଅଭ୍ୟାସ ଆରଂଭ କରିଦେଲି । ପ୍ରଥମ ଚାରି ପାଞ୍ଚଦିନ ଦଶ କିଲୋମିଟର ଚାଲିଲି । ମୁକୁନ୍ଦପ୍ରସାଦ-ଜଟଣୀ ଛକଠାରୁ ଗଙ୍ଗପଡ଼ା ପର୍ଯ୍ୟନ୍ତ ଯାଉଥିଲି ଏବଂ ସେଠାରୁ ଫେରି ଆସୁଥିଲି । କ୍ରମଶଃ ଏହି ଦୂରତ୍ୱ ଧୀରେଧୀରେ ଦୌଡ଼ି ଦୌଡ଼ି ଅତିକ୍ରମ କଲି । ତା' ପରେ କିପରି ଚାରିଘଣ୍ଟାରୁ କମ୍ ସମୟ ଭିତରେ ୨୫ କିଲୋମିଟର ଅତିକ୍ରମ କରିପାରିବି ତାର ଯୋଜନା କଲି । ସକାଳ ୬ଟାରୁ ବାହାରି ଭୁବନେଶ୍ୱର ଜାତୀୟ ରାଜପଥରେ ଜାଆଁଳା ପର୍ଯ୍ୟନ୍ତ ଯାଉଥିଲି । ସେଠୁ ପଛକୁ ଫେରି, ମା' ଭୁଆଷୁଣୀଙ୍କ ମନ୍ଦିର ପାର୍ଶ୍ୱରୁ ଜଟଣୀ ରାସ୍ତାରେ ଯାଇ ଷଣ୍ଢପୁରଠାରେ ଜଟଣୀ ବଜାରରେ ପହଞ୍ଚୁଥିଲି ଏବଂ ସେଠାରୁ ଜଟଣୀ-ଖୋର୍ଦ୍ଧା ରାସ୍ତାରେ କଲେଜ ଛକ ଦେଇ ଗାଁ କୁ ଫେରୁଥିଲି । ସେ ସମୟରେ ଜଟଣୀ କଲେଜ ହୋଇନଥାଏ । ସେଠିକାର ପିଲାମାନେ ମଧ୍ୟ ଦୈନିକ ଯିବାଆସିବା କରି ଖୋର୍ଦ୍ଧା ପ୍ରାଣନାଥ କଲେଜରେ ପଢୁଥାନ୍ତି । ଦିନେ ଜଟଣୀ ରାସ୍ତାରେ ଗାଁକୁ ଫେରୁଥିଲି । ଖୋର୍ଦ୍ଧା କଲେଜରେ ପଢୁଥିବା ଦୁଇଜଣ ଛାତ୍ର ଦୁଇଟି ସାଇକେଲ୍‌ରେ କଲେଜ ଆସୁଥିଲେ । ମୁଁ ରାସ୍ତାରେ ଦୌଡ଼ିଦୌଡ଼ି ଆସୁଥିବା ଦେଖି ସେମାନେ ହତବାକ୍ ହୋଇଗଲେ । ମୋ ପାଖରେ ଓହ୍ଲାଇପଡ଼ି ନମସ୍କାରାନ୍ତେ ବିନମ୍ରତାର ସହିତ ତାଙ୍କ ସାଇକେଲ ପଛରେ ବସିବାକୁ ଅନୁରୋଧ କଲେ । ମୁଁ ସେମାନଙ୍କୁ ପ୍ରକୃତ ତଥ୍ୟ ଲୁଚାଇବା ଉଚିତ୍ ମନେ କଲି ନାହିଁ ଏବଂ ଦିଲ୍ଲୀଠାରେ ହେବାକୁ ଥିବା ଭାରତୀୟ ବନସେବାରେ ୱାକିଙ୍ଗ ଟେଷ୍ଟ ପାଇଁ ପ୍ରସ୍ତୁତ ହେଉଛି ବୋଲି ଜଣେଇଲି । କ୍ରମେ କାନକୁ ଦୁଇକାନ ହୋଇ ଖବରଟି କଲେଜରେ ପ୍ରଚାରିତ ହୋଇଗଲା । ମୋତେ ଅଧ୍ୟାପକ ବଂଧୁମାନଙ୍କୁ ଜଣାଇବାକୁ ପଡିଲା ଯେ, ଭାରତୀୟ ବନସେବାର ଲିଖିତ ମୌଖିକ ପରୀକ୍ଷାରେ ମୁଁ କୃତକାର୍ଯ୍ୟ ହୋଇ ସାରିଛି । କେବଳ ୱାକିଙ୍ଗ ଟେଷ୍ଟ ସଂପୂର୍ଣ୍ଣ କରିବା ବାକି ଅଛି । ସେଥିପାଇଁ ଆଉଥରେ ସୁଯୋଗ ମିଳୁଛି । ଏହି ଅଯାଚିତ ସୁଯୋଗକୁ କିଏ ହାତଛଡା କରିପାରେ ! ପରିଶେଷରେ ଭାରତ ସରକାର ମୋର ନିବେଦନ ଗ୍ରହଣକରି ଫେବୃୟାରୀ ମାସ ତୃତୀୟ ସପ୍ତାହରେ ଦିଲ୍ଲୀ ଯାଇ ଆଉଥରେ ଟେଷ୍ଟ ଦେବାପାଇଁ ସୁଯୋଗ ଦେଲେ ।

ଏଥର ଯାତାୟତ ଖର୍ଚ୍ଚ ସରକାର ଦେବେନାହିଁ ବୋଲି ମୋତେ ସ୍ପଷ୍ଟ ଭାବରେ ଜଣାଇ ଦିଆଯାଇଥିଲା । ଯିବା ପୂର୍ବରୁ ଶେଷ ଚାରି ପାଞ୍ଚଦିନ ସକାଳେ ନିୟମିତ ୨୦ କିଲୋମିଟର ଚାଲିବା ଓ ଦୌଡ଼ିବା ସହିତ ସଂଧ୍ୟାବେଳେ ଦଣ୍ଡ ବୈଠକ ଆଦି କରିବା ମଧ୍ୟ ଆରମ୍ଭ କରି ଦେଇଥିଲି ଯେମିତି ଆଥିଲେଟିକ୍ସ ଇଭେଣ୍ଟ୍‌ରେ ଯୋଗ ଦେବାକୁ ଯାଉଛି ।

ଅବଶେଷରେ ଧାର୍ଯ୍ୟ ତାରିଖ ପୂର୍ବଦିନ ରାତିରେ ଦିଲ୍ଲୀରେ ବଂଧୁଙ୍କ ଭଡ଼ାଘରେ ପହଞ୍ଚିଲି । ଏଥରକ ବଂଧୁଙ୍କୁ ଆଉ କଷ୍ଟ ନଦେଇ ଅଟୋଟିଏ କରି ଏକାକୀ ଦିଲ୍ଲୀ 'ଯୁ'ରେ ପରଦିନ ସକାଳ ସାଢ଼େ ଛଅଟା ସୁଦ୍ଧା ହାଜର ହୋଇଗଲି । ସାତଟା ବେଳକୁ ଟେଷ୍ଟ ଆରମ୍ଭ ହେବ ବୋଲି ସମୟ ନିର୍ଘଣ୍ଟ କରାଯାଇଥାଏ । ପରୀକ୍ଷାର୍ଥୀ ବା ପ୍ରାର୍ଥୀ ମୁଁ ଏକା । ଅଫିସ୍‌ର କର୍ମଚାରୀ ଜଣକ ମୋତେ ନିକଟରେ ରହୁଥିବା ଏ.ସି.ଏଫ୍.ଙ୍କ କ୍ୱାଟର୍ସକୁ ଜଣେ ପିଅନ ସହ ପଠାଇଦେଲେ । ଟେଷ୍ଟ ପରିଚାଳନା କରିବା ଦାୟିତ୍ୱ ତାଙ୍କୁ ଦିଆଯାଇଥାଏ । ମୁଁ ସେଠି ପହଞ୍ଚିଲା ବେଳକୁ ଏ.ସି.ଏଫ୍.ଘରେ ନଥିଲେ । ଅପେକ୍ଷା କରି ତାଙ୍କ ଡ୍ରଇଁ ରୁମ୍‌ରେ ବସି ରହିଲି । ପ୍ରାୟ ସାତଟା ଦଶମିନିଟ ବେଳକୁ ଏ.ସି.ଏଫ୍. ମହାଶୟ ସ୍କୁଟରରେ ପହଞ୍ଚିଲେ । ଝିଅକୁ ସ୍କୁଲରେ ଛାଡ଼ିବାକୁ ଯାଇଥିବା କାରଣରୁ ସାମାନ୍ୟ ବିଳମ୍ବ ହେଲା ବୋଲି କହି ଦୁଃଖ ପ୍ରକାଶ କଲେ । ଘର ଭିତରକୁ ଯାଇ ମୋ ପାଇଁ ଚାହା କପେ ପଠେଇଲେ ଏବଂ ଦଶ ମିନିଟ୍ ଭିତରେ ପ୍ରସ୍ତୁତ ହୋଇ ବାହାରକୁ ଆସିଲେ । ସ୍କୁଟର ପାଖକୁ ଆସି ମୋତେ କହିଲେ, ପଛରେ ବସନ୍ତୁ । ମୁଁ ଆପଣଙ୍କୁ ଟ୍ରାକ୍ ଦେଖେଇ ଦେବି ।

ଆଜ୍ଞା, ମୁଁ ପୂର୍ବରୁ ଥରେ ଆସି ଏ ବିଷମ ପରୀକ୍ଷାରେ ଫେଲ ହୋଇଛି । ତେଣୁ ଟ୍ରାକ୍ ମୋର ଠିକ୍ ମନେଅଛି-ମୁଁ କହିଲି ।

ତଥାପି ସେ ବାଧ୍ୟ କଲେ ତାଙ୍କୁ ସ୍କୁଟର ପଛରେ ବସିବା ପାଇଁ ଏବଂ ଗୋଲାକାର ଟ୍ରାକ୍‌ରେ ଥରେ ବୁଲେଇ ଆଣି ଷ୍ଟାର୍ଟିଙ୍ଗ ପଏଣ୍ଟରେ ଓହ୍ଲେଇଦେଲେ । କହିଲେ, ବର୍ତ୍ତମାନ ଆପଣ ଦ୍ୱିତୀୟ ରାଉଣ୍ଡରୁ ଆରମ୍ଭ କରନ୍ତୁ, 'ୟେ ମେରି ତରଫ୍ ସେ ଆପକୋ ଛୋଟାସା ତୋଫା ହେ', ମୁଁ ତାଙ୍କ ମୁହଁକୁ ଚାହିଁଲି ଏବଂ ଧୀରେ ଧୀରେ ଟ୍ରାକ୍‌ରେ ଦୌଡ଼ିବାକୁ ଆରମ୍ଭ କଲି । ବେଳେବେଳେ କ୍ଷିପ୍ର ଗତିରେ ଚାଲୁଥାଏ । ଏମିତି ୯ ରାଉଣ୍ଡ, ଏଥର ପ୍ରାୟ ତିନିଘଣ୍ଟାରେ ସରିଗଲା । ମୁଁ ଭାରତୀୟ ବନ ସେବାରେ ଯୋଗ ଦେବାପାଇଁ ଯୋଗ୍ୟ ବିବେଚିତ ହୋଇଗଲି ।

ଦିଲ୍ଲୀରୁ ଫେରିଆସିବାର ପାଞ୍ଚ, ଛଅ ଦିନପରେ ଡେରାଡୁନ୍‌ଠାରେ ଅବସ୍ଥିତ ଇଣ୍ଡିଆନ୍ ଫରେଷ୍ଟ କଲେଜରେ ଦୁଇବର୍ଷ ଟ୍ରେନିଂ ନେବାପାଇଁ ମୋ ପାଖରେ ନିଯୁକ୍ତିପତ୍ର ପହଁଞ୍ଚିଗଲା । ଇନ୍ ସର୍ଭିସ୍ ଟ୍ରେନିଙ୍ଗ୍ । ଟ୍ରେନିଂ ସମୟରେ ପୂରା ଦରମା ଓ ଡି.ଏ. ଇତ୍ୟାଦି ମିଳିବ । ସେତେବେଳେ ମାସିକ ଦରମା ଟଙ୍କା ଥିଲା ଟ ୭୫୦/- ବେସିକ୍ । ୧୯୭୫ ମସିହା ମାର୍ଚ୍ଚ ମାସ ୧ ତାରିଖରୁ ୭୫-୭୭ ବ୍ୟାଚ୍‌ର ଭାରତୀୟ ବନ ସେବା ପ୍ରୋବେସନାରୀ ଅଫିସର ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆରମ୍ଭ ହେବାର ସୂଚନା ଦିଆଯାଇଥାଏ । କିନ୍ତୁ ସାମାନ୍ୟ ବିଳମ୍ବରେ ନିଯୁକ୍ତି ପତ୍ର ପାଇଥିବାରୁ ଏବଂ ଟ୍ରେନିଂ ସଂକ୍ରାନ୍ତୀୟ କେତେକ ଆନୁସଙ୍ଗିକ ସାମାନପତ୍ର ଯୋଗାଡ଼ କରିବାରେ ଡେରି ହେବାରୁ, ମୁଁ ମାର୍ଚ୍ଚ ୮ ତାରିଖ ଦିନ, କଲିକତା ବାଟଦେଇ ଡୁନ୍ ଏକ୍‌ସପ୍ରେସ୍‌ରେ ଡେରାଡୁନ୍ ଯିବାକୁ ସ୍ଥିରକଲି । କଲିକତାରେ ଟ୍ରେନ୍ ଚଢ଼େଇ ଦେବାପାଇଁ ମୋର ସ୍କୁଲ ଜୀବନର ବାଲ୍ୟବଂଧୁ ଶ୍ରୀ ବୁଦ୍ଧଦେବ ଅଗ୍ରୱାଲା ବାହାରିଲେ । ଲୁଗା ବ୍ୟବସାୟ ସଂକ୍ରାନ୍ତରେ ବାରମ୍ବାର ଯାଉଥିବାରୁ, ସେ କଲିକତା ସହର ସହ ବେଶ୍ ପରିଚିତ ହୋଇ ସାରିଥିଲେ । କଲିକତାର ଗାର୍ଡେନରିଚ ବୁକିଙ୍ଗ କାଉଣ୍ଟରରେ ନିଜର ସ୍ୱବୁଦ୍ଧି ପ୍ରୟୋଗ କରି ମୋ ପାଇଁ ଡୁନ୍ ଏକ୍‌ସପ୍ରେସ୍‌ରେ ଖଣ୍ଡିଏ ପ୍ରଥମ ଶ୍ରେଣୀର ସଂରକ୍ଷିତ ଟିକେଟ ଯୋଗାଡ଼ କରିବାକୁ କ୍ଷମ ହୋଇ ପାରିଲେ ସେ । ଆଠ ତାରିଖ ସଂଧ୍ୟାରେ ବାଲ୍ୟବଂଧୁଙ୍କ ଠାରୁ ବିଦାୟ ନେଇ ଡେରାଡୁନ୍ ଅଭିମୁଖେ 'ଡୁନ୍' ଏକ୍‌ସପ୍ରେସରେ ଚଢ଼ିଲି । ତା' ପରଦିନ ଟ୍ରେନ୍‌ରେ ବିତିଗଲା । ଦଶ ତାରିଖ ଭୋରରୁ ନିଦ ଭାଙ୍ଗିଲା ବେଳକୁ ଦେଖିଲି ଟ୍ରେନ୍‌ଟି ଏକ ଛୋଟ ପାହାଡି ଷ୍ଟେସନରେ ଅଟକିଛି । ଷ୍ଟେସନ୍‌ଟି ନାଁ 'ଲଛିୱାଲା' । ମାର୍ଚ୍ଚ ମାସରେ ମଧ୍ୟ କୁହୁଡ଼ିରେ ଘୋଡେଇ ହୋଇ ପଡିଥିଲା ଷ୍ଟେସନଟି । କାଁ ଭାଁ କିଛି ରେଳବାଇ କର୍ମଚାରୀ ଖାକି ରଂଗର ମୋଟା ମୋଟା ଓଭର କୋଟ ପିନ୍ଧି ଏପଟରୁ ସେପଟ ଦୌଡ଼ାଦୌଡ଼ି କରୁଥିଲେ । ପଚାରି ବୁଝିଲି ଏହାର ପରବର୍ତ୍ତୀ ଷ୍ଟେସନ 'ଡେରାଡୁନ୍' । ଉଠାଣିଆ ପାହାଡ଼ି ରାସ୍ତା ହେତୁ ଟ୍ରେନ୍ ଧୀରେ ଧୀରେ ଚାଲୁଥାଏ । ସକାଳ ସାତଟା ବେଳକୁ ଡେରାଡୁନ୍ ଷ୍ଟେସନ୍‌ରେ ଗାଡି ଅଟକିଲା । ଏଇଟା ହିଁ ଡୁନ୍ ଏକ୍‌ସପ୍ରେସ୍‌ର ଶେଷ ରହଣି । ଟ୍ରେନ୍‌ରୁ ଓହ୍ଲେଇ, ଷ୍ଟେସନ ବାହାରେ ଗନ୍ତବ୍ୟସ୍ଥଳ ଅଭିମୁଖେ ଟାଙ୍ଗାଟିଏ (ଘୋଡାଗାଡ଼ି) ଧରିଲି ।

ଗନ୍ତବ୍ୟସ୍ଥଳ ଥାଏ ଫରେଷ୍ଟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ ଏବଂ କଲେଜ ଅଧୀନରେ ଥିବା ଇଣ୍ଡିଆନ୍ ଫରେଷ୍ଟ କଲେଜ । ଏଫ୍.ଆର୍.ଆଇ.। ଡେରାଡୁନ୍ ଉପଜିଲ୍ଲା ଖଣ୍ଡରେ ଏଫ୍.ଆର.ଆଇ ଏକ ଅତି ପରିଚିତ ସ୍ଥାନ । ସହର ଅତିକ୍ରମ କରି ଚକର୍ତ୍ତା ରୋଡରେ

କିଛିବାଟ ଗଲାପରେ ଡାହାଣ ପଟେ କ୍ୟାମ୍ପସ୍ ସହ ବିଶାଳକାୟ ମୁଖ୍ୟ ଫାଟକ ଦୃଷ୍ଟିଗୋଚର ହେଲା, କିନ୍ତୁ ଏହା ବନ୍ଦ ଥିଲା । ଟାଙ୍ଗା ଚାଳକ ସୂଚାଇ ଦେଲା, ବର୍ଷରେ ମାତ୍ର ତିନି ଦିନ, ଅର୍ଥାତ୍ ଅଗଷ୍ଟ ପନ୍ଦର, ଜାନୁୟାରୀ ଛବିଶ ଏବଂ ଅଫିସରମାନଙ୍କର 'କନ୍‌ଭୋକେସନ୍' ଦିନ ସର୍ବସାଧାରଣଙ୍କ ଯାତାୟତ ପାଇଁ ଏହି ଫାଟକ ଖୋଲିଥାଏ । ଏହାକୁ ଅତିକ୍ରମ କରି କିଛି ବାଟ ଗଲା ପରେ ଟ୍ରେଭର୍ ରୋଡ ଗେଟ୍ ଦେଇ କ୍ୟାମ୍ପସ ଭିତରକୁ ପଶିଲୁ । ରାସ୍ତା ଦୁଇକଡର ଝଙ୍କାଳିଆ ଗଛମାନେ ନାଲି, ଗୋଲାପି, ହଳଦିଆ, ଧଳା ଓ ବାଇଗଣୀ ରଂଗର ଫୁଲରେ ଭର୍ତ୍ତିହୋଇ, ସତେ ଯେପରି ମୋତେ ସ୍ୱାଗତ ଜଣାଉଥିଲେ ଏକ ନୂଆ ଜଗତକୁ । ଏକ ନୂତନ ଜୀବନଯାତ୍ରା ପ୍ରଣାଳୀର ଗଡ୍‌ଡଳିକା ପ୍ରବାହକୁ ।

ପ୍ରଥମବର୍ଷର ଆଇ.ଏଫ୍.ଏସ୍. ପ୍ରୋବେସନରମାନଙ୍କ ପାଇଁ ନ୍ୟୁ ହଷ୍ଟେଲରେ ରହିବାର ବନ୍ଦୋବସ୍ତ କରାଯାଇଥାଏ । ପ୍ରତ୍ୟେକଙ୍କ ପାଇଁ ସ୍ୱତନ୍ତ୍ର କୋଠରି । ମୋ ପାଇଁ ଉଦ୍ଦିଷ୍ଟ କୋଠରିରେ ଜିନିଷପତ୍ର ରଖିଦେଇ, ସ୍ନାନାଦି ନିତ୍ୟକ୍ରମ ପରେ ବ୍ରେକ୍‌ଫାଷ୍ଟ ଖାଇ ଏବଂ ପ୍ରସ୍ତୁତ ହୋଇ ମୁଁ ଫରେଷ୍ଟ କଲେଜକୁ ଗଲି ଓ ୧୯୭୫ ମସିହା ମାର୍ଚ୍ଚ ମାସ ଦଶତାରିଖ ପୂର୍ବାହ୍ଣରେ ମୋର ଜଏନିଂ ରିପୋର୍ଟ ଦାଖଲ କଲି ।

ଏଇଠୁ ଆରମ୍ଭ ହେଲା 'ଅରଣ୍ୟ ଯାତ୍ରୀ'ର ସୁଦୀର୍ଘ ଜୀବନ ଯାତ୍ରା !



# ସଁବାଳୁଆର ପ୍ରଜାପତି



ଡେରାଡୁନ୍ ମୁଖ୍ୟ ସହରଠାରୁ ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ, ଭାରତୀୟ ବନ ଗବେଷଣା ପ୍ରତିଷ୍ଠାନ କ୍ୟାମ୍ପସ୍‌ର ନାଁ -ନ୍ୟୁ ଫରେଷ୍ଟ । ଏଠାକାର ପୋଷ୍ଟ ଅଫିସ୍ ନାଁ ମଧ୍ୟ ନ୍ୟୁ ଫରେଷ୍ଟ । ଗୋଟିଏ ପଟେ ଡେରାଡୁନ୍-ଚକର୍ତ୍ତା ରୋଡରୁ ଅନ୍ୟପଟେ 'କୋଲାଗଡ଼' ଗେଟ୍ ପର୍ଯ୍ୟନ୍ତ ପରିବ୍ୟାପ୍ତ ପ୍ରାୟ ୩୦୦ଏକର ପରିମିତ ଏହି ବିଶାଳ କ୍ୟାମ୍ପସ୍‌ଟି ଏକ କୃତ୍ରିମ ଜଙ୍ଗଲ କହିଲେ ଅତ୍ୟୁକ୍ତି ହେବନାହିଁ । ନାତିଶୀତୋଷ୍ଣ ମଣ୍ଡଳର ହିମାଳୟାନ୍ 'କୋନିଫର୍' ଗଛ ଯଥା ଓକ୍, ଦେବଦାରୁ, ଫର୍, ବ୍ଲୁ ପାଇନ୍ ଓ ଚିର୍ ପାଇନ୍‌ଠାରୁ ଆରମ୍ଭକରି, ଚଉଡ଼ା ପତ୍ର ବିଶିଷ୍ଟ ଗଛ ଯଥା, ଶାଳ, ସାଗୁଆନ୍, ପିଆଶାଳ, ଶିଶୁ, ଚନ୍ଦନ ଓ ନିମ୍ବ ଇତ୍ୟାଦି ଗଛ ଏବଂ ଭାରତର ବିଭିନ୍ନ ପ୍ରାନ୍ତରରେ ଦେଖାଯାଉଥିବା ବାଉଁଶ ଜଙ୍ଗଲ ଏଠାରେ ସୃଷ୍ଟି କରାଯାଇଛି । ସେଥିପାଇଁ ଯଥାର୍ଥରେ କ୍ୟାମ୍ପସ୍‌ଟିର ନାଁ ରଖାଯାଇଛି-ନ୍ୟୁ ଫରେଷ୍ଟ ।

କ୍ୟାମ୍ପସ୍‌ର ମଧ୍ୟ ସ୍ଥଳରୁ ମୁଖ୍ୟ ଫାଟକର ଦୂରତା ପ୍ରାୟ ଏକ କିଲୋମିଟରରୁ କମ୍ ହେବନାହିଁ । କିନ୍ତୁ ଏକ ସରଳ ରେଖାରେ ଅବସ୍ଥିତ ଥିବାରୁ, ମୁଖ୍ୟ ଫାଟକରୁ ବନ ଗବେଷଣା ପ୍ରତିଷ୍ଠାନର ରମଣୀୟ ଅପରୂପ ରୂପ ପରିଦର୍ଶକ ବା ପର୍ଯ୍ୟଟକମାନେ ମନଭରି ଉପଭୋଗ କରିଥାଆନ୍ତି । ଏହି ରାସ୍ତାର ଅନତିଦୂରରେ 'ଟ୍ରେଭର ରୋଡ୍'- ସମାନ୍ତରାଳ ଭାବେ ନ୍ୟୁ ହଷ୍ଟେଲ୍ ପର୍ଯ୍ୟନ୍ତ ଲମ୍ବିଯାଇଛି । ଭିତରେ ଭିତରେ ସଂଯୋଗକାରୀ ଚତୁଃକୋଣୀୟ ନକ୍ସା ଆକାରରେ ଅନେକ ରାସ୍ତା । ପ୍ରତିଟି ରାସ୍ତାର ଉଭୟ ପାର୍ଶ୍ୱରେ ସୁନିର୍ବାଚିତ ଗଛର ଆଭେନ୍ୟୁ । ଗୁଲ୍‌ମୋହର, ରାଧାଚୂଡ଼ା, ଜାକାରଣ୍ଡା, କାସିଆ, ଆକାଶମଲ୍ଲୀ, ସୁନାରୀ, ପାଟୁଳି ଓ ସିଲଭର୍ ଓର୍କ୍ ଆଦି ଗଛରେ ବିଭିନ୍ନ ରଂଗର ଫୁଲ ବର୍ଷର ବିଭିନ୍ନ ସମୟରେ ପ୍ରସ୍ଫୁଟିତ ହୋଇ ସରଣୀର ଶୋଭା ବଢ଼ାଇଥାଏ ।

ପୃଷ୍ଠଦେଶରେ ଠାଏ ଠାଏ ବରଫ ଆଚ୍ଛାଦିତ 'ମସୌରୀ' ଶୈଳନିବାସକୁ ପ୍ରଚ୍ଛଦପଟରେ ରଖି, ଗ୍ରୀକ୍-ରୋମାନ୍ କଳା କୌଶଳର ଶୈଳୀରେ ନିର୍ମିତ ବନ ଗବେଷଣା ଅନୁଷ୍ଠାନର ବିଶାଳକାୟ ସୌଧ । ଏହାର ମୁଖ୍ୟ ସ୍ଥପତି ସି.ଜି. ବ୍ଲୋମଫିଲ୍‌ଡ । ୫, ୮୦୦ ବର୍ଗମିଟର ପରିମିତ ଅଂଚଳରେ ନିର୍ମିତ ମୁଖ୍ୟ ସୌଧଟି ଏକ ଜାତୀୟ ସଂପତ୍ତି ରୂପେ ୧୯୨୯ ମସିହାରେ ଉଦ୍‌ଘାଟିତ ହୋଇଥିଲା । ମୁଖ୍ୟ ସୌଧର ସ୍ଥାପତ୍ୟ ତଥା ବିଶାଳତା ଅତି ମନୋରମ । ଡୁନ୍ ଉପତ୍ୟକାର ରମଣୀୟ ପ୍ରାକୃତିକ ପରିବେଷ୍ଟନୀ ଭିତରେ ଗଢ଼ି ଉଠିଥିବା ବନ ଗବେଷଣା ଅନୁଷ୍ଠାନଟି ତତ୍‌କାଳୀନ ଫରେଷ୍ଟ ଅଫିସର୍‌ମାନଙ୍କର ଦୂରଦୃଷ୍ଟିର ପରିଚାୟକ ଏବଂ ୧୯୦୬ ମସିହାରେ ଇମ୍ପିରିଆଲ ଫରେଷ୍ଟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ନାମରେ ପ୍ରତିଷ୍ଠିତ ହୋଇଥିଲା ।

ଅନୁଷ୍ଠାନରେ ପାଦଦେବା ଦିନ ହିଁ ଏହାର ସ୍ଥାପତ୍ୟର କଳାକୌଶଳ ମୋତେ ବିହ୍ୱଳିତ କରିଦେଇଥିଲା । ଆସନ୍ନ ସଂଧ୍ୟାରେ ହଷ୍ଟେଲ ସମ୍ମୁଖସ୍ଥ ସବୁଜ ପ୍ରାନ୍ତରରେ ବୁଲୁବୁଲୁ ମୁଁ ଆବିଷ୍କାର କରିଥିଲି ଝିଲିମିଲି ଆଲୋକମାଳାରେ ଉଦ୍‌ଭାସିତ ମସୌରୀ ଶୈଳନିବାସ ଓ ତାର ଧବଳ ବରଫାବୃତ ଗିରିଶୃଙ୍ଗ । ବନ ଗବେଷଣା ଅନୁଷ୍ଠାନର ପ୍ରଚ୍ଛଦ ଦେଶରେ ଏହି ଅବର୍ଣନୀୟ ଦୃଶ୍ୟ ଦେଖି ମନେ ହେଉଥିଲା, ରାତ୍ରିର ଅଂଧକାରରେ ଅନୁଷ୍ଠାନର ମୁକୁଟ ସଦୃଶ ଏହି ପାହାଡ଼ ଛାତିରେ ଜକମକ କରୁଥିବା ହୀରାର ମାଳାଟିଏ କିଏ ପିନ୍ଧାଇ ଦେଇଛି । ଏମିତି ଏକ ପ୍ରାଚୀନତମ ଓ ପ୍ରସିଦ୍ଧିଲାଭ କରିଥିବା ଶିକ୍ଷାନୁଷ୍ଠାନରେ ଯୋଗଦେଇଥିବାରୁ ମୁଁ ନିଜକୁ ଭାଗ୍ୟବାନ ମନେ କରୁଥିଲି ।

ଇନ୍ଦିରାଗାନ୍ଧୀ ନ୍ୟାସନାଲ୍ ଫରେଷ୍ଟ ଏକାଡେମୀ-ଇଣ୍ଡିଆନ୍ ଫରେଷ୍ଟ ସର୍ଭିସ୍ ପ୍ରୋବେସନ୍‌ରମାନଙ୍କର ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍ । ଆମ ସମୟରେ ଏହାର ନାଁ ଥିଲା ଇଣ୍ଡିଆନ୍ ଫରେଷ୍ଟ କଲେଜ ବା ଭାରତୀୟ ବନ ମହାବିଦ୍ୟାଳୟ । ବନ ବିଜ୍ଞାନ ଓ ତତ୍ ସଂବନ୍ଧୀୟ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ସାରା ବିଶ୍ୱରେ ଏହା ଏକ ଅଗ୍ରଣୀ ଅନୁଷ୍ଠାନ ରୂପେ ବିବେଚିତ । ଠିକ୍ ପାଖକୁ ଲାଗି ଗଢ଼ିଉଠିଛି, ଇଣ୍ଡିଆନ୍ ମିଲିଟାରୀ ଏକାଡେମୀ । ଦୁଇଟିଯାକ ଅନୁଷ୍ଠାନର ଶୃଙ୍ଖଳା, ଆଦବକାଇଦା ଏବଂ ଆଭିଜାତ୍ୟ ଅଭୁତପୂର୍ବ । ସପ୍ତାହରେ କେବଳ ରବିବାରକୁ ବାଦଦେଲେ, ଅନ୍ୟସବୁ ଦିନ ସକାଳ ଛଅଟାବେଳେ ଫିଜିକାଲ୍ ଟ୍ରେନିଂରୁ ଆରଂଭ ହୋଇ ରାତି ଆଠଟାରେ ନୈଶ ଭୋଜନ ଶେଷ ହେବା ପର୍ଯ୍ୟନ୍ତ କିଛି ନା କିଛି କାର୍ଯ୍ୟକ୍ରମ ଲାଗି ରହିଥାଏ । ଶନିବାର ଦିନ ଫିଲ୍‌ଡ ଏକ୍‌ସକରସନ । ସେଦିନ ଆଉ ଫିଜିକାଲ୍ ଟ୍ରେନିଂ ବା ପିଟି ନଥାଏ ।

'ମେନ୍‌ସ ସାନା ଇନ୍ କର୍ପୋରେ ସାନୋ' ଅର୍ଥାତ୍ ସୁସ୍ଥ ଶରୀରରେ ସୁସ୍ଥ ମସ୍ତିଷ୍କ । 'ଏ ସାଉଣ୍ଡ ମାଇଣ୍ଡ ଇନ୍ ଏ ସାଉଣ୍ଡ ବଡି' ଏହା ହିଁ ଥିଲା ଭାରତୀୟ ବନ ମହାବିଦ୍ୟାଳୟର ମଟୋ ବା ଆଦର୍ଶ ବାକ୍ୟ । ମୁଁ ଯେତେବେଳେ ୧୦ ମାର୍ଚ୍ଚ ୧୯୭୫ ମସିହାରେ ଭାରତୀୟ ବନ ମହାବିଦ୍ୟାଳୟରେ ପ୍ରଥମଥର ପାଇଁ ପାଦ ରଖିଲି, ସେତେବେଳେ ମୁଁ ନିଶ୍ଚିତ ହୋଇସାରିଥିଲି ଯେ, ମୋର ଗୋଟିଏ ସୁସ୍ଥ ମସ୍ତିଷ୍କ ଅଛି । ନଚେତ୍ ୟୁନିଅନ ପବ୍ଲିକ୍ ସର୍ଭିସ୍ କମିଶନ ପରୀକ୍ଷାରେ କୃତିତ୍ୱ ହାସଲ କରିବା ସଂଭବ ହୋଇନଥାନ୍ତା । କିନ୍ତୁ ସୁସ୍ଥ ଶରୀର ଗଠନପାଇଁ ବନ ବିଦ୍ୟାଳୟ କର୍ତ୍ତୃପକ୍ଷ କିପରି ପଦକ୍ଷେପ ନେଉଛନ୍ତି, ତାହା ଜାଣିବାର ଉତ୍ସୁକତା ଥାଏ । ଏକେତ ମୁଁ ଅପେକ୍ଷାକୃତ ଦୁର୍ବଳ ଥିଲି । ଦ୍ୱିତୀୟଥର ଚେଷ୍ଟାରେ ହିଁ ୱାକିଙ୍ଗ ଟେଷ୍ଟ ଅର୍ଥାତ୍ ଚାରିଘଣ୍ଟାରେ ପଚିଶ କିଲୋମିଟର ଚାଲିବାକୁ ସକ୍ଷମ ହୋଇପାରିଥିଲି । କିନ୍ତୁ ବାଧ୍ୟ ଛାତ୍ର ଭଳି, କଲେଜ କର୍ତ୍ତୃପକ୍ଷଙ୍କ ଠାରୁ ମିଳିଥିବା ତାଲିକା ଅନୁଯାୟୀ ଆସିଲାବେଳେ ସାଙ୍ଗରେ ରୀତିମତ ଚାରିଯୋଡ଼ା ଧଳା ମୋଜା, ଦୁଇ ହଳ ଧଳା ହାଫ୍ ପ୍ୟାଣ୍ଟ ଓ ଚାରୋଟି ଧଳା ଟି ସାର୍ଟ / ହାଫ୍ ସାର୍ଟ ସାଙ୍ଗରେ ଧରି ଆସିଥିଲି ।

ମୋ ପୂର୍ବରୁ ଆମ ବ୍ୟାଚରେ ଓଡ଼ିଶାରୁ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପ୍ରଧାନ ମାର୍ଚ୍ଚ ୧ ତାରିଖରୁ ବନ ମହାବିଦ୍ୟାଳୟରେ ଯୋଗଦାନ କରିସାରିଥିଲେ । ପରେ ଅବଶ୍ୟ

ଶ୍ରୀ ପ୍ରଧାନ ଦୁଇବର୍ଷର ଫରେଷ୍ଟ୍ରି ଟ୍ରେନିଂ ସମାପନପରେ ଭାରତୀୟ ବନସେବା ଛାଡ଼ି ଭାରତୀୟ ପ୍ରଶାସନିକ ସେବାରେ ପଶ୍ଚିମବଂଗ କ୍ୟାଡରରେ ଯୋଗଦାନ କରିଥିଲେ । ନିଜ ରାଜ୍ୟରୁ ଆସିଥିବା ହେତୁ, ମୋତେ ତାଙ୍କ ହଷ୍ଟେଲ୍ ରୁମ୍‌କୁ ଡାକିନେଇ, ନିଜର ଦଶଦିନର ଅଭିଜ୍ଞତା, ଏଠିକାର ଚାଲିଚଳଣ, କଲେଜର ଆଦବ କାଇଦା, ମ୍ୟାନର୍‌ସ, ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଏଠି ଚାଲିଥିବା ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ସମ୍ୟକ୍ ସୂଚନା ଦେଲେ । ସକାଳୁ ଫିଜିକାଲ ଟ୍ରେନିଂରେ ଯିବାପାଇଁ ଡ୍ରେସ୍, କଲେଜ ପାଇଁ ସୁଟ୍ ଓ ଟାଇ, ରାତିରେ ମେସ୍‌କୁ ଗଲାବେଳେ ଡିନର ଜ୍ୟାକେଟ୍ ଇତ୍ୟାଦି ପିନ୍ଧିବା କିପରି ଅନିବାର୍ଯ୍ୟ ତାହା ମଧ୍ୟ ଜଣାଇଦେଲେ । ମୋର ସୁଟ୍ ଓ ଟାଇ ନଥିବାହେତୁ, ସେଦିନ ଅପରାହ୍ଣରେ ନ୍ୟୁଫରେଷ୍ଟ କ୍ୟାମ୍ପସ୍‌ରେ ଥିବା 'କୋହଲୀ ଟେଲରିଙ୍ଗ୍ ସପ୍'କୁ ଯାଇ ସୁଟ୍ ଓ ଡିନର ଜ୍ୟାକେଟ୍ ବରାଦ ଦେଲୁ । ପ୍ରୋବେସନରମାନଙ୍କ ପାଇଁ ଦିନକ ଭିତରେ ସୁଟ୍, ଜ୍ୟାକେଟ୍ ଓ ବ୍ଲେଜର ଇତ୍ୟାଦି ତିଆରି କରିଦେବାରେ କୋହଲି ଏକ ନାମକରା ଦରଜୀ । ସବୁ ପ୍ରୋବେସନର୍ ପ୍ରାୟ ତାରି ଦୋକାନକୁ ଯାନ୍ତି ଓ କନା ମଧ୍ୟ ସେଠାରୁ କିଣିଥାନ୍ତି । ତହିଁ ପରଦିନ ସଂଧ୍ୟା ସୁଦ୍ଧା ସୁଟ୍ ଓ ଡିନର ଜ୍ୟାକେଟ୍ ପାଇବାର ପ୍ରତିଶ୍ରୁତି ପାଇଲାପରେ ଆମେ ହଷ୍ଟେଲକୁ ଫେରିଥିଲୁ ।

ହଷ୍ଟେଲ ଫେରନ୍ତା ରାସ୍ତାରେ ପ୍ରସନ୍ନ ବାବୁ ମୋତେ ଟ୍ରେଭର ରୋଡ୍‌ରେ ଥିବା ୬ ନମ୍ବର ବଙ୍ଗଳାକୁ ନେଇ ଯାଇଥିଲେ ଏବଂ ପରିଚିତ କରେଇ ଦେଇଥିଲେ, ସେଠି ସପରିବାର ରହୁଥିବା, ଆମ ଓଡ଼ିଶା କ୍ୟାଡରର ଜଣେ ବରିଷ୍ଠ ଅଫିସର୍ ମହମ୍ମଦ ଫୈଜୁଦ୍ଦିନ ଅହମ୍ମଦଙ୍କ ସହ । ଭାରତୀୟ ମହାବିଦ୍ୟାଳୟକୁ ସେ ଡେପୁଟେସନ୍‌ରେ ଆସିଥାନ୍ତି । ସେତେବେଳେ ପ୍ରଫେସରମାନଙ୍କୁ 'ଇନ୍‌ଷ୍ଟ୍ରକ୍ଟର' କୁହାଯାଉଥିଲା । ମିସେସ୍ ଅହମ୍ମଦ ଥିଲେ ଅତ୍ୟନ୍ତ ମେଳାପି ଓ ମିଷ୍ଟଭାଷୀ । ଓଡ଼ିଆ ପିଲା ହିସାବରେ ଆମ ପ୍ରତି ତାଙ୍କର ଅହେତୁକ ଆତିଥ୍ୟ ଏବଂ ଆମର ସୁବିଧା, ଅସୁବିଧା ଜାଣିବାକୁ ତାଙ୍କର ଆଗ୍ରହ ମୋତେ ସେଦିନ ମୁଗ୍ଧ କରିଥିଲା । ଆହୁରି ମୁଗ୍ଧ କରିଥିଲା, ଅହମ୍ମଦ ଦମ୍ପତିଙ୍କର ତିନୋଟି ଗୁଲୁଗୁଲିଆ ପୁଅ । ବଡ଼ଟିର ବୟସ ନଅ ବା ଦଶ ବର୍ଷ ହୋଇପାରେ । ପରେ ଅନେକଥର ତାଙ୍କ ଘରକୁ ଯାଇଛୁ ଓ ତାଙ୍କର ଆତିଥ୍ୟ ଗ୍ରହଣ କରିଛୁ ।

ତହିଁ ପରଦିନ ଭୋର ପାଞ୍ଚଟା ବେଳକୁ, ହାଉସ୍ ପିଅନ ଆସି, କବାଟ ଠକ୍ ଠକ୍ କରି ମୋତେ ନିଦରୁ ଉଠେଇ ଦେଲା ଏବଂ ଗରମ ଗରମ ଚା' ପରଶି

ଦେଲା ପରେ ବୁଟ୍ ହଳକ ନେଇ ପଲିସ୍ କରିବା ପାଇଁ ଦରଜା ବାହାରେ ରଖି ଦେଇ ଚାଲିଗଲା । ସକାଳ ଛଅଟା ବେଳକୁ ନିତ୍ୟକର୍ମ ସାରି, ଧଳା ହାଫ୍ ପ୍ୟାଣ୍ଟ, ସ୍ପୋର୍ଟସ ସାର୍ଟ ଏବଂ ପିଟି ସୁ ପିନ୍ଧି ଖେଳ ପଡ଼ିଆରେ ହାଜର ହୋଇଗଲୁ । ବନ ମହାବିଦ୍ୟାଳୟର ଜ୍ଞାପନର (Motto) ଦ୍ୱିତୀୟ ଭାଗ 'କର୍ପୋରେ ସାନୋ' ଅର୍ଥାତ୍ 'ସୁସ୍ଥ ଶରୀର' ସହିତ ସେହି ଦ୍ୱିତୀୟ ଦିନରୁ ହିଁ ପରିଚିତି ଆରଂଭ ହୋଇଗଲା । ଆମ ସମୟକୁ ଶ୍ରୀଯୁକ୍ତ କାଜ୍‌ମି ସ୍ପୋର୍ଟସ ଅଫିସର ଭାବରେ ଜଏନ୍ କରିସାରିଥିଲେ । କିନ୍ତୁ ପୂର୍ବ ବର୍ଷ ପର୍ଯ୍ୟନ୍ତ ଭାରତ-ବ୍ରିଟିଶ ସେନାରୁ ଅବସର ପ୍ରାପ୍ତ ସର୍ଜେଣ୍ଟ ମେଜର ଓ.ଇ.ପିଟର୍ ଫିଜିକାଲ୍ ଟ୍ରେନିଂ ଇନ୍‌ଷ୍ଟ୍ରକ୍ଟର ଥିଲେ । ସେ ଥିଲେ କଡ଼ା ମିଜାଜ୍‌ର ଅଫିସର୍ । କିଛି ମାସ ତଳୁ ସେ ଫରେଷ୍ଟ କଲେଜରୁ ଅବ୍ୟାହତି ନେଇ ସାରିଥିଲେ ମଧ୍ୟ ତାଙ୍କ କଡ଼ା ଅନୁଶାସନ, କଠୋର ଶୃଙ୍ଖଳା, ସେପର୍ଯ୍ୟନ୍ତ ମଧ୍ୟ ସମଗ୍ର ପରିବେଶରେ ଗୁଞ୍ଜରିତ ହୋଇ, ଆମ୍ଭମାନଙ୍କ ମନରେ ଏକ ଅହେତୁକ ଭୟ ସୃଷ୍ଟି କରୁଥିଲା । ଏହାକୁ କୁହାଯାଉଥିଲା 'ପିଟର-ଫୋବିଆ ।'

ପ୍ରଥମଦିନ ହିଁ ଫିଜିକାଲ୍ ଟ୍ରେନିଂ କରାଉଥିବା ହାବିଲ୍‌ଦାର ଜଣକ ସବୁ ପ୍ରୋବେସନରମାନଙ୍କ ଉଚ୍ଚତା, ଓଜନ ଏବଂ ଛାତିର ମାପ (ଉଭୟ ସାଧାରଣ ମାପ ଓ ସଂପ୍ରସାରଣ ପରର ମାପ) ଅତ୍ୟନ୍ତ ଯତ୍ନ ସହକାରେ ରେକର୍ଡ କରିବାକୁ ଲାଗିଲେ । ଭାରତୀୟ ବନ ସେବାରେ ସିଲେକ୍ଟ ହେବା ଆଗରୁ ଦିଲ୍ଲୀରେ ଆମେ ଏହି ସବୁ ଟେଷ୍ଟ ଦେଇ ସାରିଛୁ କହି ଯେତେ ପ୍ରତିବାଦ କଲେ ମଧ୍ୟ ଆମ କଥାକୁ କେହି କର୍ଣ୍ଣପାତ କଲେ ନାହିଁ । ଆମ ସହିତ ଉତ୍ତର ପ୍ରଦେଶର ଜଣେ ପ୍ରୋବେସନର ଥଲେ ରଜନୀଶ ବୈଶ । ତାଙ୍କର ଉଚ୍ଚତା ଆବଶ୍ୟକତା ମୁତାବକ ନିଶ୍ଚିତ ଭାବରେ ଯେ ୧୬୦ ସେଣ୍ଟିମିଟର ହୋଇନଥିବ, ଏକଥା ଯେ କେହି ଦେଖିଦେଲେ ମଧ୍ୟ କହି ଦେଇପାରିବ । ରାଜନୀଶଙ୍କର କମ ଉଚ୍ଚତାକୁ ବନମହାବିଦ୍ୟାଳୟ କର୍ତ୍ତୃପକ୍ଷ ଗମ୍ଭୀରତାର ସହ ନେଲେ । ସେତେବେଳେ ମଧ୍ୟପ୍ରଦେଶ କ୍ୟାଡରର ଜନୈକ ଫରେଷ୍ଟ ଅଫିସର୍ ଶ୍ରୀ ମାଥୁର ଫିଜିକାଲ ଟ୍ରେନିଂ ଦାୟିତ୍ୱରେ ଥିଲେ । ଟ୍ରେନିଂ ଇନ୍‌ଷ୍ଟ୍ରାକ୍‌ଟର ଶ୍ରୀ କାଜ୍‌ମିଙ୍କଠାରୁ ରିପୋର୍ଟ ପାଇବା ସଂଗେ ସଂଗେ, ସେ ଭାରତ ସରକାରଙ୍କର ତତ୍‌କାଳୀନ କୃଷି ଓ ବନମନ୍ତ୍ରଣାଳୟକୁ ପତ୍ର ଲେଖି ଏ ବିଷୟରେ ଅବଗତ କରାଇଲେ ଏବଂ ଏହାର ତୁରନ୍ତ ପ୍ରତିକାର କରିବା ନିମନ୍ତେ ମଧ୍ୟ ଅନୁରୋଧ ଜଣାଇଲେ । ଆମେ ସମସ୍ତେ ଭୟଭୀତ ହୋଇ ଭାରତ ସରକାରଙ୍କର

କୃଷି ଓ ବନମନ୍ତ୍ରଣାଳୟରୁ କ'ଣ ଉତ୍ତର ଆସୁଛି, ଜାଣିବା ପାଇଁ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାଉ । ଦିନେ ଏ ସଂପର୍କରେ ସରକାରଙ୍କଠାରୁ ଚିଠି ଆସିଲା । ଚିଠି ବା ଉତ୍ତରର ସାରମର୍ମ ଏହିପରି ଥିଲା-ଯେତେବେଳେ ଭାରତ ସରକାରଙ୍କର ସର୍ବୋଚ୍ଚ ମେଡିକାଲ ବୋର୍ଡ ଶ୍ରୀ ବୈଶଙ୍କୁ ପରୀକ୍ଷା କରି ସିଲେକ୍ଟ କରିଛନ୍ତି ବନମହାବିଦ୍ୟାଳୟକୁ ଏହାର ପୁନଃ ପରୀକ୍ଷାପାଇଁ କିଏ ଅନୁମତି ଦେଲା ? ସରକାରଙ୍କଠାରୁ ଏପରି ରୋକ୍‌ଠୋକ୍ ଜବାବ ପାଇଲାପରେ, ଆଉକେବେ ପ୍ରୋବେସନର୍ ମାନଙ୍କର ଉଚ୍ଚତା ବା ଛାତିର ଚଉଡା ମାପିବାର ଅବକାଶ ଉପୁଜିନାହିଁ ।

କଠୋର ଶୃଙ୍ଖଳା ଓ ଅନୁଶାସନ ଭିତରେ ବନମହାବିଦ୍ୟାଳୟର ଦୈନନ୍ଦିନ ରୁଟିନ୍ ବନ୍ଧା ଜୀବନ । ସକାଳ ଛଅଟାରୁ ଶାରୀରିକ ପ୍ରଶିକ୍ଷଣ, ସେଠୁ ଫେରିଲା ପରେ ପ୍ରାତଃକର୍ମ ସମାପନାନ୍ତେ ବ୍ରେକ୍‌ଫାଷ୍ଟ । ସକାଳ ଆଠଟାରୁ କଲେଜରେ ରୀତିମତ ପ୍ରଶିକ୍ଷଣ । ଶିକ୍ଷାନବୀଶ ହିସାବରେ ୪୫ଟି ବିଷୟରେ ଆମକୁ ଟ୍ରେନିଂ ନେବାକୁ ପଡୁଥିଲା । ମଝିରେ ଦେଢ଼ଘଣ୍ଟା ଲଞ୍ଚ ବ୍ରେକ୍ । ପୁନର୍ବାର ଅପରାହ୍ଣରେ ଶ୍ରେଣୀଗୃହରେ ଥିଓରୀ କ୍ଲାସ କ୍ରିକେଟ୍,ଫୁଟବଲ୍,ହକି, ଭଲିବଲ, ଲନ୍‌ଟେନିସ୍, ବେସବଲ୍, ବ୍ୟାଡମିଣ୍ଟନ ଇତ୍ୟାଦି, ଯିଏ ଯେଉଁଥିରେ ଭାଗନେଇ ପାରିଲା । କିନ୍ତୁ ଯେ କୌଣସି ଗୋଟିଏ ଖେଳରେ ଭାଗନେଇ ପାରଦର୍ଶିତା ହାସଲ କରିବାକୁ ହେବ । ସପ୍ତାହରେ କେବଳ ଶନିବାର ଦିନ ଥିଓରୀ ବା ପ୍ରାକ୍‌ଟିକାଲ କ୍ଲାସ୍ ନଥାଏ । ସେଦିନ ପୂର୍ବାହ୍ନରେ ଅଥବା କେବେ କେବେ ଦୁଇ ଓଳିଯାକ ଥାଏ ଫିଲଡ୍ ଟୁର୍ । ବ୍ୟବହାରିକ ଓ ପ୍ରାୟୋଗିକ ଶିକ୍ଷା । ଏଫ୍.ଆର୍.ଆଇ. କ୍ୟାମ୍ପସ୍‌ରେ ନର୍ସରୀ ଓ ଚାରାରୋପଣ କାମଠୁଁ ଆରମ୍ଭ କରି, ଫିଲଡ୍ ସର୍ଭେ, କ୍ୟାମ୍ପସ୍ ଭିତରେ ଥିବା ବଟାନିକାଲ୍ ଗାର୍ଡନରେ ଉଦ୍ଭିଦ ଚିହ୍ନଟ, ମସୌରୀ ପାହାଡ଼ର ଭୂତାତ୍ତ୍ୱିକ ସର୍ବେକ୍ଷଣ ବା ଲଛିବାଲା ରିଜର୍ଭ ଫରେଷ୍ଟ ଭିତରେ ବୋହିଯାଇଥିବା ପାହାଡ଼ି ନଈର ଦୁଇପଟେ ଉଦ୍ଭିଦ ସଂପଦ ଅଭ୍ୟୁଦୟ ବା ସକ୍‌ସେସନ୍ ଷ୍ଟଡି ପର୍ଯ୍ୟନ୍ତ ଫିଲଡ୍ ଟୁର୍‌ରେ ମଧ୍ୟ ରୀତିମତ ପରିଶ୍ରମ କରିବାକୁ ପଡେ । ଠକିବାର ଚାରା ନଥାଏ । ଏହି ଟୁର୍ ପାଇଁ ଡ୍ରେସ୍ ହେଉଛି, ଖାକି ଫୁଲ୍ ପ୍ୟାଣ୍ଟ ଓ ଖାକି ଫୁଲ୍ ସାର୍ଟ । ମୁଣ୍ଡରେ ଖାକି ସୋଲ ଟୋପି । ଏସବୁ ଟୁର୍ ପାଇଁ ଆମକୁ ସାଇକେଲ୍‌ରେ ଯିବାକୁ ପଡେ । ବେଳେବେଳେ କୋଡ଼ିଏରୁ ପଚିଶ କିଲୋମିଟର ରାସ୍ତା ଆମେ ସାଇକେଲ୍‌ରେ ଅତିକ୍ରମ କରି ଗନ୍ତବ୍ୟସ୍ଥଳରେ ପହଞ୍ଚୁ । ଡେରାଡୁନ୍‌ର ଟ୍ରେନିଂ ସମୟରେ ସାଇକେଲ୍ ପାଲଟିଯାଏ ପ୍ରୋବେସନରମାନଙ୍କର ଅନ୍ତରଂଗ ସାଥୀ ଓ ସହଚର ।

୧୯୭୫ ମସିହା ମାର୍ଚ୍ଚମାସରେ ଆମ ବ୍ୟାଚର ଅଫିସରମାନେ ଟ୍ରେନିଂରେ ଜଏନ୍ କରିବାର ଅଳ୍ପଦିନ ଅନ୍ତରରେ ଭାରତରେ ଆନ୍ତଃ ଜରୁରୀ ପରିସ୍ଥିତି ଜାରି ହୋଇଥିଲା ଏବଂ ଆମର ଟ୍ରେନିଂ ସରିବା ପର୍ଯ୍ୟନ୍ତ ଦୁଇ ବର୍ଷ ଅବଧି ଏହି ଜରୁରୀ କାଳୀନ ପରିସ୍ଥିତି ଲାଗି ରହିଥିଲା । ତେଣୁ ଆମ ବ୍ୟାଚ୍‌କୁ ଅନେକ ସମୟରେ 'ଇମରଜେନ୍‌ସି' ବ୍ୟାଚ୍ ବୋଲି ମଧ୍ୟ କୁହାଯାଏ । ଏହି ବ୍ୟାଚ୍‌ରେ ୫୭ଜଣ ଅଫିସର୍ ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ ଦ୍ୱାରା ସିଲେକ୍ଟ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ କେବଳ ମାତ୍ର ୪୫ ଜଣ ଭାରତୀୟ ବନସେବାର ଦୁଇବର୍ଷିଆ ଟ୍ରେନିଂ କାର୍ଯ୍ୟକ୍ରମରେ ଯୋଗଦେଇଥିଲେ । ସେଥିଭିତରୁ ପାଞ୍ଚଜଣ ଅଫିସର୍ ଟ୍ରେନିଂ ସମୟରେ ହିଁ ଭାରତୀୟ ପ୍ରଶାସନିକ ସେବା ଓ ଅନ୍ୟାନ୍ୟ ଆଲାଏଡ ସର୍ଭିସ୍ ପାଇ ଚାଲି ଯାଇଥିଲେ । ଟ୍ରେନିଂ ସମାପ୍ତି ପରେ ଅନ୍ୟ ଛଅଜଣ ଅଫିସର୍ ଫରେଷ୍ଟ ସର୍ଭିସ୍ ଛାଡ଼ି ଦେଇଥିଲେ । ପରିଶେଷରେ ମାତ୍ର ୩୪ ଜଣ ଅଫିସର୍ ଭାରତୀୟ ବନସେବାରେ ବିଭିନ୍ନ ପ୍ରାଦେଶିକ କ୍ୟାଡରରେ ଯୋଗଦାନ କଲେ । ଆମ ସହିତ ୨୨ଜଣ ଫରେନ୍ ଟ୍ରେନିଂ ମଧ୍ୟ ଥିଲେ । ସେଥିରେ ନେପାଳରୁ ୧୫ଜଣ, ଆଫଗାନିସ୍ଥାନରୁ ଜଣେ, ମରିସସ୍‌ରୁ ଜଣେ ଏବଂ ଭୁଟାନ୍‌ରୁ ଦୁଇଜଣ ପ୍ରଶିକ୍ଷାର୍ଥୀ ଅନ୍ୟତମ । ସିକିମ୍‌ର ତିନିଜଣ ଅଫିସର, ଆମ ସହିତ ୧୯୭୫ ମସିହାରେ ବହିରାଗତ ଶିକ୍ଷାର୍ଥୀ ଭାବରେ ଯୋଗଦାନ କରିଥିଲେ ମଧ୍ୟ ୧୯୭୭ ମସିହାରେ ଟ୍ରେନିଂ ସମାପନ ବେଳକୁ ସିକିମ୍ ଭାରତରେ ମିଶି ସାରିଥିଲା । ସେମାନେ ସିକ୍କିମ୍ କ୍ୟାଡରର ଭାରତୀୟ ଅଫିସର୍ ଭାବେ ଏ.ଆଇ.ଏଫ୍. ସି. ଡିପ୍ଲୋମା ହାସଲ କଲେ । ୧୯୭୫-୭୭ ବ୍ୟାଚ୍‌ର ଅନ୍ୟ ଏକ ବିଶେଷତ୍ୱ ହେଉଛି, ଆମ ଭିତରେ ଦୁଇ ଯୋଡ଼ା ଯାଆଁଳା ଭାଇମଧ୍ୟ ଥିଲେ । ନେପାଳର 'ପୋଡେଲ୍' ଏବଂ ଉତ୍ତର ପ୍ରଦେଶର 'ଯୋଶି' ବ୍ରଦର୍‌ସ ।

ବନ ମହାବିଦ୍ୟାଳୟର ଶୃଙ୍ଖଳିତ କାର୍ଯ୍ୟ ନିର୍ଘଣ୍ଟ ମଧ୍ୟରେ ଆମକୁ ସପ୍ତାହରେ କେବଳ ଦୁଇଦିନ ଅର୍ଥାତ୍ ଶନିବାର ଓ ରବିବାର ଦିନ ସଂଧ୍ୟାରେ ଛୁଟି ମିଳିଥାଏ । ସେଥିରେ ପୁଣି କଡ଼ା ତାଗିଦାଥାଏ, ରାତି ନଅଟା ସୁଦ୍ଧା ଡିନର ପାଇଁ ହଷ୍ଟେଲ୍ ଫେରିବାକୁ ପଡ଼ିବ । ଏହି ଦିନମାନଙ୍କରେ ସଂଧ୍ୟାବେଳେ ପ୍ରାୟତଃ ସମସ୍ତେ ଛୁଟି ଚାଲନ୍ତି, ଡେରାଡୁନ୍ ସହରର ଅନ୍ୟତମ ଆକର୍ଷଣୀୟ ମାର୍କେଟ 'ପଲଟନ୍ ବଜାର' । ସହରର ମଧ୍ୟ ସ୍ଥଳୀରେ ଥିବା ବିଶାଳକାୟ ଘଣ୍ଟାଘର ହିଁ ପଲଟନ୍ ବଜାରର ମୁଖ୍ୟ

ପ୍ରବେଶ ରାସ୍ତାରେ ରହିଛି । ପ୍ରାୟ ଏକ କିଲୋମିଟର ବ୍ୟାପ୍ତ ରାସ୍ତାର ଦୁଇକଡ଼ରେ ସୁନ୍ଦର ସୁନ୍ଦର ବିପ୍ପଣୀ । କପଡ଼ା, ଶାଢ଼ୀ ଓ ଉଲେନ୍ ଗାରମେଣ୍ଟଠୁଁ ଆରମ୍ଭ କରି ସୁନା ଗହଣା ପର୍ଯ୍ୟନ୍ତ, ରେସନ ଦୋକନଠୁ ଷ୍ଟେସନାରୀ ପର୍ଯ୍ୟନ୍ତ ଫଳ ଓ ପନିପରିବା ଠୁ ନେଇ ମିଠା, ବିସ୍କୁଟ ପର୍ଯ୍ୟନ୍ତ ସବୁ ରକମର, ସବୁ ପ୍ରକାରର ଦୋକାନ ଏଠି ମହଜୁଦ । ସପ୍ତାହର ଦୁଇଦିନ ସଂଧ୍ୟାବେଳଟା ଫ୍ରି ମିଳୁଥିବାରୁ ଉଭୟ ବନ ମହାବିଦ୍ୟାଳୟ ଓ ମିଲିଟାରୀ ଏକାଡେମୀର ପ୍ରଶିକ୍ଷାର୍ଥୀ ଅଫିସରମାନଙ୍କର ଭିଡ଼ ଏଠି ଜମିଯାଏ । ଗହଳି ଭିତରେ ଆନନ୍ଦ ଲୁଟିବାର ମଜ୍ଜା ନିଆରା । ଡେରାଡୁନ୍‌ରେ କିଛିଦିନ ରହିବା ଭିତରେ ସମଭାବାପନ୍ନ ଆମେ କେଜେଣ ବଂଧୁଙ୍କର ଏକ ଅଲିଖିତ ଗୋଷ୍ଠୀ ବନିଯାଇଥାଏ । ସେ ଗୋଷ୍ଠୀରେ ଥିଲେ .ମୋ ବ୍ୟତୀତ ଆମ ଓଡ଼ିଶାର ପ୍ରସନ୍ନ ପ୍ରଧାନ, ବେଙ୍ଗଲର ଗଙ୍ଗୋପାଧ୍ୟାୟ ଏବଂ କାର୍ତ୍ତିକା ଗାଏନ, କର୍ଣ୍ଣାଟକର ଜକାତି ଏବଂ ତାମିଲନାଡୁର ଶ୍ରୀଧରନ୍ । ଅଧିକାଂଶ ଦିନ ଉତ୍ତୀର୍ଣ୍ଣ ଅପରାହ୍ଣରେ ଖେଳ ପଡ଼ିଆରୁ ଫେରିଲା ପରେ, ଆମେ କେତେଜଣ ଡ୍ରେସ ବଦଳାଇ, ଓଲଡ୍ ହଷ୍ଟେଲ ପଛପଟ ଗେଟ୍ ଦେଇ 'ପଣ୍ଡିତ ବାଡ଼ି' ଚାଲିଯାଉ । ଅଳ୍ପ କେତୋଟି ଷ୍ଟେସନାରୀ ପରିବା ଏବଂ ଜଳଖିଆ ଦୋକାନକୁ ନେଇ ପଣ୍ଡିତବାଡ଼ିର କ୍ଷୁଦ୍ର ବଜାର । ସେଠି ଗୋଟିଏ ଦୋକାନରେ ସବୁଦିନ ସଂଧ୍ୟାବେଳେ ଗରମାଗରମ ଲୋଭନୀୟ 'ଜଲେବି' ଛଣାଯାଏ ଏବଂ ପ୍ରତିଦିନ ନିଶ୍ଚିତ ଭାବେ ଜଲେବି ଖାଇବା ପାଇଁ ଆମ ଦଳ ସେଠି ହାଜର ହୋଇଯାଏ ।

ଏମିତିରେ ଦୁଇମାସ ବିତିଯାଏ । ମେ' ମାସ ଆରଂଭ ବେଳକୁ ଡେରାଡୁନ୍‌ରେ ଗରମ ପଡ଼ି ଆସୁଥାଏ । ଉତ୍ତର ପ୍ରଦେଶର ସମତଳ ଅଞ୍ଚଳରୁ 'ସିବାଲିକ୍' ହିଲ ରେଂଜ ପାର ହୋଇ ଗଲେ ପଡିବ ଡୁନ୍ ଉପତ୍ୟକା । ଉପର ପଟେ ସୁଉଚ୍ଚ ହିମାଳୟ ପର୍ବତମାଳା । ଉପତ୍ୟକାରେ ଗ୍ରୀଷ୍ମର ଉଷ୍ମତା ସାମାନ୍ୟ ଅନୁଭୂତ ହେବା ବେଳକୁ, ମେ' ମାସ ପ୍ରଥମ ସପ୍ତାହରୁ ଆରମ୍ଭ ହୋଇଯାଏ 'ଚକର୍ତ୍ତାଟୁର୍' । ହିମାଳୟାନ ରେଂଜର ଗଡ଼ୱାଲ ପାର୍ବତ୍ୟାଞ୍ଚଳରେ, ସମୁଦ୍ରପତ୍ତନଠାରୁ ୭୦୦୦ ଫୁଟରୁ ଅଧିକ ଉଚ୍ଚତାରେ, ସୁଶୋଭିତ ପାଇନ୍ ଜାତୀୟ ଜଙ୍ଗଲରେ ଆୟୋଜିତ ଏହି ଟୁର୍, ଭୁଲାଇ ଦେଇଥିଲା ପଛରେ ଛାଡ଼ି ଆସିଥିବା ଡୁନ୍ ଉପତ୍ୟକାର ସଦ୍ୟ ଅନୁଭୂତ ହେଉଥିବା ଗ୍ରୀଷ୍ମର ଉଷ୍ମତା । ଜୀବନରେ ପ୍ରଥମଥର ପାଇଁ ମୁଁ ଉପଭୋଗ କରିଥିଲି, ଗ୍ରୀଷ୍ମଋତୁରେ କୌଣସି ହିଲ୍ ଷ୍ଟେସନରେ ମିଳୁଥିବା ଶୀତଳ ତଥା ଆରାମଦାୟକ ପରିବେଶର ପ୍ରତ୍ୟକ୍ଷ ଅନୁଭୂତି ।

ପ୍ରୋଫେସନରମାନଙ୍କ ସହିତ ଦୁଇଜଣ 'ଇନ୍‌ଷ୍ଟ୍ରକ୍‌ଟର' ଏହି ଟୁର୍‌କୁ ସଂଚାଳନ କରୁଥିଲେ। ତନ୍ମଧ୍ୟରୁ ଜଣେ ଆମ ଓଡ଼ିଶା କ୍ୟାଡରର ଅଫିସର୍ ଶ୍ରୀଯୁକ୍ତ ଅହମ୍ମଦ୍ ଓ ଅନ୍ୟଜଣକ ଶ୍ରୀଯୁକ୍ତ ଖର୍ବନ୍ଦ୍ରା । ମିଃ ଅହମ୍ମଦ ସପରିବାର ଆମ ସହିତ ଟୁର୍‌ରେ ଯୋଗଦେଇଥିଲେ । ଡେରାଡୁନ୍‌ଠାରୁ ବାହାରି ଡିଆସିଲି ଡବା ଭଳି ଛୋଟ ଛୋଟ ବସ୍‌ରେ ବସି ଆମେ ଚକର୍ତ୍ତାଠାରେ ପହଞ୍ଚିଲୁ । ସମୁଦ୍ର ପତ୍ତନଠାରୁ ସାଢ଼େ ଛଅ ହଜାର ଫୁଟରୁ ଉଚ୍ଚରେ ଅବସ୍ଥିତ ଚକର୍ତ୍ତା ଏକ ଛୋଟ ସହର ଏବଂ ସବଡିଭିଜନାଲ ହେଡକ୍ୱାର୍ଟର୍ସ । ଗୋଟିଏ ସିନେମାହଲ୍, ହାତ ଗଣତି କେତୋଟି ଦୋକାନ ଏବଂ ଅଫିସ୍ ଗୃହକୁ ନେଇ ଏ ସହରର ଅବସ୍ଥିତି । ସେଠି ରାତ୍ରି ଯାପନପରେ ଟୁର୍‌ର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହୁଏ-ଚକର୍ତ୍ତାରୁ ମୁଣ୍ଡାଳି । ୬୫୦୦ ଫୁଟରୁ ୮୪୦୦ଫୁଟ ଉଚ୍ଚତାକୁ ଯାତ୍ରା । ପ୍ରାୟ ୧୦ରୁ ୧୨ କିଲୋମିଟର ଦୁର୍ଗମ ପାହାଡ଼ିଆ ରାସ୍ତା ଯାତ୍ରା କରିବାକୁ ପଡେ । ବସ୍‌କୁ ଚକର୍ତ୍ତାଠାରେ ଛାଡ଼ିଦିଆଯାଏ । ତେଣିକି କେବଳ ପାଦରେ ଚାଲିବାର କଥା ଚରୈବତି, ଚରୈବତି । ସକାଳ ସାଢ଼େ ପାଞ୍ଚଟାରୁ ଯାତ୍ରା ଆରମ୍ଭ ହୁଏ । କାନ୍ଧରେ ହୋଭର ସ୍ୟାକ୍, ଫ୍ଲୋରା, ଖୁକରି, ମପାମପି କରିବା ପାଇଁ ଟେପ୍, ମଧ୍ୟାହ୍ନ ଭୋଜନ ପାଇଁ ପ୍ୟାକଡ୍ ଲଞ୍ଚ ଡବା, ୱାଟର ବ୍ୟାଗ୍, ମୁଣ୍ଡରେ ସୋଲ ଟୋପି ଏବଂ ବେକରେ ଝୁଲୁଥାଏ ମାଗ୍ନିଫାଇଙ୍ଗ ଗ୍ଲାସ । ପାହାଡ଼ିଆ କାନ୍ଥରେ ଅଣ ଓସାରିଆ ପାଦଚଲା ରାସ୍ତା । ରାସ୍ତା ଦୁଇପଟେ ଘଞ୍ଚ 'କୋନିଫର' ଜଙ୍ଗଲ । 'ଦେଓଦାର୍' 'ଫର୍' 'ସ୍ପ୍ରୁଶ୍', 'ବ୍ଲୁପାଇନ୍' 'କେଲ୍' ଏବଂ 'ଓକ୍' ଗଛର ଅରଣ୍ୟ । ରାସ୍ତାର ଗୋଟିଏ ପଟେ ତୀକ୍ଷଣ ଭାବେ ପାହାଡ ଢାଲୁ ଗଡ଼ିଯାଇଛି ଉପତ୍ୟକାର ଗଭୀରତାକୁ । ଅପର ପାର୍ଶ୍ୱରେ ସୁବିଶାଳ ପର୍ବତର ଚଉଡା କାନ୍ଥ । ପାଇନ୍ ଜଙ୍ଗଲର ସାନ୍ଦ୍ରତା ଭେଦି ସୂର୍ଯ୍ୟ ବି ଅନେକ ସମୟରେ ଦେଖାଯାନ୍ତି ନାହିଁ । ପାହାଡ଼ି ରାସ୍ତାରେ ହଜାରେରୁ ଦୁଇ ହଜାର ଫୁଟ ଉଠାଣି ଗଡାଣି ରାସ୍ତାରେ ଚାଲିବା ସହଜ ହୋଇ ନଥିଲେ ମଧ୍ୟ ଥଣ୍ଡା ଜଳବାୟୁ ହେତୁ କ୍ଳାନ୍ତି ଜଣା ପଡୁନଥାଏ ।

ଚକର୍ତ୍ତାଠାରୁ ମୁଣ୍ଡାଳି ପର୍ଯ୍ୟନ୍ତ ଅଣ ଓସାରିଆ ତଥା ବିପଦ୍‌ଜନକ ପାହାଡ଼ି ରାସ୍ତାରେ ମାଲପରିବହନ ଛୋଟ ଛୋଟ ଟ୍ରକ୍‌ରେ ହୋଇଥାଏ । ଯାହାକୁ 'ଗଟୁ' କୁହାଯାଏ । ଆମେ ଚାଲି ଚାଲି ରାସ୍ତା ଅତିକ୍ରମ କରୁଥିବା ବେଳେ ଆମର ସାମାନ, ଟେଣ୍ଟ ରୋଷେଇ ବାସ ସରଂଜାମ ନେଇ ହାଉସ୍ ଅର୍ଡରଲିମାନେ ଆଗ ମୁଣ୍ଡାଳି କ୍ୟାମ୍ପକୁ ଚାଲିଯାଇଥିଲେ । ଅହମ୍ମଦ ସାହେବଙ୍କ ପରିବାର ଏହି 'ଗଟୁ'ରେ ଯାତ୍ରା

କରୁଥିଲେ । ବାଟରେ 'ଗଟୁ' ଖରାପ ହୋଇଯିବାରୁ ମିସେସ୍ ଅହମ୍ମଦ ଆମ ସହିତ ଚାଲିଲେ । ଆମ ଭିତରୁ କେତେଜଣ ଆଥଲେଟ୍ ପ୍ରୋବେସନର୍ ସେମାନଙ୍କର ପୁଅମାନଙ୍କୁ କାନ୍ଧରେ ବସାଇ ସାରା ରାସ୍ତା ଅତିକ୍ରମ କରିଥିଲେ ।

ଦିନଯାକର କ୍ଳେଶ ଦାୟକ ଯାତ୍ରାପରେ, ଉତ୍ତୀର୍ଣ୍ଣ ସଂଧ୍ୟାରେ ଅର୍ଥାତ୍ ସାଢ଼େ ଚାରିଟା, ପାଞ୍ଚଟା ବେଳକୁ ଆମେ 'ମୁଣ୍ଡାଳି' କ୍ୟାମ୍ପରେ ପହଞ୍ଚିଲୁ । ପାହାଡ଼ି ଜାଗାହେତୁ ସ୍ଥାନଟି ଛାଇ ଅଂଧାରରେ ଭରି ଯାଇଥାଏ । କାରଣ ଏସବୁ ଜାଗାରେ ସମୟ ପ୍ରାୟ ଘଣ୍ଟାଏ ଅଧିକ ହୋଇଗଲା ଭଳି ଲାଗେ । ଅକ୍ଳାନ୍ତ କାୟିକ ପରିଶ୍ରମ । ଗୋଡ଼ ଆଉ ଉଠୁନଥାଏ । ଯାହାହେଉ, ଆମ ଆଗରୁ ଅର୍ଡରଲିମାନେ ପହଞ୍ଚି ରାତ୍ରୀଯାପନ ପାଇଁ ତମ୍ବୁ ଗୁଡିକ ଟାଣି ଦେଇଥିଲେ ଏବଂ ଗରମ ଚା' ପକୋଡି କରି ଆମକୁ ସ୍ୱାଗତ କରିବା ପାଇଁ ଅପେକ୍ଷା କରି ରହିଥିଲେ । ଆଠ ହଜାର ଚାରିଶହ ଫୁଟ ଉଚ୍ଚତାରେ ଅସହ୍ୟ ଶୀତରେ ଚାଦର ଘୋଡେଇହୋଇ ମାଡ଼ି ଆସୁଥିବା ସଂଧ୍ୟାର ପ୍ରଥମ ପ୍ରହରରେ ଗରମା ଗରମ ଚା' ଓ ତା' ସାଙ୍ଗକୁ ତାଜା ପକୋଡାର ସ୍ୱାଦ ଅବର୍ଣ୍ଣନୀୟ । ଏତକ ଆରାମରେ ଉଦରସ୍ଥ କଲାପରେ, ପ୍ରକ୍ଷାଳନ ପାଇଁ ଗରମ ପାଣି ଯୋଗାଇ ଦିଆଗଲା । ପେଟ୍ରୋମାକ୍ସ ଓ ଲଣ୍ଠନ ଆଲୁଅରେ କ୍ୟାମ୍ପ-ସ୍ଥଳୀ ଏବଂ ତମ୍ବୁ ଗୃହ ଗୁଡିକ ଆଲୋକିତ କରାଯାଇଥାଏ । ଆମେ ଉଷୁମ ପାଣିରେ ଗୋଡ଼ହାତ ଧୋଇ ଗାଧୋଇଲା ପରେ ନିଜ ନିଜର ତମ୍ବୁ ଭିତରେ ବିଶ୍ରାମ ନେଲୁ । ରାତି ଆଠଟା ବେଳକୁ ରାତ୍ରୀ ଭୋଜନର ବ୍ୟବସ୍ଥା । ଭୋକ ହେତୁ ଖାଦ୍ୟ ଅତ୍ୟନ୍ତ ସୁସ୍ୱାଦୁ ଲାଗୁଥାଏ । ସାରା ଦିନର କ୍ଳାନ୍ତି ନିମିଷକରେ ଅପନୋଦନ ହୋଇଗଲା । ଏକ ଆରାମଦାୟକ ତୃପ୍ତି । କମ୍ବଳ ଘୋଡ଼ିହୋଇ ବିଛଣାରେ ପଡ଼ିବା ସଂଗେ ସଂଗେ ନିଦ ଆସିଗଲା ।

ପରଦିନ ସକାଳ ପାଞ୍ଚଟା ବେଳକୁ ହାଉସ ଅର୍ଡରଲିର ଡାକରେ ନିଦ୍ରାଭଙ୍ଗ ହେଲା । ହାତରେ ତାର ବାମ୍ପଉଠା ଚା' କେଟଲୀ, ଟେଣ୍ଟରୁ ବାହାରକୁ ବାହାରି ଆସି ଚା' ପିଇଲି । ସମୟ ପାଞ୍ଚଟା ହୋଇଥିଲେ ବି ବାହାରଟା ବେଶ୍ ଫରଚା ଦିଶୁଥାଏ । କିଛି ସମୟପରେ କାକରଭିଜା ପାଇନ୍ ଗଛର ଉପରି ଭାଗରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ଚକ୍‌ଚକ୍ କରିବାକୁ ଲାଗିଲା । ଆକାଶରୁ ପ୍ରଭାତର ନିର୍ଯ୍ୟାସ ଯେମିତି ହଠାତ୍ ମାଟି ମା' କୋଳକୁ ଡେଇଁ ପଡ଼ିଲା, 'କୋନିଫର୍' ଗଛର ଫାଙ୍କ ମାନ୍‌ଙ୍କରେ । କ୍ୟାମ୍ପସ୍ଥଳୀ ଅବିଳମ୍ବେ ଆଲୋକିତ ହୋଇଗଲା । ଅବର୍ଣ୍ଣନୀୟ ସେ ଦୃଶ୍ୟ ।

ସେ ସମୟରେ ଚକର୍ତ୍ତାଟୁର୍‌ର ସମୟ ଅବଧି ପ୍ରାୟ ତିନି ସପ୍ତାହ ଥିଲା । ଆମେ ଯଥାକ୍ରମେ ଚକର୍ତ୍ତା, ମୁଣ୍ଡାଳି, ଦେଓବନ ଓ କଣାସରଠାରେ କ୍ୟାମ୍ପ କରିଥିଲୁ । ଗୋଟିଏ କ୍ୟାମ୍ପରୁ ଅନ୍ୟ କ୍ୟାମ୍ପକୁ ଚାଲି ଚାଲି ଯିବାକୁ ପୂରା ଦିନଟିଏ ସମୟ ଲାଗିଯାଏ । ପ୍ରତି କ୍ୟାମ୍ପରେ ରହଣି ତିନି, ଚାରିଦିନ । ଏହି ସମୟରେ ସକାଳୁ ଫିଲଡ୍ ଏକ୍‌ସକରସନ୍ ଆରଂଭ ହୋଇ, ଜଙ୍ଗଲର କେଉଁଠି ଏକ ପୂର୍ବନିର୍ଦ୍ଧାରିତ ସ୍ଥାନରେ ମଧ୍ୟାହ୍ନ ଭୋଜନ ଏବଂ ସଂଧ୍ୟା ପୂର୍ବରୁ କ୍ୟାମ୍ପକୁ ପ୍ରତ୍ୟାବର୍ତ୍ତନ କରାଯାଇଥାଏ । ପ୍ରତ୍ୟେକ ଦିନ ବ୍ୟବହାରିକ ଜ୍ଞାନ ଆହରଣ ପାଇଁ ବୁଲାବୁଲି, ପାହାଡ ଚଢ଼ିବା ଓହ୍ଲେଇବାରେ ଆଠ ଦଶ କିଲୋମିଟର ଅତିକ୍ରମ କରିବାକୁ ପଡିଥାଏ ।

ହିମାଳୟ ପର୍ବତ ରେଂଜର ଆର୍ଦ୍ର ନାତିଶୀତୋଷ୍ଣ ତଥା ଶୀତୋଷ୍ଣ ଅଂଚଳରେ ଦେଖାଯାଉଥିବା 'କୋନିଫର' ଜାତୀୟ ଉଦ୍ଭିଦ ଓ ସେମାନଙ୍କର ସହ ସହାବସ୍ଥାନ ନୀତିରେ ବଢୁଥିବା ଓସାରିଆ ପତ୍ର ଜାତୀୟ ଉଦ୍ଭିଦ ଯଥା ଓକ୍, ଭୂଜପତ୍ର ଓ ରୋଡୋଡେଣ୍ଡ୍ରନ ଆଦି ରମଣୀୟ ବୃକ୍ଷରାଜି ସଂବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିବା ଥିଲା ଟୁରର୍ ବିଶେଷତ୍ୱ । ରୋଡୋଡେଣ୍ଡ୍ରନ ଏକ ମଧ୍ୟମ ଧରଣର ପାହାଡ଼ି ଗଛ, ଯେଉଁଥିରେ ସ୍ଥଳପଦ୍ମ ଆକାରର ନାଲି ନାଲି ପେନ୍ଥା ପେନ୍ଥା ଫୁଲ ଭରି ହୋଇଥାଏ । ଆମ ସହିତ ଯାଇଥିବା ଅନ୍ୟତମ ଅଫିସର ମିଃ ଖର୍ବନ୍ଦ୍ରା, କେରଳ କ୍ୟାଡରର ଅଫିସର୍ । କିନ୍ତୁ ଆଇ.ଏଫ୍.ଏସ୍ ପାଇବା ପୂର୍ବରୁ ସେ ଡେରାଡୁନ୍‌ରେ ରେଂଜର ଟ୍ରେନିଂ ନେଇ ପ୍ରଥମ ହୋଇଥିଲେ ।  ତାପରେ ଏ.ସି.ଏଫ୍. ହିସାବରେ ଟ୍ରେନିଂ ନେଇ ମଧ୍ୟ ପ୍ରଥମ ହୋଇଥିଲେ । ଫିଲଡ୍ ବଟାନିରେ ତାଙ୍କର ଅଭୁତପୂର୍ବ ଦଖଲ ଥାଏ । ପ୍ରଥମ ଦିନ ଜଙ୍ଗଲରେ ଗଛ ଚିହ୍ନାଇଲା ବେଳେ ସେ କହିଥିଲେ 'ଆଇ ଉଇଲ୍ ଟିଚ୍‌ୟୁ  ହଣ୍ଡ୍ରେଡ ପ୍ଲାଣ୍ଟସ୍ ଏଭ୍ରିଡେ । ଅର୍ଥାତ୍ ପ୍ରତିଦିନ ମୁଁ ତୁମ୍ଭମାନଙ୍କୁ ଶହେଟା ଉଦ୍ଭିଦ ଚିହ୍ନେଇବି । ଯେହେତୁ କଲେଜ ଜୀବନରେ ମୁଁ ପ୍ରିୟୁନିଭରସିଟି ପରଠାରୁ ବଟାନି ବା ଉଦ୍ଭିଦ ବିଜ୍ଞାନ ଛାଡ଼ି ଦେଇଥିଲି, ମିଃ ଖର୍ବନ୍ଦ୍ରାଙ୍କର ଏ ଘୋଷଣା ମୋ ମନରେ ରୀତିମତ ଭୟ ସଂଚାର କରିଦେଲା । ହିମାଳୟାନ ପର୍ବତମାଳାର କେବଳ ବଡ ବଡ଼ ଗଛ ଯଥା, ପାଇନ୍, ଫର୍, ଦେଓଦାର, ସ୍ପୃଶ୍ ମାପଲ୍, ଓକ୍ ଆଦି ଗଛ ମୁଁ ଚିହ୍ନିବାକୁ ଚେଷ୍ଟା କରୁଥିଲି । ତା' ଛଡା ଏଠିକାର ଘାସ, ଗୁଳ୍ମ ଲତା ଆଦି ଟିକିନିଖି ଗଛ ଚିହ୍ନିବା କଷ୍ଟକର ଏବଂ ଚିହ୍ନିଲେ ମଧ୍ୟ ତାହା ଓଡ଼ିଶାରେ ମୋର କି ଉପକାରରେ ଆସିବ ? ଏହା ଭାବି ସବୁବେଳେ ମୁଁ ଲାଇନ୍‌ର ଶେଷ ଆଡକୁ ଆମ

ଓଡ଼ିଶାର ଅନ୍ୟତମ ଇନ୍‌ଷ୍ଟ୍ରକ୍‌ଟର ଶ୍ରୀଯୁକ୍ତ ଅହମ୍ମଦଙ୍କ ପାଖାପାଖି ରହୁଥିଲି । ତେଣୁ ଅନାୟାସରେ ମିଃ ଖର୍ବନ୍ଦ୍ରାଙ୍କ ପ୍ରଶ୍ନବାଣଙ୍କୁ ଏଡ଼ାଇ ଯାଉଥିଲି ।

ମୁଣ୍ଡାଳି କ୍ୟାମ୍ପରେ ଥିବା ସମୟରେ ଅନ୍ୟ ଜଣେ ପ୍ରୋବେସନାରୀ ଅଫିସର୍ ଶ୍ରୀଯୁକ୍ତ ଦେବେନ୍ଦ୍ର ପାଣ୍ଡେ ଆସି ଆମ ସହିତ ଯୋଗ ଦେଲେ । ପ୍ରଥମେ ତାଙ୍କୁ ମେଡିକାଲ୍ ଫିଟ୍‌ନେସ୍ ସାର୍ଟିଫିକେଟ୍ ମିଳିନଥିବାରୁ, ଆବଶ୍ୟକୀୟ ଅପେରେସନ୍ ପରେ ଫିଟ୍‌ନେସ୍ ସାଟିଫିକେଟ୍ ଆଣି, ସେ ପ୍ରାୟ ଦୁଇମାସ ବିଳମ୍ବରେ ବନସେବାରେ ଯୋଗଦାନ କଲେ । ଚତୁରେ ଚତୁରେ କୋଳାକୋଳି ନୀତିରେ ଏହି ଚକର୍ତ୍ତା ଟୁର୍ ଅବଧି ଭିତରେ ହିଁ ଆମେ ଦୁହେଁ ପରସ୍ପର ଘନିଷ୍ଠ ବଂଧୁ ପାଲଟିଗଲୁ । ଘଟଣାଟି ଏହିପରି ଥିଲା । ଟୁର୍‌ରେ ଥିଲାବେଳେ ବ୍ରେକଫାଷ୍ଟରେ ଆମକୁ ଅନ୍ୟାନ୍ୟ ଜଳଖିଆ ସହିତ ଗ୍ଲାସଟେ ଦୁଧ ପିଇବାକୁ ଦିଆଯାଉଥିଲା । ପିଲାଦିନରୁ ମୁଁ ଦୁଧ ପିଏନାହିଁ । ଯୋଗକୁ ପାଣ୍ଡେଜୀ ମଧ୍ୟ ଦୁଧ ପିଅନ୍ତି ନାହିଁ । ଜଣକରୁ ଦୁଇଜଣ ସମଧର୍ମୀୟ ଯୁଟି ଯିବାରୁ ଆମେ ମେସ୍ ଦାୟିତ୍ୱରେ ଥିବା ଅର୍ଡରଲି ଅଫିସର୍‌ଙ୍କ ପାଖରେ ଦୁଧ ବଦଳରେ ଦହି ଗ୍ଲାସ୍‌ଟେ ଦେବାପାଇଁ ଦାବି ଜଣାଇଲୁ । ପରିଶେଷରେ ଆମ ଦାବୀ ପୂରଣ ହେଲା ଏବଂ ସେହିଦିନଠାରୁ ଦୁଇବର୍ଷ କାଳ ଟ୍ରେନିଂ ଅବଧି ଶେଷ ହେଲା ପର୍ଯ୍ୟନ୍ତ ଆମକୁ ବ୍ରେକ୍‌ଫାଷ୍ଟରେ ଦୁଧ ପରିବର୍ତ୍ତେ ରୀତିମତ ଦହି ଯୋଗାଇ ଦିଆଯାଉଥିଲା ।

ମୁଣ୍ଡାଳିରେ ତିନିଦିନର ରହଣିପରେ ଆମର ପରବର୍ତ୍ତୀ କ୍ୟାମ୍ପ ଥିଲା 'ଦେଓବନ' । ମୁଣ୍ଡାଳିରୁ ଦେଓବନର ଦୂରତା ୨୩ କିଲୋମିଟର । ସମୁଦ୍ରପତ୍ତନଠାରୁ ୨୮୧୪ ମିଟର ଅର୍ଥାତ୍ ୯୨୪୦ ଫୁଟ୍ ଉପରେ ଅବସ୍ଥିତ ଏହି କ୍ୟାମ୍ପଟିର ସ୍ଥିତି ଚାରୋଟି ଯାକ କ୍ୟାମ୍ପ ଭିତରୁ ସବୁଠାରୁ ଉଚ୍ଚରେ । ସକାଳ ସାଢ଼େ ୫ଟାରେ ବ୍ରେକ୍ ଫାଷ୍ଟ ପରେ, ପ୍ୟାକ୍‌ଡ ଲଞ୍ଚ ଡବା ନେଇ ମୁଣ୍ଡାଳୀ ଛାଡ଼ିଲୁ । ପାହାଡ଼ କାନ୍ଥର ଅଙ୍କା ବଙ୍କା, ଅଣ ଓସାରିଆ ୮୦୦୦ ଫୁଟ ଉଚ୍ଚ ରାସ୍ତାରେ ଯାତ୍ରା ଆରମ୍ଭ ହେଲା । ଦୂର ଯାତ୍ରା ଓ ଲମ୍ବା ରାସ୍ତା ହେତୁ, ରାସ୍ତାରେ କେବଳ ବଡ଼ ବଡ଼ କୋନିଫର ଜାତୀୟ ଗଛ ଯଥା, କୈଲ୍, ଫର୍, ସ୍ପ୍ରୁଶ୍ ଓ ଦେଓଦାର ବିଷୟରେ ସମ୍ୟକ୍ ଆଲୋଚନା କରି ଆମେ ଗନ୍ତବ୍ୟ ସ୍ଥଳକୁ ଆଗେଇ ଚାଲିଥିଲୁ । ଏହି ଅବସରରେ ଜୀବନରେ ପ୍ରଥମଥର ପାଇଁ ମୁଁ ବରଫ ଦେଖିବାର ସୁଯୋଗ ପାଇଥିଲି । ପୂର୍ବରୁ ବହିରେ

ପଢ଼ିଥିଲି, ଶୈଳନିବାସରେ ଶୀତଦିନେ ତୁଷାର ପାତ ହୋଇଥାଏ । କିନ୍ତୁ ଜୀବନରେ ସେ ଅପୂର୍ବ ଦୃଶ୍ୟ ଦେଖିବାର ସୁଯୋଗ ଆସିନଥିଲା । ମେ' ମାସ ହୋଇଥିଲେ ମଧ୍ୟ ବାଟରେ ଦୁଇଟି ଜାଗାରେ ପାହାଡ଼ ଖୋଲରେ ମସୃଣ ବରଫଗଦା ସେପର୍ଯ୍ୟନ୍ତ ନ ତରଳି ରହିଥିଲା । ପାହାଡ଼ିଆ ଗଡ଼ୱାଲ୍ ଅଂଚଳର ଲୋକମାନେ ଆମ ପୁରୀ ସମୁଦ୍ରର ବିଶାଳ ତରଙ୍ଗାୟିତ ନୀଳ ଜଳରାଶି ଦେଖିଲେ ଯେମିତି ଆତ୍ମହରା ହୁଅନ୍ତି, ରାସ୍ତାକଡରେ ଏଇ ବରଫଗଦା ଦେଖି ଆମଭଳି ଉପକୂଳ ଅଂଚଳର ଆଗରୁ କେବେ ପ୍ରାକୃତିକ ବରଫ ସ୍ତୁପ ଦେଖିନଥିବା ଅଫିସର୍‌ମାନେ ସେମିତି ଛୋଟ ପିଲାଙ୍କ ପରି ଆନନ୍ଦ ଓ ଉତ୍ତେଜନାରେ ପରସ୍ପର ଉପରକୁ ବରଫଗୁଳା ଫୋପାଡ଼ି, କିଛି ସମୟପାଇଁ ଉଦ୍‌ବେଳିତ ତଥା ଉତ୍‌ଫୁଲିତ ହୋଇ ଖେଳିବାକୁ ଲାଗିଲୁ । ସେ ଅନୁଭୂତି ଅନନ୍ୟ । ଜୀବନର ପ୍ରଥମ ଅନୁଭୂତି ଭୁଲି ହୁଏନା ।

ଚାଲୁଥାଉ । ରାସ୍ତା ସରୁନଥାଏ । ସାଙ୍ଗରେ ପିଇବା ପାଇଁ 'ୱାଟରବଟଲ୍' ନେଇଥିଲେ ମଧ୍ୟ ବାଟରେ ଗୋଟିଏ ଛୋଟ ଦୋକାନରୁ କିଛି ଲଜେନ୍‌ସ, ଗୁଡ଼ ଓ ବୁଟ ଚୂନାରେ ପ୍ରସ୍ତୁତ ଛୋଟ ଛୋଟ ଗୁଳା କିଣି ନେଇଥିଲୁ । ମଝିରେ ମଝିରେ ସେଥିରୁ ଗୋଟିଏ ଗୋଟିଏ ପାଟିରେ ପକେଇଲେ, ତଣ୍ଟି ଓଦା ରହିବା ସହିତ କ୍ଲାନ୍ତି ଅପନୋଦନ ମଧ୍ୟ ହେଉଥାଏ । ଟେଣ୍ଟ ତଥା ରୋଷେଇ ସରଞ୍ଜାମ ଖଚର ପିଠିରେ, ପାହାଡ଼ି ଲୋକଙ୍କ ସହାୟତାରେ ଆଗରୁ ଦେଓବନ ପଠେଇ ଦିଆଯାଇଥିଲା । ୨୩ କିଲୋମିଟର ରାସ୍ତା ଅତିକ୍ରମ କରି କ୍ୟାମ୍ପରେ ପହଞ୍ଚିଲାବେଳକୁ ସଂଧ୍ୟା ଆଗତ ପ୍ରାୟ । ଏଇଠି ବୁଝିପାରିଲି, କାହିଁକି ଭାରତୀୟ ବନସେବାରେ ପ୍ରବେଶ କରିବା ପାଇଁ ଚାରି ଘଣ୍ଟାରେ ୧୬ ମାଇଲ୍ ବା ୨୫ କିଲୋମିଟର ଅତିକ୍ରମ କରିବା ପାଇଁ ନିର୍ଦ୍ଧିଷ୍ଟ ୱାକିଙ୍ଗ୍ ଟେଷ୍ଟର ଅବତାରଣା କରାଯାଇଛି । ଚାକିରି ପୂର୍ବରୁ କରାଯାଇଥିବା ଏଣ୍ଡୁରାନ୍‌ସ ଟେଷ୍ଟର ବାସ୍ତବ ଓ ଯଥାର୍ଥ ପରୀକ୍ଷା ଏଇଠି ହୋଇଗଲା ।

'ଦେଓବନ'-ବାସ୍ତବିକ୍ ଏହି ନାମକରଣ ଯଥାର୍ଥତା ରହିଛି । ନୈସର୍ଗିକ, ପ୍ରାକୃତିକ ଶୋଭା ବିମଣ୍ଡିତ ଏହି ସ୍ଥାନଟିକୁ ଦେବତାମାନଙ୍କର ବନ କହିଲେ ଅତ୍ୟୁକ୍ତି ହେବନାହିଁ । ଅଦୂରରେ ଧବଳ ବରଫାବୃତ୍ତ ହିମାଳୟ ଗିରିଶୃଙ୍ଗ । ଚାରିପଟେ ବ୍ଲୁପାଇନ୍, ଫର ଓ କେଲ୍‌ର କୋନିଫର୍ ଜଙ୍ଗଲ । ତଳେ ଉପତ୍ୟକାକୁ ଢାଙ୍କିଥିବା ଭାସମାନ ମେଘର ଚାଦର ସୁଉଚ୍ଚ, ସୁଦୃଶ୍ୟ ଗଛ ଫାଙ୍କରୁ ଝରି ଆସୁଥିବା ଚକମକ

ସୂର୍ଯ୍ୟକିରଣ ଏବଂ ପ୍ରଭାତ ଆଗମନରେ ବନ ପକ୍ଷୀମାନଙ୍କର ବିଚିତ୍ର ମଧୁର କାକଳି ମନେହୁଏ ଆମେ ଯେମିତି ମର୍ତ୍ତ୍ୟରେ ନାହୁଁ । ଦେବଭୂମି ସ୍ୱର୍ଗରେ ବିଚରଣ କରୁଛୁ । କାଳିଦାସଙ୍କର 'କୁମାର ସଂଭବ' ପଂକ୍ତି ମନେ ପଡିଯାଏ । 'ହିମାଳୟୋ ନାମ ନଗାଧିରାଜଃ । ସଂଧ୍ୟା ସମୟରେ ଏଇ ଅକ୍ଷତ ବନଭୂମି ଉପରେ ନିସ୍ତବ୍‌ଧତା ସନ୍ତର୍ପଣରେ ଓହ୍ଲେଇ ଆସେ । ଆମ ଚାରିକଡରେ ଅଂଧାର ଜମାଟ ବାଂଧି ଆସିଲାବେଳକୁ ବରଫାବୃତ୍ତ ଧବଳ ପର୍ବତଚୂଡା ଅସ୍ତଗାମୀ ସୂର୍ଯ୍ୟର ଲୋହିତ କିରଣରେ ରକ୍ତ ରଂଜିତ ଦିଶୁଥାଏ । ପକୃତିର ଏଇ ଦୁର୍ଲଭ ଦୃଶ୍ୟ ଅବର୍ଣ୍ଣନୀୟ । ବିବିଧବର୍ଣ୍ଣା ପ୍ରକୃତିର ସଚିତ୍ର ବର୍ଣ୍ଣାଳୀ, ପରିବେଶରେ ଭରି ରହିଥିବା ନିସ୍ତବ୍‌ଧତାର ଭାଷା, କେବଳ ଅନୁଭବ କରାଯାଇ ପାରିବ ହୃଦୟର ସ୍ପନ୍ଦନ ଓ ମାର୍ମିକ ଚେତନାରେ ।

ଚକର୍ତ୍ତା ଟୁର୍‌ର ଶେଷ ପର୍ଯ୍ୟାୟରେ ଯିବାକୁ ପଡ଼େ ଚତୁର୍ଥ କ୍ୟାମ୍ପ-କଣାସର । ଟ୍ରେନିଂ ଦେବାପାଇଁ ଏହା ଏକ ସ୍ଥାୟୀ କ୍ୟାମ୍ପ । ପାଇନ ଜଙ୍ଗଲ ମଝିରେ ଧାଡ଼ି ଧାଡ଼ି ଟିଣ ଛପର ବାରାକ୍ ନିର୍ମାଣ କରାଯାଇଛି । 'ଦେଓବନ'ରୁ 'କଣାସର'ର ଦୂରତା ପ୍ରାୟ ଦଶ କିଲୋମିଟର । ସମୁଦ୍ର ପତ୍ତନଠାରୁ ୨୧୮୮ ମିଟର ଅର୍ଥାତ୍ ୭୧୭୧ ଫୁଟ ଉଚ୍ଚରେ ଅବସ୍ଥିତ ଏହି କ୍ୟାମ୍ପ । ଏଠି ଫିଲ୍ଡ ବଟାନି ଓ ଉଦ୍ଭିଦ ଚିହ୍ନଟକୁ ବାଦ ଦେଇ ମେନ୍‌ସୁରେସନ ଉପରେ ଅଧିକ ଟ୍ରେନିଂ ଦିଆଯାଇଥାଏ । ବଡ଼ ବଡ଼ ପାଇନ୍ ଗଛକୁ କାଟି ଛୋଟ ଗଣ୍ଡିରେ ପରିଣତ କରିବା, ଗଣ୍ଡିରେ ଥିବା ବାର୍ଷିକ ବର୍ଦ୍ଧନ ଚକ୍ରକୁ ଗଣି, ସେଥିରୁ ଗଛର ବୟସ ନିର୍ଦ୍ଧାରଣ କରିବା, ବିଭିନ୍ନ ଯନ୍ତ୍ର ସାହାଯ୍ୟରେ ଠିଆ ହୋଇଥିବା ବୃକ୍ଷର ଉଚ୍ଚତା ଓ ମୋଟେଇ ମାପିବା ଏବଂ ଏହାକୁ ବ୍ୟବହାର କରି ବୃକ୍ଷରୁ କେତେ ଘନଫୁଟ କାଠ ମିଳିବ, ତାହା ଆକଳନ କରିବା ଅନ୍ୟତମ । ଏହା ବ୍ୟତୀତ ଷ୍ଟମ୍ପ ଆନାଲିସିସ୍ ଓ ଷ୍ଟେମ୍ ଆନାଲିସିସ୍ ମଧ୍ୟ ଏ ଭିତରେ ଅନ୍ତର୍ଭୁକ୍ତ । ଟୁର୍, ଟୁର୍ ନୋଟ ଏବଂ ଟୁର୍ ଏକ୍‌ଜାମିନେସନ । ଚକର୍ତ୍ତା ଟୁରହିଁ ମୋ ଜୀବନର ମୋଡ଼ ବଦଳେଇ ଦେଲା । ପୁନଶ୍ଚ ସଂପର୍କ ସ୍ଥାପନ ହୋଇଗଲା ପ୍ରକୃତି ଓ ପ୍ରାକୃତିକ ପରିବେଶ ସହିତ ।

ପ୍ରାୟ ତିନିସପ୍ତାହ ବ୍ୟାପୀ ଚକର୍ତ୍ତା ଟୁର୍‌ର ସକାଳୁ ସଂଧ୍ୟା ପର୍ଯ୍ୟନ୍ତ କଠିନ ଶାରୀରିକ ଓ ବୌଦ୍ଧିକ ପରିଶ୍ରମ ପରେ, ଆମେ କଣାସରରୁ ବସ୍ ଯୋଗେ ଫେରି

ଆସିଲୁ ଡେରାଡୁନ୍ । ସେତେବେଳେ ଡୁନ୍ ଉପତ୍ୟକାରୁ ଗ୍ରୀଷ୍ମଋତୁ ଅବ୍ୟାହତି ନେଇ ବର୍ଷାର ଶୀତଳ ପ୍ରବାହ ସଂଚରିବାକୁ ଆରମ୍ଭ କରିଥାଏ । ଦୁଇ ଦିନର ବିରତି ପରେ ପୁନଶ୍ଚ ଆରମ୍ଭ ହୋଇଯାଏ ଗତାନୁଗତିକ ଶୃଙ୍ଖଳାବଦ୍ଧ ଜୀବନ । ଭାରତୀୟ ବନ ମହାବିଦ୍ୟାଳୟ (ଏବେ ଏହାର ନାମ ପରିବର୍ତ୍ତନ କରି ରଖାଯାଇଛି, ଇନ୍ଦିରାଗାନ୍ଧୀ ଜାତୀୟ ବନ ଏକାଡେମୀ) ଓ ତତ୍ ସଂଲଗ୍ନ ଭାରତୀୟ ମିଲିଟାରୀ ଏକାଡେମୀ-ସମଗ୍ର ଭାରତରେ ତଥା ଏସିଆ ମହାଦେଶରେ ଦୁଇଟି ଉଚ୍ଚକୋଟୀର ପ୍ରଶିକ୍ଷଣ ଅନୁଷ୍ଠାନ । ପରସ୍ପରକୁ ଲାଗି ରହିଥିବା ଏହି ଦୁଇଟି ଅନୁଷ୍ଠାନକୁ 'ଜାଆଁଳା ଭାଇ ବୋଲି ମଧ୍ୟ କୁହାଯାଏ । ଉଭୟ ଅନୁଷ୍ଠାନର ନିୟମ ଶୃଙ୍ଖଳା, ଅନୁଶାସନ, ଆଦବ କାଇଦା, ଚଳଣି ସବୁ ବ୍ରିଟିଶ୍ ଢାଞ୍ଚାର ।

ସକାଳୁ ସକାଳୁ ଅର୍ଦ୍ଦଳୀ ପିଅନ ଆସି କବାଟ ଠକ୍‌ଠକ୍ କରି ନିଦରୁ ଉଠେଇବ, ଚା' ପରଶିବ, ଜୋତା ନେଇ ପଲିସ୍ କରିବ । ଏହା ବ୍ୟତୀତ ହଷ୍ଟେଲ୍ ଓ ମେସର ରାଜକୀୟ ଆସବାବପତ୍ର, ସୁଶୋଭିତ ଡାଇନିଙ୍ଗ୍ ହଲ୍, ଡିନର ଡ୍ରେସ୍ କୋର୍ଡ ଓ କଣ୍ଟା ଚାମଚରେ ଖାଇବାର ବିଧି, ଡାଇନିଙ୍ଗ୍ ହଲ ସଂଲଗ୍ନ ଓ୍ୱାଲଟୁ ଓ୍ୱାଲ୍ କାର୍ପେଟ ବିଛାଯାଇଥିବା ଲାଉଞ୍ଜ, ବ୍ରିଟିଶ୍ ଅମଳର ବିଲିୟାର୍ଡ ରୁମ୍ ଏ ସବୁ ଆମକୁ ବାହ୍ୟିକ ଓ ବ୍ୟବହାରିକ ସ୍ତରରେ ଉଚ୍ଚାଭିଳାଷୀ କରିବା ପାଇଁ ଅଭିପ୍ରେତ ଥିଲା । ମାନସିକ ଓ ବୌଦ୍ଧିକ ସ୍ତରରେ ପରିବର୍ତ୍ତନ ଆଣିବା ପାଇଁ ପ୍ରଚେଷ୍ଟା ମଧ୍ୟ କିଛି କମ୍ ନଥିଲା । କ୍ଲାସ୍ ରୁମ୍‌ର ଶୃଙ୍ଖଳା ଓ ଆଦବକାଇଦା ବ୍ୟତୀତ, ଲଞ୍ଚ ବା ଡିନର ଟେବୁଲ୍‌ରେ ବସି ଖାଇବା ବେଳେ କିମ୍ବା ବିଭିନ୍ନ ଫଙ୍କ୍‌ସନ୍‌ରେ ଅଂଶଗ୍ରହଣ କଲାବେଳେ ମ୍ୟାନର୍‌ସ ଓ ଶିଷ୍ଟାଚାର ଦିଗରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଥିଲା । ଫଙ୍କ୍‌ସନ୍‌ରେ ଲାଉଞ୍ଜରେ ବସିଥିବାବେଳେ କୌଣସି ଲେଡି ଭିତରକୁ ଆସିଲେ, ତାଙ୍କୁ ସମସ୍ତେ ଠିଆ ହୋଇ ଅଭିବାଦନ କରିବା, ପାହାଚ ଉଠିଲାବେଳେ, ଲେଡିମାନଙ୍କୁ କାନ୍ଥପଟ ଛାଡ଼ିଦେଇ, ନିଜେ ଅନ୍ୟ ପଟେ ଉଠିବା, ମାର୍କେଟିଂ କଲାବେଳେ, ଲେଡିଜମାନଙ୍କୁ ହାତରୁ ବ୍ୟାଗପତ୍ର ଆଣି ଧରିବା, ଅଥବା ସିନିୟର ଅଫିସରଙ୍କ ଘରକୁ କଲ୍‌ଅନ୍ କରିବାକୁ ଗଲାବେଳେ ଡିନର ଜ୍ୟାକେଟ୍ ପିନ୍ଧିଯିବା ଏବଂ ନଇଁ କରି ମିସେସ୍ ହୋଷ୍ଟେସ୍‌ଙ୍କୁ ପ୍ରଥମ ଅଭିବାଦନ ଜଣାଇବା ଇତ୍ୟାଦି ଅନ୍ୟତମ । ପରିଶେଷରେ ବନବିଦ୍ୟାଳୟରେ ଦୈନନ୍ଦିନ ଦିଆଯାଉଥିବା ଫିଜିକାଲ ଟ୍ରେନିଂକୁ ପାଥେୟକରି ଆୟାସସାଧ୍ୟ ଚକର୍ତ୍ତାଟ୍ରୁର କଷଟି-ପଥରରେ ପରଖ ହୋଇ ବାହାରି

ଆସିବା ପରେ କାୟିକ ଓ ଶାରୀରିକ ସ୍ତରରେ ମଧ୍ୟ ଆମର ଦକ୍ଷତା ପ୍ରମାଣିତ ହୋଇଯାଉଥିଲା । ଏତିକି କହିଲେ ହୁଏତ ଯଥେଷ୍ଟ ହେବ, ମାତ୍ର ତିନିମାସ ଟ୍ରେନିଂ, କାୟ ମନୋବାକ୍ୟରେ ଯେଉଁ ପ୍ରଭାବ ପକାଇଥିଲା, ତାହା ମୋ ପରି ଗାଁଉଲି, ମଫସଲରୁ ଆସିଥିବା  ପିଲାକୁ 'ସଂବାଲୁଆ ପ୍ରଜାପତିରେ' ରୂପାନ୍ତରିତ ହେଲାପରି, ସ୍ୱଳ୍ପ ସମୟ ଭିତରେ ସାମାଜିକ ସ୍ତରରେ 'ବଡ଼ାସାବ୍'ରେ ପରିବର୍ତ୍ତନ କରିଦେବାକୁ କ୍ଷମ ହୋଇଥିଲା ।



# କ୍ୟାମ୍ପସ୍ ଲାଇଫ୍



କ୍ୟାମ୍ପସ୍ ଲାଇଫ୍‌ର ସ୍ୱାଦ ନିଆରା । ତାହା ପୁଣି ଯଦି 'ଇନ୍ ସର୍ଭିସ୍' ଟ୍ରେନିଂର କ୍ୟାମ୍ପସ୍ ହୋଇଥାଏ । ଅର୍ଥାତ୍ ଚାକିରି ସହିତ ଟ୍ରେନିଂ । ମାସକୁ ମାସ କେନ୍ଦ୍ର ହାରରେ ଦରମା ମିଳିଯାଉଥାଏ । ସେତେବେଳେ ଆମର ମୂଳ ବେତନ ଥିଲା ମାସିକ ସାତଶହ ଟଙ୍କା । ସେଥିରୁ ମେସ୍‌କୁ ତିନିଶହ ଟଙ୍କା ଦେବାକୁ ପଡୁଥିଲା । ଏହା ବ୍ୟତୀତ ନିଜର ହାତଖର୍ଚ୍ଚ ଏକଶହ ପଚାଶ ଟଙ୍କା ରଖି, ପ୍ରତିମାସରେ ମୋତେ ଘରକୁ ପ୍ରାୟ ଦୁଇଶହ ପଚାଶ ଟଙ୍କା ବା ତହିଁରୁ କିଛି ଅଧିକ ପଠାଇବାକୁ ପଡୁଥିଲା । ସେଥିରେ କୌଣସିମତେ ବୋଉ ଘରଖର୍ଚ୍ଚ ଚଳେଇ ନେଉଥିଲା ।

ଗାଁରେ ଅଭାବ, ଅସୁବିଧା ମଧ୍ୟରେ ପାଞ୍ଚପ୍ରାଣୀ କୁଟୁମ୍ବ ଚଳୁଥିଲେ ମଧ୍ୟ ଇଚ୍ଛା ବିରୁଦ୍ଧରେ ମୋତେ କ୍ୟାମ୍ପସ୍ ଭିତରେ ଷ୍ଟାଟ୍‌ସ ବଜାୟ ରଖି ଚଳିବାକୁ ପଡୁଥିଲା । ସେଠି ଖାଇବା, ପିନ୍ଧିବା, ଚାଲିଚଳଣ, ହାବଭାବ, ବ୍ୟବହାର ସବୁଥିରେ ଉଚ୍ଚକୋଟୀର ଷ୍ଟାଟସ ବଜାୟ

ରଖିବାକୁ ହେବ । କାରଣ ଆମେ ସର୍ବଭାରତୀୟ ସ୍ତରର ଆଇ.ଏଫ୍.ଏସ୍. ଅଫିସର । ଭାରତ ସରକାରଙ୍କ କେତେଜଣ ହାତଗଣତି ପ୍ରଥମ ଶ୍ରେଣୀ ଅଫିସର୍‌ମାନଙ୍କ ମଧ୍ୟରୁ ଅନ୍ୟତମ ।

ବାହାରକୁ ଯେତେ ଚାକଚକ୍ୟ ଦେଖେଇଲେ ବି ଯେତେ ସୋଫିଷ୍ଟିକେଟେଡ ଆଦବ କାଇଦା ପ୍ରଦର୍ଶନ କରୁଥିଲେ ବି କ୍ୟାମ୍ପସ ଲାଇଫର ଆବହାଓ୍ୱା ଆମ ସମସ୍ତଙ୍କୁ ବିଗତ କଲେଜ ଜୀବନକୁ ଫେରେଇ ନେଇଥିଲା । 'ପ୍ରକୃତି ନୈବ ମୁଚ୍ୟତେ ।' ଏହି ନୀତିରେ ଚକର୍ତ୍ତା ଟୁର୍ ପରେ ପରେ ଧୀରେ ଧୀରେ କଲେଜ ଜୀବନର ରୂପ ରଂଗ ଆତ୍ମପ୍ରକାଶ କରିବାକୁ ଲାଗିଲା । ପ୍ରଥମ କରି ସ୍ୱର ଉତ୍ତୋଳନ ହେଲା, ଖାକି ପୋଷାକ ଓ ସୋଲ ଟୋପି ପିନ୍ଧିବା ବିରୁଦ୍ଧରେ । ଫିଲଡ ସର୍ଭେ, ବଟାନିକାଲ୍ ବା ଜିଓଲୋଜିକାଲ ଟୁର୍, ଅଥବା ନର୍ସରୀ ଓ ପ୍ଲାଣ୍ଟେସନ୍‌ରେ ଚାରାରୋପଣ କରିବା ସମୟରେ ଖାକି ପୋଷାକ ପିନ୍ଧିବାରେ କାହାରି ଆପତ୍ତି ନଥିଲା । ସେହିପରି ଜଙ୍ଗଲରେ ବୁଲୁଥିବା ବେଳେ ଖାକି ଡ୍ରେସ୍ ପିନ୍ଧିବା ନିହାତି ଅପରିହାର୍ଯ୍ୟ ଥିଲା । କିନ୍ତୁ ଆପତ୍ତି ଉଠିଲା, ଯେତେବେଳେ ଟୁର୍ ସମୟରେ କୌଣସି ସହର, ବଜାରରେ ବା ପର୍ଯ୍ୟଟନସ୍ଥଳୀ ଭ୍ରମଣ ଅବସରରେ ମଧ୍ୟ ଖାକି ପୋଷାକ ପିନ୍ଧିବାକୁ ବାଧ୍ୟ କରାଗଲା । ପ୍ରଥମେ ଆମେ ଇନ୍‌ଷ୍ଟ୍ରକ୍ଟରମାନଙ୍କ ନିକଟରେ ଏହାର ପ୍ରତିବାଦ ଜଣେଇଲୁ । ବିଶେଷ କରି ମସୌରୀ ଶୈଳନିବାସର 'ମାଲ୍' ରୋଡରେ ବୁଲିବା ଅବସରରେ ଚାରିପଟର ଚାକଚକ୍ୟ, ରଂଗ ବେରଂଗ ପୋଷାକ ପରିହିତ ଟୁରିଷ୍ଟମାନଙ୍କ ଭିତରେ ଆମର ଖାକି ପୋଷାକ ପିନ୍ଧି ବୁଲିବାଟା କେମିତି ବେଖାପ ଲାଗୁଥିଲା । ଆମେ ସମବେତ ଭାବରେ ପ୍ରତିବାଦ ଜଣେଇଲୁ । କିନ୍ତୁ ଆମର ପ୍ରତିବାଦ ପବନରେ ନୀରବରେ, ନିଶବ୍ଦରେ ମିଳେଇ ଗଲା ଯେପରି ।

ଦ୍ୱିତୀୟବାର ପ୍ରତିବାଦର ସ୍ୱର ଶୁଭିଲା ସାଇକେଲ୍ ଚାଳନାକୁ ନେଇ । କ୍ୟାମ୍ପସରେ ପ୍ରୋବେସନର୍‌ମାନଙ୍କୁ ସ୍କୁଟର ବା ମୋଟରସାଇକେଲ୍ ବ୍ୟବହାର କରିବା ନିଷିଦ୍ଧ ଥିଲା । ପୁରୁଣା ସେକେଣ୍ଡ ହ୍ୟାଣ୍ଡ ସାଇକେଲ ଖଣ୍ଡିକ ହିଁ ଥାଏ ସମସ୍ତଙ୍କ ନିତ୍ୟ ସହଚର । ସକାଳୁ ସକାଳୁ ଫିଜିକାଲ ଟ୍ରେନିଂ ପାଇଁ ଯିବାକୁ ହେଉ, ରେଗୁଲାର୍ କ୍ଲାସ୍‌କୁ ଯିବାକୁ ହେଉ କିମ୍ବା ସଂଧ୍ୟାବେଳେ 'ଗେମ୍‌ସ' ପାଇଁ ପଡ଼ିଆକୁ ଯିବାକୁ ହେଉ ଅଥବା ବୁଲିବା ପାଇଁ 'ପଣ୍ଡିତ ବାଡ଼ି' ଯିବାକୁ ହେଉ, ସେହି ପୁରୁଣା ସାଇକେଲ୍‌ଟି ଧରି ଆମେ ବାହାରି ପଡୁ । କିନ୍ତୁ ପ୍ରୋବେସନର୍‌ମାନଙ୍କ ତରଫରୁ ପ୍ରତିବାଦର ସ୍ୱର ଉଠିଲା, ଯେତେବେଳେ ଆମକୁ ନିର୍ଦ୍ଦେଶ ଦିଆଗଲା 'ଲଚ୍ଛିଓ୍ୱାଲା' ଜଙ୍ଗଲରେ ଅନୁଷ୍ଠିତ ହେଉଥିବା 'ଓ୍ୱାର୍କିଙ୍ଗ ପ୍ଲାନ' କ୍ୟାମ୍ପକୁ

ସାଇକେଲରେ ଯିବା । ଡେରାଡୁନ୍‌ଠାରୁ ହରିଦ୍ୱାର ଯିବା ବାଟରେ ପଡିଥାଏ 'ଲଛିଓ୍ୱାଲା' । ବଣ ପାହାଡ଼ ଘେରା, ପ୍ରାକୃତିକ ପରିବେଷ୍ଟନୀ ଭିତରେ ଛୋଟ ରେଳ ଷ୍ଟେସନଟିଏ 'ଲାଛିଓ୍ୱାଲା'। ପାଖ ଆଖରେ ଛୋଟ ଛୋଟ କିଛିଟା ଗାଁ ଅଛି ବୋଧହୁଏ । ନଚେତ୍ ଚାରିପଟେ ଜଙ୍ଗଲ । ପାହାଡ଼ୀ ରାସ୍ତାର ଉଠାଣି, ଗଡ଼ାଣି ଦେଇ ସାଇକେଲରେ ଯିବାକୁ ହେଲେ, ଡେରାଡୁନ୍‌ଠାରୁ ଲଛିଓ୍ୱାଲାର ଦୂରତ୍ୱ ହେବ ପ୍ରାୟ ୪୦ କିଲୋମିଟର । ଚାରିଘଣ୍ଟାରେ ୧୬ ମାଇଲ୍ ବା ୨୫ କିଲୋମିଟର ରାସ୍ତା ଚାଲିକରି ଅତିକ୍ରମ କରିବା ଟେଷ୍ଟରେ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଥିବା ପ୍ରୋବେସନର୍‌ମାନଙ୍କ ଲାଗି ସାଇକେଲ୍‌ରେ ୪୦ କିଲୋମିଟର ଯିବାଟା ସେମିତି କିଛି ବଡ଼ କଥା ନଥିଲା । କିନ୍ତୁ ପ୍ରଶ୍ନ ଉଠିଲା, ଏହାର ଆବଶ୍ୟକତା କ'ଣ ? ଯିବାପାଇଁ ସଡ଼କ ରାସ୍ତା ଅଛି, ରେଳରାସ୍ତା ମଧ୍ୟ ଅଛି । ତା' ଛଡ଼ା ଆମେତ କେବଳ ସାଧାରଣ ପ୍ରଶିକ୍ଷାର୍ଥୀ ନୋହୁଁ ବରଂ ଆଇ.ଏଫ୍.ଏସ୍. ସର୍ଭିସ୍‌ରେ ନିଯୁକ୍ତି ପାଇବା ପରେ ହିଁ ଆମକୁ ଏହି ଟ୍ରେନିଂ ଦିଆଯାଉଛି । 'ଇନ୍ ସର୍ଭିସ୍ ଟ୍ରେନିଂ' । ପ୍ରତି ଶନିବାର ଦିନ ହେଉଥିବା ଫିଲ୍‌ଡ ଏକ୍ସକରସନ୍‌ରେ ୫ରୁ ୨୦ କିଲୋମିଟର ରାସ୍ତା ସାଇକେଲ୍‌ରେ ଯିବା ଏକ ପରମ୍ପରା ହୋଇ ଯାଉଥିଲା । ଗୁଜରାଟ୍ କ୍ୟାଡରର ଜନୈକ ଅଫିସର୍ ଶ୍ରୀଯୁକ୍ତ ସିହ୍ନା ଆମର ଇନ୍‌ଷ୍ଟ୍ରକ୍‌ଟର ଥିଲେ । ସେ ଆମକୁ ବୁଝାଇବାକୁ ଆପ୍ରାଣ ଚେଷ୍ଟା କରିଥିଲେ । ସାଇକେଲରେ ଯିବାକୁ କହିବା ପ୍ରୋବେସନ୍‌ରମାନଙ୍କ ପାଇଁ ଦଣ୍ଡବିଧାନ ନୁହେଁ ବରଂ ଏହା ଶୃଙ୍ଖଳାର ପ୍ରତୀକ ଏବଂ ଏକ ଦଳୀୟ କାର୍ଯ୍ୟ, ଯାହାର ଉଦ୍ଦେଶ୍ୟ ପ୍ରତ୍ୟେକଟି ଶିକ୍ଷାନବିସକୁ ଶାରୀରିକ ଭାବେ ସୁସ୍ଥ ସବଳ ରଖିବା ।

୧୯୭୨ ମସିହା ପୂର୍ବରୁ ଇଣ୍ଡିଆନ୍ ଫରେଷ୍ଟ କଲେଜରେ ରାଜ୍ୟସ୍ତରର ବନ ବିଭାଗ ଅଫିସରମାନଙ୍କୁ ଟ୍ରେନିଂ ଦିଆଯାଉଥିଲା । ଚାକିରିରେ ସିଲେକ୍‌ସନ୍ ପରେ ହିଁ ସେମାନେ ଟ୍ରେନିଂ କଲେଜରେ ଯୋଗ ଦେଉଥିଲେ । ସେମାନଙ୍କୁ ଆମ୍ଭମାନଙ୍କ ଭଳି ଦରମା ମିଳୁନଥିଲା । କେବଳ ଷ୍ଟାଇପେଣ୍ଡ ମିଳୁଥିଲା । ତେଣୁ ସେ ସମୟରେ ଟ୍ରେନି ଅଫିସରମାନେ ଟ୍ରେନିଂରେ ତ୍ରୁଟିବିଚ୍ୟୁତି କରିବା ଏକ ଗୁରୁତର ଅପରାଧ ରୂପେ ବିବେଚନା କରାଯାଉଥିଲା ଏବଂ ଆବଶ୍ୟକ ହେଲେ ଶୃଙ୍ଖଳାଭଙ୍ଗ ଅପରାଧରେ କଲେଜରୁ ବିତାଡିତ କରି ସେମାନଙ୍କୁ ନିଜ ରାଜ୍ୟକୁ ଫେରାଇ ଦିଆଯାଉଥିଲା; କିନ୍ତୁ ଆମ୍ଭମାନଙ୍କ କ୍ଷେତ୍ରରେ ସେ ପର୍ଯ୍ୟନ୍ତ କ୍ୟାଡର ମଧ୍ୟ ସ୍ଥିର ହୋଇନଥିଲା । କିଏ କେଉଁ ରାଜ୍ୟକୁ ଯିବ କିଏ ଜାଣେ ? ତେଣୁ ନିଜ ନିଜ ରାଜ୍ୟକୁ, ଫେରାଇ ଦେବାର ପ୍ରଶ୍ନ ମଧ୍ୟ ନଥିଲା । ଆମକୁ ଉଦାହରଣ

ଦିଆଯାଇଥିଲା, ବିଗତ ବର୍ଷମାନଙ୍କରେ ଟ୍ରେନିଂ ଅଫିସର୍‌ମାନେ ଇଂଜିନିୟରିଂ ଶିଖିବା ପାଇଁ ୬୭ କିଲୋମିଟର ରାସ୍ତା ସାଇକେଲ୍‌ରେ ଅତିକ୍ରମ କରି 'ରୁର୍‌କି' ଯାଉଥିଲେ, 'ଲଚ୍ଛିୱାଲା' ତାଠାରୁ ବେଶ୍ କମ୍ ରାସ୍ତା । ତେଣୁ ନ ଯିବାର କାରଣ କ'ଣ ?

ପରିଶେଷରେ ସବୁ ପ୍ରୋବେସନର ବସି ନିଷ୍ପତ୍ତି ନେଲୁ, ଆମେ ସାଇକେଲ୍‌ରେ ନୁହେଁ, ବରଂ ଟ୍ରେନ୍‌ରେ ଯାଇ 'ଲଚ୍ଛିୱାଲା' ଷ୍ଟେସନରେ ଓହ୍ଲାଇବୁ ଏବଂ ଟ୍ରେନ୍‌ରେ ଫାଷ୍ଟ କ୍ଲାସରେ ମଧ୍ୟ ଯିବୁ । ପ୍ରଥମଶ୍ରେଣୀ ସରକାରୀ କର୍ମଚାରୀ ହୋଇଥିବାରୁ ଫାଷ୍ଟ କ୍ଲାସ୍‌ରେ ଯାତ୍ରା କରିବାକୁ ଆମ୍ଭେମାନେ ହକ୍‌ଦାର ଥିଲୁ । ପରିଶେଷରେ ଆମେ ଟ୍ରେନ୍‌ରେ ଗଲୁ ଏବଂ ଫେରିବା ପରେ ଗସ୍ତକାଳୀନ ବିଲ୍ ମଧ୍ୟ ଦାଖଲ କଲୁ । ବହୁତ ବିଚାର ଆଲୋଚନା ପରେ ଆମର ଟ୍ରେନ୍‌ରେ ଫାଷ୍ଟ କ୍ଲାସ ବଗିରେ ଯିବା ନିୟମ ଅନ୍ତର୍ଭୁକ୍ତ ହୋଇଥିବାରୁ କଲେଜ କର୍ତ୍ତୃପକ୍ଷ ଆମମାନଙ୍କ ବିଲ୍ ମଧ୍ୟ ପାଶ୍ କରି ଦେଇଥିଲେ ।

ଆମେ ଲଚ୍ଛିୱାଲା ଷ୍ଟେସନରେ ପହଞ୍ଚିବାର କିଛି ସମୟ ପରେ ଦୁଇଟି ଟ୍ରକ୍‌ରେ ଟେଣ୍ଟ ଓ ରୋଷେଇବାସର ସାଜ ସରଞ୍ଜାମ ଆସି ପହଞ୍ଚିଥିଲା । ପୂର୍ବରୁ କ୍ୟାମ୍ପ ସ୍ଥଳୀ ଚିହ୍ନଟ ହୋଇ ସଂପୂର୍ଣ୍ଣ ଜାଗାଟି ସଫା କରାଯାଇଥାଏ । ପ୍ରତି ଦୁଇଜଣ ପ୍ରୋବେସନରଙ୍କ ପାଇଁ ଗୋଟିଏ ତମ୍ବୁ । କ୍ୟାମ୍ପ ସମୟରେ ଦୁଇଜଣ ମିଶି ଗୋଟିଏ ତମ୍ବୁରେ ରୁହନ୍ତି । ତେଣୁ ଦୁଇଜଣ ସାଙ୍ଗ ହୋଇ ଟ୍ରକ୍‌ରୁ ସାମାନପତ୍ର ତଳକୁ କାଢ଼ିବା, ତମ୍ବୁ ପକାଇବା ଓ କ୍ୟାମ୍ପ ଶେଷରେ ତମ୍ବୁ ଖୋଲି ପ୍ୟାକ୍ କରିବା ଏବଂ ପୁନର୍ବାର ଟ୍ରକ୍‌ରେ ଲଦିବା ଆଦି କାମ କରିଥାନ୍ତି । ତମ୍ବୁ ପକାଇବା ଓ ତମ୍ବୁକୁ ଖୋଲି ପ୍ୟାକ୍ କରିବା ମଧ୍ୟ ଟ୍ରେନିଂ କାର୍ଯ୍ୟକ୍ରମର ଏକ ଅଂଶ । ଏହି କାର୍ଯ୍ୟ ଆମେ ଆଗ୍ରହ ସହକାରେ କରୁଥିଲୁ ।

'ଲଚ୍ଛିୱାଲା' ଟ୍ରେନିଂ ସମୟରେ ଗୋଟିଏ ଅଭାବିତ ଘଟଣା ଆଜି ବି ମନେ ପଡ଼ିଯାଏ । ଦିନେ ସକାଳୁ ଆମେ ତିନିଜଣ ମୁଁ, ଜକାତି ଓ ପ୍ରଧାନ ପେଟ ଖରାପ ଅଛି ବାହାନା କରି ଟେଣ୍ଟରେ ରହିଗଲୁ । ଟୁର୍ ଇନ୍‌ଷ୍ଟ୍ରକ୍‌ଟର ଭାବରେ ଆମ ଓଡ଼ିଶା କ୍ୟାଡରର ଶ୍ରୀଯୁକ୍ତ ଅହମ୍ମଦ ଯାଇଥିବାରୁ ଅବ୍ୟାହତି ପାଇଁ ସ୍ୱୀକୃତି ସହଜରେ ମିଳିଗଲା । ଅନ୍ୟାନ୍ୟ ବନ୍ଧୁମାନେ ବ୍ରେକ୍‌ଫାଷ୍ଟ ପରେ ପ୍ୟାକ୍‌ଡ ଲଞ୍ଚ ନେଇ ୱାର୍କିଙ୍ଗପ୍ଲାନ ଏକ୍‌ସର୍‌ସାଇଜ ପାଇଁ ଜଙ୍ଗଲ ଭିତରକୁ ଚାଲିଗଲେ । ଆମେ ତମ୍ବୁ ଭିତରେ ଶୋଇ ରହିଲୁ । ପ୍ରାୟ ଘଣ୍ଟାକ ପରେ ସେହି ଷ୍ଟେସନ ଦେଇ ଗୋଟିଏ ପାସେଞ୍ଜର ଟ୍ରେନ ହରିଦ୍ୱାର ଯିବାର ଥାଏ । ସମସ୍ତଙ୍କ ଆଗୋଚରରେ ସେହି ଟ୍ରେନ୍‌ରେ ଟିକେଟ୍ କାଟି ଆମେ ତିନିଜଣ ଦିନ ପ୍ରାୟ ସାଢ଼େ

ଏଗାରଟା ବେଳକୁ ହରିଦ୍ୱାର ଷ୍ଟେସନ୍‌ରେ ପହଞ୍ଚିଲୁ । ହରିଦ୍ୱାରରେ 'ହରକୀପୌଡ଼ି' ଥିଲା ଆମପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ । ହରିଦ୍ୱାରର ଛୋଟ ମାର୍କେଟ୍‌ରେ ବୁଲାବୁଲି କରି ଖାଇ ସାରିବା ପରେ ଆମେ ଆସି 'ହରକୀ ପୌଡ଼ି' ଉପରମୁଣ୍ଡରେ ଥିବା ପୋଲ ଉପରେ ବସିଗଲୁ ।

ଭାଗୀରଥି ଗଙ୍ଗା ଋଷିକେଶଠାରୁ ତଳକୁ ବୋହି ଆସିବା ଅବସରରେ ହରିଦ୍ୱାରଠାରେ ପାହାଡ଼ ଗଡ଼ାଣିରୁ ଖସି ସମତଳ ଭୂଇଁରେ ପ୍ରବାହିତ ହୋଇଛି । ମୂଳଧାରାରୁ ଏକ ଶାଖା ବାହାରି ହରକୀ ପୌଡ଼ି ବ୍ରହ୍ମକୁଣ୍ଡ ଦେଇ ତଳକୁ ବୋହି ଚାଲିଛି । ଏହି ବ୍ରହ୍ମକୁଣ୍ଡ ଅତି ପବିତ୍ର ଏବଂ ପ୍ରତିଦିନ ହଜାର ହଜାର ସାଧୁ, ସନ୍ଥ, ନରନାରୀଙ୍କର ଗାଧୋଇବାର ଦୃଶ୍ୟ ଉପଭୋଗ୍ୟ । 'ସୁନ୍ଦର ତୃପ୍ତିର ଅବସାଦ ନାହିଁ; ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।' ଏହି ନୀତିରେ ସମୟ କେତେବେଳେ ବିତିଗଲା ଜଣାପଡ଼ିଲାନି ।

ଅପରାହ୍ଣ ଚାରିଟା ବେଳକୁ ଫେରିବାକୁ ସ୍ଥିର କରି ଆମେ ହରିଦ୍ୱାର ଷ୍ଟେସନରେ ପହଞ୍ଚିଲୁ । ଦୁର୍ଭାଗ୍ୟକୁ 'ଲଛିଓ୍ୱାଲା' ଫେରିବା ପାଇଁ ଅପରାହ୍ଣରେ କୌଣସି ଟ୍ରେନ୍ ନଥିଲା । ଅନ୍ୟ ଉପାୟ ନଥିବାରୁ ଆମେ ପଦବ୍ରଜରେ ୧୫ରୁ ୧୬ କିଲୋମିଟର ଦୂରତା ଅତିକ୍ରମ କରି କ୍ୟାମ୍ପକୁ ଫେରିବାକୁ ମନସ୍ଥ କଲୁ । ରେଳଧାରଣାରେ ଚାଲିଚାଲି ଅବା ଦୌଡ଼ି ଦୌଡ଼ି ଆମେ ଫେରୁଥାଉ । ବାଟସାରା ରେଳଧାରଣା କଡ଼ରେ ଅସଂଖ୍ୟ ଭୂଇଁ ବରକୋଳି ବୁଦାଥାଏ । ଯେଉଁଥିରେ ଛୋଟ ଛୋଟ ବରକୋଳି ପାଚି ଝୁଲୁଥାଏ । ମଝିରେ ମଝିରେ କିଛି କୋଳି ତୋଳି ଉଦରସ୍ଥ କରୁଥାଉ । ଦୁଇଘଣ୍ଟା ଏମିତି ଚାଲିଲା ପରେ ସଂଧ୍ୟା ଧୀରେ ଧୀରେ ଓହ୍ଲେଇ ଆସିବାର ଉପକ୍ରମ କରୁଥାଏ । ଶୁଣିଥିଲୁ ପାଖ ଆଖର ଜଙ୍ଗଲରେ ହାତୀ ଅଛନ୍ତି ଏବଂ ସଂଧ୍ୟାବେଳେ ହାତୀ ବାହରିବାର ଯଥେଷ୍ଟ ସଂଭାବନା ଅଛି । ତେଣୁ ସଂଧ୍ୟା ଉପନୀତ ହେବା ସଂଗେ ସଂଗେ ରେଳଧାରାଣା ଉପରେ ଆମେ ତିନିହେଁ ପ୍ରାୟତଃ ଏକଲୟରେ ଦୌଡ଼ିବାକୁ ଲାଗିଲୁ । ରାତି ପାଖାପାଖି ସାତଟା ବେଳକୁ କ୍ୟାମ୍ପରେ ପହଞ୍ଚିଲୁ । ସେତେବେଳକୁ ଅନ୍ୟ ପ୍ରୋବେସନରମାନେ ଫିଲ୍‌ଡରୁ ଫେରି ଆସିଥାନ୍ତି ଏବଂ କ୍ୟାମ୍ପରେ ଆମକୁ ଖୋଜା ପଡ଼ିଥାଏ । ଏମିତି ବିଶୃଙ୍ଖଳିତ କାର୍ଯ୍ୟପାଇଁ ଆମକୁ ଇନ୍‌ଷ୍ଟ୍ରକ୍‌ଟରମାନଙ୍କଠାରୁ ବେଶ୍ କିଛି ଶୁଣିବାକୁ ପଡ଼ିଲା । ଏପରି କରିବା ଆମପାଇଁ ନିଶ୍ଚିତ ଭାବେ ଉଚିତ୍ ନଥିଲା ।

ଡେରାଡୁନ୍‌ଠାରେ ଦୁଇବର୍ଷ ବିତାଇବା ଭିତରେ ଟ୍ରେନିଂ କାର୍ଯ୍ୟକ୍ରମର ନିର୍ଘଣ୍ଟ ଏପରି ଭାବେ କରାଯାଇଥାଏ, ଯେଉଁଥିରେ କି ପ୍ରତି ଦୁଇ ତିନିମାସ ଅନ୍ତରରେ ଆମେ ଟୁର୍‌ରେ ବାହାରକୁ ବାହାରି ଯାଉ । ଗ୍ରୀଷ୍ମଦିନେ ଜାମ୍ମୁ, କାଶ୍ମୀର ଅଥବା ନୈନିତାଲ, ହଲ୍‌ଦ୍ୱାନି ଆଦି

ଥଣ୍ଡା ଅଞ୍ଚଳକୁ ଏବଂ ଶୀତଦିନେ ଅପେକ୍ଷାକୃତ ଗରମ ସ୍ଥାନ ଯଥା ରାଜସ୍ଥାନ ବା ଦକ୍ଷିଣ ଭାରତକୁ ଟୁର୍ କରାଯାଇଥାଏ । ତେଣୁ ଗ୍ରୀଷ୍ମ ଓ ଶୀତର ପ୍ରକୋପକୁ ଆମେ ଅନାୟାସରେ ଟାଳିଦେଉ । ଏହାଛଡ଼ା ଯେତେ ସମୟ ଡେରାଡୁନ୍‌ରେ ରହିବାକୁ ପଡ଼େ, ସେ ସମୟରେ ଏଠିକାର ଜଳବାୟୁ ବେଶ୍ ପ୍ରୀତିକର ଓ ଉପଭୋଗ୍ୟ ହୋଇଥାଏ । ଦୁଇବର୍ଷର ଟ୍ରେନିଂ ସମୟ ମଧ୍ୟରୁ ପ୍ରାୟ ଆଠ ମାସରୁ ଅଧିକ ସମୟ ଟୁର୍ ବା ଭ୍ରମଣରେ କଟିଯାଏ । ଉତ୍ତର ଭାରତ, ଦକ୍ଷିଣ ଭାରତ, ମଧ୍ଯ ଭାରତ, ପୂର୍ବ ଭାରତ ଓ ପଶ୍ଚିମ ଭାରତ ଏହିପରି ସମଗ୍ର ଭାରତ ଦର୍ଶନର ସୁଯୋଗ ଆମମାନଙ୍କୁ ପ୍ରାପ୍ତ ହୋଇଥାଏ ।

୧୯୭୫ ମସିହା ମାର୍ଚ୍ଚ ମାସରେ ଆମେ ଯେତେବେଳେ ଭାରତୀୟ ବନ ମହାବିଦ୍ୟାଳୟ ଡେରାଡୁନ୍‌ରେ ପ୍ରୋବେସନର୍ ଭାବେ ଯୋଗଦାନ କଲୁ, ସେତେବେଳେ ମିଃ ରସିଦ୍ କଲେଜର ଡିନ୍ ଥିଲେ । ସେ ବଡ଼ କଡ଼ା ମିଜାଜ୍ ଓ ଗଂଭୀର ସ୍ୱଭାବର ଲୋକ । ମୁହଁରେ ଥିବା ନିଶ ହଳକ ଯୋଗୁଁ ଆମେ ତାଙ୍କୁ ପରୋକ୍ଷରେ 'ଟାଇଗର' କହୁଥିଲୁ । ସେତେବେଳେ ଆମ ବ୍ୟାଚର ଜଣେ ଶିକ୍ଷାନବିସ ଶ୍ରୀ ବି.କେ. ମଣ୍ଡଳ ବିବାହ କରିଥିଲେ ଓ ତାଙ୍କ ପତ୍ନୀଙ୍କୁ ଆଣି କ୍ୟାମ୍ପସ ବାହାରେ ଥିବା 'ପଣ୍ଡିତ ବାଡ଼ି' ଇଲାକାରେ ଗୋଟିଏ ଭଡାଘରେ ରଖିଥିଲେ । ଶ୍ରୀ ମଣ୍ଡଳ ରାତିରେ ହଷ୍ଟେଲ୍‌ରେ ନରହି ପତ୍ନୀଙ୍କ ପାଖକୁ ଚାଲି ଯାଉଥିଲେ । ଏକଥା ଜାଣିପାରି ମିଃ ରସିଦ୍ ତାଙ୍କୁ କଡ଼ା ତାଗିଦ୍ କରିବା ସଂଗେ ସଂଗେ ରାତିରେ ହଷ୍ଟେଲ୍ ଛାଡ଼ି ନଯିବା ପାଇଁ 'ମେମୋ' ଇସ୍ୟୁ କରିଦେଲେ । ସେ ସମୟରେ ସାମାନ୍ୟ କଥାରେ ଆମ୍ଭମାନଙ୍କୁ ମେମୋ ଦିଆଯାଉଥିଲା ଏବଂ କଣ୍ଡକ୍ଟ ମାର୍କ ଦେଲାବେଳକୁ ସେ ସବୁକୁ ବିଚାରକୁ ନେଇ ମାର୍କ କମେଇ ଦିଆଯାଉଥିଲା । ମେମୋ ମିଳିବା ପରେ ମିଃ ମଣ୍ଡଳଙ୍କ ଅବସ୍ଥା କହିଲେ ନସରେ । ବିଚରା ଏଠି ହଷ୍ଟେଲ୍‌ରେ ଏକାଏକା ରହୁଥିଲା, ସେଠି ଭଡ଼ାଘରେ ପତ୍ନୀ ଏକାଏକା ରାତ୍ରୀଯାପନ କରୁଥିଲେ ।

କିଛିମାସ ପରେ ମିଃ ରସିଦ୍ ଡିନ୍ ପଦବୀରୁ ଅବସର ନେଲାପରେ ମିଃ ଧର୍ମବୀର କକ୍‌କଡ଼ ସେହି ପଦବୀ ଅଳଂକୃତ କଲେ । ସେ ବେଶ୍ ମେଳାପୀ, ଛାତ୍ରବତ୍ସଳ ଏବଂ ହସଖୁସି ମିଜାଜ୍‌ର ଥିଲେ । ସେ ଆସିଲା ପରେ ମିଃ ମଣ୍ଡଳଙ୍କୁ କ୍ୟାମ୍ପସ କାର୍ଯ୍ୟକ୍ରମ ସରିଲା ପରେ ବାହାରେ ପତ୍ନୀଙ୍କ ସହ ରହିବା ପାଇଁ ଅନୁମତି ମିଳିଲା । ଏହାପରେ ସବୁଦିନ ସକାଳ ୬ଟାବେଳକୁ ପିଟି କ୍ଲାସକୁ ଗଲାବେଳକୁ ଧଳା ହାଫ୍ ପ୍ୟାଣ୍ଟ୍ ଓ ସ୍ପୋର୍ଟସ୍ ବାନିୟନ୍ ପିନ୍ଧି, ସାଇକେଲ୍ ଚଳାଇ, ଟ୍ରେଭର ରୋଡ଼୍ ଗେଟ୍ ଦେଇ ମିଃ ମଣ୍ଡଳଙ୍କର କ୍ୟାମ୍ପସ ଭିତରକୁ ପ୍ରବେଶ କରିବା ଆମପାଇଁ ଏକ ନିତିଦିନିଆ ଦୃଶ୍ୟ ଥିଲା ।

ମିଃ କକ୍‌କଡ଼ଙ୍କର ପିତୃସୁଲଭ ସ୍ନେହ ଓ ଛାତ୍ର ବତ୍ସଳତା କିଛି ଦିନ ଭିତରେ ବେଶ୍ ବାରିହୋଇ ପଡ଼ିଲା । ଟିଚିଙ୍ଗ୍ ଷ୍ଟାଫ୍ ଓ ଆମମାନଙ୍କ ଭିତରେ ଯେଉଁ ଦୂରତା ରହିଥିଲା, ତାହା କ୍ରମଶଃ କମିବାକୁ ଲାଗିଲା । ଏହା ସତ୍ତ୍ୱେ ବି ଶୃଙ୍ଖଳା, ସମୟାନୁବର୍ତ୍ତିତା ବଜାୟ ରଖିବାରେ ସେ ବେଶ୍ ଦୃଢ଼ଥିଲେ । ବିଶେଷକରି ବିଭିନ୍ନ କାର୍ଯ୍ୟରେ ଅଂଶଗ୍ରହଣ ସମୟରେ ନିର୍ଦ୍ଦିଷ୍ଟ ଡ୍ରେସ୍ କୋଡ ମୁତାବକ ଡ୍ରେସ୍ ପରିଧାନ କରିବାରେ ଏବଂ ସମୟ ନିର୍ଘଣ୍ଟ ଅନୁସାରେ, ରାତ୍ରୀରେ ହଷ୍ଟେଲ୍‌କୁ ଫେରିବା ଉପରେ ସେ ବେଶ୍ ଗୁରୁତ୍ୱ ଦେଉଥିଲେ । ଏକଦା ଆମେ ପାଞ୍ଚଜଣ ବଂଧୁ : ମୁଁ, ପାଣ୍ଡେଜୀ, ଗାଙ୍ଗୁଲି, ଜକାତି ଓ ପ୍ରଧାନ ସଂଧ୍ୟା ପରେ ଡିନର୍ ଜ୍ୟାକେଟ୍ ପିନ୍ଧି ମିଃ କକ୍‌କଡ଼ଙ୍କ ଘରକୁ 'କଲ୍‌ଅନ୍' କରିବାକୁ ଯାଇଥିଲୁ । ଆମକୁ ଉପଯୁକ୍ତ ପୋଷାକ ପରିଧାନ କରିଥିବାର ଦେଖି ଶ୍ରୀ କକ୍‌କଡ଼ ଏତେ ଖୁସି ହୋଇ ଯାଇଥିଲେ ଯେ, ତାଙ୍କ ଘରକୁ ସେହି ସମୟରେ ବୁଲି ଆସିଥିବା ଜଣେ ଆର୍ମି ମେଜରଙ୍କୁ ସେ ଆମ୍ଭମାନଙ୍କୁ ଫରେଷ୍ଟ ସର୍ଭିସ୍‌ର ପାଞ୍ଚଜଣ ବ୍ରିଲିଆଣ୍ଟ ଅଫିସର୍ ବୋଲି ପରିଚୟ କରେଇ ଦେଇଥିଲେ ।

ହୁଏତ ବ୍ରିଲିଆଣ୍ଟ ହୋଇପାରୁ, କିନ୍ତୁ ସତରେ କ'ଣ ଆମେ ଦାୟିତ୍ୱ ସଂପନ୍ନ, ସୁଯୋଗ୍ୟ ଅଫିସର ଟ୍ରେନି ଥିଲୁ ? ବରଂ ଆଚାର ବ୍ୟବହାର, ଚାଲିଚଳଣରେ ଆମେ ବେଶ୍ କିଛି ବର୍ଷ ପଛକୁ ଫେରିଯାଇଥିଲୁ । ଫେରିଯାଇଥିଲୁ ଚାରିବର୍ଷ ତଳେ ଛାଡ଼ି ଆସିଥିବା କଲେଜ ଦିନର ଛାତ୍ର ଜୀବନକୁ । କ୍ଲାସ ମିସ୍ କରିବା, କ୍ଲାସ ଚାଲିବା ସମୟରେ ପଛ ବେଞ୍ଚରେ ବସି ଆଇ.ଏ.ଏସ୍. ପାଇଁ ପ୍ରସ୍ତୁତି କରିବା, ଅଫିସର୍ସ ମେସରେ ଡ୍ରେସ୍ କୋଡ଼୍‌କୁ ନମାନିବା, ରାତି ନଅଟା ପରେ ସିନେମାଦେଖି ଟାଉନ୍‌ରୁ ହଷ୍ଟେଲ୍‌କୁ ଫେରିବା ଏବଂ ନିଷିଦ୍ଧ ଦିନମାନଙ୍କରେ (ସୋମବାରରୁ ଶୁକ୍ରବାର ପର୍ଯ୍ୟନ୍ତ) ଖେଳ ସରିବା ପରେ ପରେ ସିଧାସଳଖ ପଲଟନ୍ ବଜାର ମାର୍କେଟ୍‌କୁ ଯାଇ ପଇଁତରା ମାରିବା-ଏସବୁ ଥିଲା ଆମର ଅଧିକାଂଶ ଦିନର ଅଲିଖିତ କାର୍ଯ୍ୟସୂଚୀ । କିନ୍ତୁ ଧରା ପଡ଼ିଲେ, ପ୍ରୋଫେସର୍ ମାନଙ୍କୁ 'ମେମୋ' ଜାରି କରିବାର ଯେଉଁ ପ୍ରଥା ରହିଥିଲା, ତାହାକୁ ଆମେ ସମସ୍ତେ ମୂଳରୁ ନାପସନ୍ଦ କରୁଥିଲୁ ଏବଂ ସ୍ଥଳବିଶେଷରେ ବିରୋଧ ମଧ୍ୟ ପ୍ରକଟ କରୁଥିଲୁ ।

ଏମିତି ଏକ ଅଘଟଣ ଘଟିଥିଲା ରାଜସ୍ଥାନ ଟୁର୍ ସମୟରେ । ରାଜସ୍ଥାନର ଜୟପୁର ସହରର ତିନି ଦିନର ରହଣି ପରେ ଆମେ ଯାଇଥିଲୁ ଆଜମେର । ସେଠି ଗୋଟିଏ ହୋଟେଲ୍‌ରେ ଆମମାନଙ୍କର ରହିବା ବନ୍ଦୋବସ୍ତ ହୋଇଥାଏ । ସେହି ହୋଟେଲ୍‌ର ଅନ୍ୟ

ଏକ ପାର୍ଶ୍ୱରେ ବିବାହ ଉତ୍ସବରେ ଯୋଗ ଦେବାକୁ ଆସିଥିବା କନ୍ୟାଯାତ୍ରୀ ଦଳ ମଧ୍ୟ ଅବସ୍ଥାନ କରୁଥାନ୍ତି । ସୁନ୍ଦରୀ ଝିଅମାନଙ୍କୁ ଦେଖିଲେ ପୁଅମାନଙ୍କ ଅବସ୍ଥା ଯାହା ହେବା କଥା । ରାତି ଦ୍ୱିତୀୟ ପ୍ରହର ପର୍ଯ୍ୟନ୍ତ ଆମଦଳ ଓ ଝିଅମାନଙ୍କ ମଧ୍ୟରେ ଅଘୋଷିତ କବାଲି ଚାଲିଥାଏ । ବେଳେ ବେଳେ ଅନ୍ତାକ୍ଷରୀ ମଧ୍ୟ । ଆମେ ଏପଟୁ ଫିଲ୍ମ ଗୀତଟିଏ ଗାଇଲେ, ସେମାନେ ମଧ୍ୟ ଫିଲ୍ମ ଗୀତରେ ତା'ର ପ୍ରତ୍ୟୁତ୍ତର ଦେଉଥାନ୍ତି । ପରିଶେଷରେ ଏହି ଗୀତ ଆସରର ବିଳମ୍ବିତ ପ୍ରହରରେ ଆମେ ଯେବେ ବିଦାୟ ନେଇ ଶୋଇବାକୁ ଚାହିଁଲୁ, ଝିଅମାନେ ସେତେବେଳେ ଗାଇଥିଲେ;

'ଚଲ୍‌ତେ ଚଲ୍‌ତେ ମେରା ୟେ ଗୀତ୍ ୟାଦ୍ ରଖନା
କଭି ଅଲବିଦା ନ କହନା ।'

ବିଦାୟ କାଳୀନ ସଂଗୀତର ମାଦକଭରା ପରିପୂର୍ଣ୍ଣତା ଜନିତ ରାତ୍ରୀର ସୁନିଦ୍ରା ପରେ ପରଦିନ ସକାଳେ ଏକ ଅଘଟଣ ଆମପାଇଁ ଅପେକ୍ଷା କରିଥିଲା । ଆମେ ପୂର୍ବାହ୍ଣରେ ଆଜମେର୍ ସହର ପରିଭ୍ରମଣ କରୁଥିଲୁ । ସେଠି ଏକ ସାମାନ୍ୟ କଥାକୁ ନେଇ ଜଣେ ପ୍ରୋବେସନର୍‌ଙ୍କୁ 'ମେମୋ' ଦିଆଗଲା । କଥାଟା ଏତେ ସାଧାରଣ ଥିଲା ଯେ ତାହାକୁ ସହଜରେ ଏଡାଇ ଦିଆଯାଇପାରିଥାନ୍ତା, କିନ୍ତୁ ଦୁର୍ଭାଗ୍ୟକୁ ଯେଉଁ ଦୁଇଜଣ ଇନ୍‌ଷ୍ଟ୍ରକ୍‌ଟର ଶ୍ରୀଯୁକ୍ତ ଚୌଧୁରୀ ଏବଂ ଶ୍ରୀଯୁକ୍ତ ଖର୍ବନ୍ଦ୍ରା ଆମ ସହିତ ଯାଇଥିଲେ, ଉଭୟ ବିଗତ ବର୍ଷମାନଙ୍କର କଡା ଶାସନ ଡାଞ୍ଚାକୁ ଯେମିତି ଜାବୁଡ଼ି ଧରିଥିଲେ । ସେ ଦୁହିଁଙ୍କ ନିମନ୍ତେ ରାସ୍ତା କଡ଼ରେ ପରିସ୍ରା କରିବା ମଧ୍ୟ ଏକ ଗର୍ହିତ ଅପରାଧ ଥିଲା ଓ ଯାହାର ପରିଣତି ହେଲା 'ମେମୋ' ପ୍ରଦାନ କରିବା । ମିଃ କକ୍‌କଡ଼ଙ୍କ ଠିକଣାରେ ସମସ୍ତ ବିଷୟ ବର୍ଣ୍ଣନା କରି ଏକ ଟେଲିଗ୍ରାମ କଲୁ । ଡିନ୍ ସାହେବ ବୋଧେ ଆମ ଟେଲିଗ୍ରାମ୍‌କୁ ଗୁରୁତ୍ୱ ସହକାରେ ବିଚାର କଲେ ଏବଂ ତହିଁ ପରଦିନ ଅଧାରୁ ଟୁର୍ ବାତିଲ୍ କରି ଆମମାନଙ୍କୁ ଡେରାଡୁନ୍ ଫେରାଇ ଆଣିଥିଲେ ।

ଅନ୍ୟ ଯେଉଁଏକ ପ୍ରଚଳିତ ନିୟମ ବିରୁଦ୍ଧରେ ଆମେ ବେଳେବେଳେ ନୀରବ ପ୍ରତିବାଦର ସ୍ୱର ଉତ୍ତୋଳନ କରୁଥିଲୁ ବା ପ୍ରଥାଟିକୁ ପ୍ରକାରାନ୍ତରେ ପରିହାସ କରୁଥିଲୁ, ତାହା ହେଉଛି 'ହେଡ କାଉଣ୍ଟିଂ' ବା ମୁଣ୍ଡ ଗଣତି । ଟୁର୍‌ରେ ଯିବା ଅବସରରେ, ବସ୍‌ରେ ବସିଲା ପୂର୍ବରୁ ସମସ୍ତ ଶିକ୍ଷାନବିସଙ୍କୁ ଲାଇନ୍‌ରେ ଠିଆ କରେଇ ମୁଣ୍ଡଗଣତି କରାଯାଉଥିଲା ଏବଂ ବସ୍‌ରେ ବସିସାରିଲା ପରେ ପୁନର୍ବାର ମୁଣ୍ଡ ଗଣତି କରାଯାଉଥିଲା । ହାଉସ୍‌ର ଡ୍ୟୁଟି

ଅଫିସର୍ ଉପରେ ଏହି ଦାୟିତ୍ୱ ନ୍ୟସ୍ତଥାଏ । ବସ୍‌ରୁ ଯେତେଥର ଓହ୍ଲେଇବାର ହୋଇଥାଏ, ପୁନଶ୍ଚ ସମସ୍ତେ ବସ୍ ଆରୋହଣ କଲାପରେ ମୁଣ୍ଡ ଗଣତି ଆରମ୍ଭ ହୋଇଯାଏ । ଏହାକୁ ଏକ ଅନାବଶ୍ୟକ ବୋରିଙ୍ଗ୍ ପ୍ରକ୍ରିୟା ମନେ କରି ବେଳେବେଳେ ଆମେ ଜୋକ୍ ଓ କମେଣ୍ଟ କରୁଥିଲୁ । କିନ୍ତୁ ଥରକର ଅନୁଭୂତି ଆମର ଏହି ସଂକୀର୍ଣ୍ଣ ଚିନ୍ତାଧାରାକୁ ପୂରାପୂରି ବଦଳେଇ ଦେଇଥିଲା ।

ସେଥର ଆମେ 'ରୋଡ୍ ଆଲାଇନ୍‌ମେଣ୍ଟ' ଟୁର୍‌ରେ 'ମୋହଣ୍ଡ' ଜଙ୍ଗଲକୁ ଯାଇଥାଉ । ପାହାଡ଼ ଉପରେ ଘାଟି ରାସ୍ତା ନିର୍ମାଣ କରିବା ପାଇଁ ଏହି ଟୁର୍‌ରେ ପ୍ରଶିକ୍ଷଣ ଦିଆଯାଇଥାଏ । ସାତ ଦିନର କ୍ୟାମ୍ପ । ଜଙ୍ଗଲରେ ତମ୍ବୁ ପକାଇ ପ୍ରତ୍ୟେକ ତମ୍ବୁରେ ଦୁଇଜଣ ହିସାବରେ ରହିଥାଉ । ସେଥର ଟୁର୍‌ରେ ଆମ ସହିତ ତିନିଜଣ ବେଙ୍ଗଲୀ ଅଫିସର ମଧ୍ୟ ଥାନ୍ତି । ଗାଙ୍ଗୁଲି, ଗାଏନ୍ ଏବଂ ବି.କେ. ମଣ୍ଡଳ । ଦିନେ ଜଙ୍ଗଲରେ ଯାଉଥିବା ବେଳେ ଗୋଟିଏ ଛୋଟ ଖାଲୁଆ ଜାଗାରେ କିଛି ପାଣି ଜମିଥିବାର ଓ ସେଥିରେ ଅନେକ ଛୋଟ ମାଛ ଖେଳୁଥିବାର ଦେଖିବାକୁ ମିଳିଲା । ମାଛ ଦେଖି ବେଙ୍ଗଲୀ ପ୍ରୋବେସନ୍‌ରମାନଙ୍କ ଆନନ୍ଦ କହିଲେ ନ ସରେ । ସଂଗେ ସଂଗେ ସବୁକାମ ଛାଡ଼ି ଗୋଟିଏ ଗାମୁଛା ଯୋଗାଡ଼ କରି ଖାଲୁଆ ଜମିରୁ ପାଣି ଉଝାଳିବାକୁ ଲାଗିଗଲେ । ଆମେ ଦୁଇଜଣ ଓଡ଼ିଆ ଅଫିସର୍ ମଧ୍ୟ ସେମାନଙ୍କ ସହ ସହଯୋଗ ଦେଲୁ । ପ୍ରାୟ ଦୁଇଘଣ୍ଟାର ପରିଶ୍ରମ ପରେ ପାଣି ଶୁଖିଗଲା, ସେଠାରୁ ପ୍ରାୟ ଦୁଇ କିଲୋ ଚୂନାମାଛ ମିଳିଥିଲା । ମେସ୍‌ର ରୋଷେୟାକୁ କହି ମାଛ ଭାଜି ଅନେକ ଦିନ ପରେ ଭଜା ମାଛର ସ୍ୱାଦକୁ ଆମେ କେତେଜଣ ବେଙ୍ଗଲୀ ଏବଂ ଓଡ଼ିଆ ପିଲା ବେଶ୍ ମନଭରି ଉପଭୋଗ କରିଥିଲୁ ।

'ମୋହଣ୍ଡ'ରୁ ଫେରିବା ସମୟରେ ଅଚାନକ ପାହାଡ଼ୀ ରାସ୍ତାରେ ଲ୍ୟାଣ୍ଡ ସ୍ଲାଇଡ ହୋଇ ମାଟି ଧସିଯାଇଥିବାର ଏବଂ ରାସ୍ତା ବନ୍ଦ ହୋଇଥିବାର ଦେଖାଗଲା । ଅଗତ୍ୟା ଆମ ବସ୍ ଏପଟେ ଅଟକି ରହିଲା ଓ ଡେରାଡୁନ୍‌ରୁ ଅନ୍ୟ ଏକ ବସ୍ ମଗାଗଲା । ଅପରପଟୁ ବସ୍ ଆସି ପହଞ୍ଚିଲାବେଳକୁ ବେଳ ରତରତ । ଏପଟ ବସ୍‌ରୁ ଓହ୍ଲେଇ, ବର୍ଷାରେ ପାହାଡ଼ରୁ ମାଟି ଧସିଯାଇଥିବା ମସୃଣ, ପିଚ୍ଛିଳ ଅଂଶକୁ ଧୀରେ ଧୀରେ ପାଦରେ ଚାଲି ଅତିକ୍ରମ କରି, ଆରପଟ ବସ୍‌ରେ ଯାଇ ବସିଲୁ । ସମସ୍ତେ ବସ୍‌ରେ ବସି ସାରିବା ପରେ ଚିରାଚରିତ ପ୍ରଥାରେ ମୁଣ୍ଡଗଣତି ଆରମ୍ଭ ହେଲା । ଦେଖାଗଲା ଦୁଇଥର ଗଣିବା ସତ୍ତ୍ୱେ ନିର୍ଦ୍ଦିଷ୍ଟ ସଂଖ୍ୟାଠାରୁ ସବୁବେଳେ ଜଣେ କମ୍ ରହୁଛି । ଶାନ୍ତ, କ୍ଲାନ୍ତ ପ୍ରୋବେସନ୍‌ରମାନେ

ଯେତେ କହିଲେ ବି; ହଁ ସମସ୍ତେ ଆସିଗଲେ, ବସ୍ ଛାଡ଼ୁ, ଆମ ଇନ୍‌ଷ୍ଟ୍ରକ୍ଟରମାନେ କିନ୍ତୁ ନଛୋଡ଼ବନ୍ଧା । ଏଭଳି ଟୁର୍‌ମାନଙ୍କରେ ଦୁଇ ଦୁଇଜଣଙ୍କୁ ସାଥୀ କରି ଦିଆଯାଇଥାଏ । ଅର୍ଥାତ୍ ପ୍ରତ୍ୟେକ ପ୍ରତ୍ୟେକଙ୍କର ସହାୟକ । ଟେଣ୍ଟରେ ଏକାଠି ରହିବାଠାରୁ ଆରମ୍ଭ କରି ସବୁ ସମୟରେ ଜଣେ ଅନ୍ୟଜଣଙ୍କର ଦାୟିତ୍ୱ ବୁଝିବା କଥା । ଏହି ଆଧାରରେ କିଛି ସମୟ ଖୋଳତାଡ଼ ପରେ ଜନୈକ ଅଫିସର ଜଣାଇଲେ, ତାଙ୍କର ସାଥୀ ମିଃ ଶ୍ରୀବାସ୍ତବ ନାହାନ୍ତି । ଭାଲେଣି ପଡ଼ିଗଲା । ଇନ୍‌ଷ୍ଟ୍ରକ୍ଟର, ଡ୍ୟୁଟି ଅଫିସର୍, ବସ୍‌କର୍ମଚାରୀ ଓ ଅନ୍ୟ ଚାରି ପାଞ୍ଚଜଣ ଶିକ୍ଷାନବିସ ଦୁଇଟି ବଡ଼ ବଡ଼ ପାଞ୍ଚସେଲିଆ ଟର୍ଚ୍ଚଧରି ଅନୁସନ୍ଧାନରେ ବାହାରିଲେ । ସେତେବେଳକୁ ପାହାଡ଼ କାନ୍ଥିରେ ଅଂଧାର ବହଳ ହୋଇ ଆସିଲାଣି । କିଛି ସମୟ ପାଖ ଆଖ ଅଂଚଳରେ ହୁଇସିଲ୍ ମାରି ଓ ଶ୍ରୀବାସ୍ତବଙ୍କ ନାଁ ଧରି ବଡ଼ପାଟିରେ ଡାକିଲା ପରେ ଏକ କ୍ଷୀଣ ଜବାବ୍ ଦୂରରୁ ଆସିଲା ପରି ଜଣାଗଲା । ଜବାବ ଆସୁଥିବା ଶବ୍ଦକୁ ଅନୁସରଣ କରି ଟର୍ଚ୍ଚ ଆଲୁଅରେ ଖୋଜିବାରୁ ଦେଖାଗଲା, ମିଃ ଶ୍ରୀବାସ୍ତବ ଲ୍ୟାଣ୍ଡ ସ୍ଲାଇଡ୍ ଅତିକ୍ରମ କଲାବେଳେ ହୁଏତ ଅନ୍ୟମନସ୍କତା ହେତୁ ବା ଅଂଧାର ହେତୁ ଘାଟି ତଳକୁ ଖସି ପଡ଼ିଛନ୍ତି; କିନ୍ତୁ ସୌଭାଗ୍ୟବଶତଃ ଗୋଟିଏ ଉପୁଡି ଯାଇଥିବା ଗଛଚେର ତାଙ୍କ ହାତରେ ପଡ଼ିଯିବାରୁ ତାକୁ ଧରି ଲଟକି ରହିଛନ୍ତି । ଠାବ ହେଲାପରେ ବସ୍‌ରେ ଥିବା ମୋଟା ଦଉଡି ସାହାଯ୍ୟରେ, ବହୁ କଷ୍ଟରେ ତାଙ୍କୁ ଉପରକୁ ଉଠାଗଲା । ରାତି ପ୍ରାୟ ଆଠଟା ବେଳକୁ ଆମ ବସ୍ ଡେରାଡୁନ୍ ଅଭିମୁଖେ ଛାଡ଼ିଲା । ଏହି ଘଟଣା ପରେ, ଆମେ ଅନୁଭବ କଲୁ ଯେ, ଟ୍ରେନିଂ ସମୟରେ ପାଳନ କରାଯାଉଥିବା ପ୍ରତ୍ୟେକଟି ପରଂପରା ବା ପ୍ରଥାର କିଛିନା କିଛି ଉଦ୍ଦେଶ୍ୟ ରହିଛି । ସେ ଦିନର 'ହେଡକାଉଣ୍ଟିଂ'ର ମହତ୍ତ୍ୱ ଆମେ ଅନୁଭବ କରିପାରିଲୁ । ଯଦି ଠିକ୍ ସମୟରେ ମୁଣ୍ଡଗଣତି ହୋଇନଥାନ୍ତା, ତାହେଲେ ଆମେ ହୁଏତ ସମସ୍ତେ ଠିକ୍‌ଠାକ୍ ଆସିଛନ୍ତି ଭାବି ଚାଲି ଆସିଥାନ୍ତୁ । କିନ୍ତୁ ଶୀତକାକରରେ, ପାହାଡ ଖୋଲରେ ଆଧା ଉପୁଡି ପଡିଥିବା ଗଛ ଚେରକୁ ଧରି ଲଟକି ରହିଥିବା ଅବସ୍ଥାରେ ଯେବେ ଶ୍ରୀବାସ୍ତବଙ୍କର ହାତର ଶକ୍ତି ଦୁର୍ବଳ ହୋଇ ଯାଇଥାଆନ୍ତା ସେତେବେଳେ ଗଭୀର ଗର୍ତ୍ତ ଭିତରକୁ ଖସିପଡ଼ି ନିଶ୍ଚିତ ଭାବେ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥାଆନ୍ତା । ସାମାନ୍ୟ ମୂଲ୍ୟବୋଧ ପାଇଁ ଆମକୁ ଏକ ମୂଲ୍ୟବାନ ଜୀବନ ହରାଇବାକୁ ପଡ଼ିଥାନ୍ତା ।

ଦୁଇବର୍ଷର ଟ୍ରେନିଂ ସମୟ ଭିତରେ ଆମ୍ଭମାନଙ୍କୁ ପ୍ରାୟ ୩୪ଟି ବିଷୟରେ ପ୍ରଶିକ୍ଷଣ ଦିଆଯାଉଥିଲା । କ୍ଲାସ୍‌ରୁମ୍ ଟିଚିଙ୍ଗ୍, ଶନିବାରର ଫିଲଡ୍ ଏକ୍ସକରସନ୍, ପିଟି ଏବଂ ଗେମ୍‌ସକୁ ଛାଡ଼ିଦେଲେ, ଅନ୍ୟ ଯେଉଁ ତିନୋଟି ଆଉଟ୍ ଡୋର ଆକ୍ଟିଭିଟି ଉପରେ ଆମକୁ

ଦକ୍ଷତା ହାସଲ କରିବାକୁ ପଡୁଥିଲା, ସେ ଗୁଡ଼ିକ ହେଉଛି ରାଇଫଲ୍ ସୁଟିଙ୍ଗ୍, ସୁଇମିଙ୍ଗ୍ ଏବଂ ହର୍ସ ରାଇଡିଙ୍ଗ୍ । ଏ ସମସ୍ତ ଟ୍ରେନିଂ ଆମକୁ ଇଣ୍ଡିଆନ୍ ମିଲିଟାରୀ ଏକାଡେମୀରେ ନେବାକୁ ପଡୁଥିଲା । ଏକାଡେମୀ ପ୍ରଶିକ୍ଷକମାନେ ଥିଲେ ହାବିଲ୍‌ଦାର ର୍‌ୟାଙ୍କ୍‌ର । ସେମାନେ ଆମକୁ 'ସାର୍' ସଂବୋଧନ କରି ଯଥେଷ୍ଟ ଭଦ୍ର ବ୍ୟବହାର ଦେଖାଉଥିଲେ । କିନ୍ତୁ ପ୍ରଶିକ୍ଷଣ ସମୟରେ କ୍ୟାଡେଟ୍ ଶିକ୍ଷାର୍ଥୀମାନଙ୍କ ପରି ବ୍ୟବହାର ଦେଖାଇବାକୁ ମଧ୍ୟ ପଛଉନଥିଲେ । ସୁଇମିଙ୍ଗ୍ ଟ୍ରେନିଂ ସମୟରେ ଏପରି ଏକ ଅନୁଭୂତି ଏବେ ବି ମୋର ମନେ ପଡ଼ିଯାଏ ।

ଟ୍ରେନିଂ ଆରମ୍ଭଦିନ ସୁଇମିଙ୍ଗ୍ ପୁଲ୍‌ର ଗଭୀର ପାଣିଥିବା ପଟେ ଆମମାନଙ୍କୁ ଲାଇନ୍ କରି ଛିଡା କରେଇ ଦିଆଗଲା । ହାବିଲ୍‌ଦାର ମହାଶୟ ଏକ, ଦୁଇ, ତିନି ଗଣି ହୁଇସିଲ୍ ମାରିଲେ, ଆମକୁ ପାଣି ଭିତରକୁ ଡେଇଁ ପଡ଼ିବାକୁ ନିର୍ଦ୍ଦେଶ ଦିଆଗଲା । ମୁଁ ଆଦୌ ପହଁରା ଜାଣିନଥିଲି । ପିଲାଦିନେ ଥରେ ପାଣିରେ ବୁଡ଼ି ଯାଉ ଯାଉ ଅଳ୍ପକେ ରକ୍ଷା ପାଇଯାଇଥିବାର ଅନୁଭୂତି ମଧ୍ୟ ମୋର ଥିଲା । ସେତେବେଳେ ମୁଁ ପ୍ରାୟ ଦଶ, ଏଗାର ବର୍ଷର ହୋଇଥାଏ । ମୋର ମାମୁଘର ଗାଁ ଖୋର୍ଦ୍ଧା ନିକଟସ୍ଥ କଲ୍ୟାଣପୁର । ବୋଉ ଓ ମୁଁ ସେଠାକୁ ଯାଇଥାଉ । ସେଠି କେତେଜଣ ସମବୟସ୍କ ସାଙ୍ଗ ମୋତେ ପୋଖରୀରେ ଗାଧୋଇବାକୁ ଡାକି ନେଇଗଲେ । ପୋଖରୀରେ ଗୋଟିଏ କାଠ ଗଣ୍ଡି ଉପରେ ବସି, ଗୋଡରେ ଆହୁଲା ମାରି ନାଆରେ ଗଲାପରି ଆମେ ପୋଖରୀ ମଝିକୁ ଚାଲିଲୁ । ହଠାତ୍ ପୋଖରୀ ମଝିରେ କାଠଗଣ୍ଡିଟି ଓଲଟି ପଡ଼ିଲା ଏବଂ ପହଁରା ଜାଣିନଥିବାରୁ ଗଭୀର ଜଳରେ ମୁଁ ବୁଡ଼ିଯିବାକୁ ଲାଗିଲି । ମୋ ସହିତ ଥିବା ଅନ୍ୟ ଦୁଇଜଣ ପିଲା କିନ୍ତୁ ପହଁରା ଜାଣିଥିଲେ ଏବଂ ସେମାନେ ଯତ୍‌ପରୋନାସ୍ତି ଚେଷ୍ଟାକରି ମୋତେ ଅଗଭୀର ପାଣିରୁ ଟାଣି ଆଣିଲେ । ମୋର ଗୋଡ଼ ମାଟିରେ ଲାଗିବାରୁ ମୁଁ ଆଶ୍ୱସ୍ତ ହୋଇ ନିଃଶ୍ୱାସ ମାରିଲି । ସେତେବେଳେ ବୋଉକୁ ବା ଅନ୍ୟ କାହାକୁ ଏ ଦୁର୍ଘଟଣା ବିଷୟରେ କିଛି କହି ନଥିଲି ।

ପିଲାଦିନର ଏକଥା ମନେପଡ଼ି ଭୟ ଲାଗିବାରୁ ହାବିଲ୍‌ଦାର ଏକ, ଦୁଇ, ତିନି କହି ହୁଇସିଲ୍ ମାରିବା ସତ୍ତ୍ୱେ ମୁଁ ପାଣିକୁ ଡେଇଁ ନଥିଲି । ଏତିକିବେଳେ ପଛରୁ କାହାର ଏକ ଗଳା ଧକ୍‌କା ମୋତେ ପାଣିକୁ ଠେଲି ଦେଲା । ଜୀବନ ବିକଳରେ ପାଣିରେ ହାତ, ପାଦ ଛାଟି ଆକଟା ମାକଟା ହୋଇ ଅବଶ ହୋଇ ପଡ଼ିଲା ବେଳକୁ ହାବିଲ୍‌ଦାର ଗୋଟେ ମୋଟା ଦଉଡ଼ି ମୋ ନିକଟକୁ ପକାଇ ମୋତେ କଡ଼ ପଟକୁ ଭିଡି ଆଣିଲେ । ପରେ ବୁଝିଲି, ମିଲିଟାରୀ ଏକାଡେମୀରେ ସୁଇମିଙ୍ଗ୍ ଟ୍ରେନିଂ ଦେବାର ଏହା ଏକ ତରିକା ।

ଏକାଡେମୀରେ ଘୋଡାଚଢ଼ା ଟ୍ରେନିଂ ସମୟରେ ଏକ ବିରଳ ଅନୁଭୂତି ମଧ୍ୟ ଏବେ ବି ତିରିଶ ବର୍ଷ ପରେ ମନେ ରହିଛି । ଘୋଡ଼ା ଚଢ଼ିବା ସମୟରେ ଆମେ ରବର ଜୋତା, ଖାକି ଫୁଲ୍ ପ୍ୟାଣ୍ଟ୍, ଫୁଲସାର୍ଟ ଓ ଖାକି ରଂଗର ସୋଲ ଟୋପି ପିନ୍ଧୁଥିଲୁ । ମିଲିଟାରୀ ଏକାଡେମୀରେ ଟ୍ରେନିଂ ଉଦ୍ଦେଶ୍ୟରେ ରଖାଯାଇଥିବା ଘୋଡ଼ା ଗୁଡ଼ିକ ବେଶ୍ ସୁସ୍ଥ, ସବଳ ଏବଂ କାହାରି ଉଚ୍ଚତା ସାଢ଼େ ଚାରିଫୁଟରୁ କମ୍ ନୁହେଁ । ଘୋଡ଼ା ଉପରେ ବସିବା ପାଇଁ ଆମକୁ ପ୍ରଥମେ ଫୁଟ ଷ୍ଟେପ୍‌ରେ ବାଁ ଗୋଡ଼ ରଖି ବାଁ ହାତରେ ଘୋଡ଼ାର ଲଗାମକୁ ଧରିବାକୁ ପଡେ । ତା' ପରେ ଡାହାଣ ହାତରେ ଘୋଡ଼ା ପିଠିରେ ପଡ଼ିଥିବା ହାଉଦାକୁ ଧରି ଡାହାଣ ଗୋଡ଼ ଉଠାଇ ଏକା ଡିଆଁକେ ବସିବାକୁ ହୋଇଥାଏ । ଘୋଡ଼ା ଚାଲିବାକୁ ବା ଦୌଡ଼ିବାକୁ ଆରମ୍ଭ କଲେ ଲଗାମ ଭିଡ଼ି ଧରି ତାକୁ ଆୟତ୍ତ କରିବାକୁ ହୋଇଥାଏ । ଟ୍ରେନିଂ ଆରମ୍ଭ ହେବାର ସାତ, ଆଠ ଦିନ ପରେ ହାବିଲ୍‌ଦାର ଇନ୍‌ଷ୍ଟ୍ରକ୍ଟର ମୋ ପାଖକୁ ଆସି କହିଲେ, ଆଉ ଷ୍ଟ୍ରାପ୍‌ରେ ଗୋଡ଼ ନରଖି ଏକାଥରକେ ସିଧାସଳଖ ଡିଆଁ ମାରି ଘୋଡ଼ା ପିଠିରେ ବସ । ପ୍ରାୟ ସାଢ଼େ ଚାରିଫୁଟ ଉଚ୍ଚକୁ ଡେଇଁ ଏକା କୁଦାକେ ଘୋଡ଼ା ପିଠିରେ କିପରି ବସି ହେବ, ଏକଥା ଭାବି ମୁଁ ପ୍ରଥମେ ହଡ଼ବଡ଼େଇ ଗଲି ।

ମିଲିଟାରୀ ଆଦେଶ । ଅମାନ୍ୟ କରିବାର ଜୁ ନାହିଁ । ମୁଁ କିଛି ନଭାବି ସିଧାସଳଖ ଡେଇଁ ପଡ଼ିଲି । ମୋ ଆଚରଣରେ ବୋଧେ ଘୋଡ଼ାଟି ହୁରୁଡି ଯାଇ ଆଗକୁ ପଳେଇଲା ଏବଂ ମୁଁ ଘୋଡ଼ାର ଅପର ପାର୍ଶ୍ୱରେ ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି କଚି ହୋଇ ପଡ଼ିଲି । ସୋଲ ଟୋପି ପିନ୍ଧିଥିବାରୁ ମୁଣ୍ଡଟି ରକ୍ଷା ପାଇଗଲା, କିନ୍ତୁ ବେକରେ ରକା ପଶିଯିବାରୁ ଆଗାମୀ ତିନି ଚାରିଦିନ ପର୍ଯ୍ୟନ୍ତ ମୁଣ୍ଡ ଆଉ 'ଏପଟ ସେପଟ' ବୁଲେଇ ପାରିଲି ନାହିଁ । ଏହି ଘୋଡା ଚଢ଼ା ଶିଖିବା ଅବସରରେ ଅନ୍ୟ ଜଣେ ପ୍ରୋବେସନର୍ ଶ୍ରୀଯୁକ୍ତ ଦୀପକ ଦାସଙ୍କ ଘୋଡ଼ାରୁ ପଡ଼ି ହାତ ଭାଙ୍ଗି ଯାଇଥିଲା । ମଲ୍‌ଟିପୁଲ ଫ୍ରାକ୍‌ଚର । ପ୍ରଥମେ ଡୁନ୍ ହସ୍‌ପିଟାଲରେ ତାଙ୍କର ଅପରେସନ୍ କରାଗଲା । କିନ୍ତୁ ତାହା ସକ୍‌ସେସଫୁଲ ନ ହେବାରୁ ପରେ ସେ କଲିକତା ଯାଇ ଚିକିତ୍ସା କରାଇଥିଲେ । ପୂରା ଦୁଇମାସ ତାଙ୍କୁ ହସ୍‌ପିଟାଲ୍‌ରେ ରହିବାକୁ ପଡ଼ିଲା ।

ଏଫ୍.ଆର୍.ଆଇ. କ୍ୟାମ୍ପସ ଭିତରେ ଅନେକ ବଙ୍ଗାଳୀ ପରିବାର ଥାନ୍ତି । ସେମାନଙ୍କର ଏକ ସୋସାଇଟି ମଧ୍ୟ ଥାଏ । ଏହି ସୋସାଇଟି ତରଫରୁ ପ୍ରତିବର୍ଷ ଦୁର୍ଗାପୂଜା ଧୁମ୍‌ଧାମରେ ପାଳନ କରାଯାଏ । ପୂଜାକୁ ଓଡ଼ିଆ ପିଲାମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଏ । ଦୁଇବର୍ଷ ବ୍ୟାପୀ ଟ୍ରେନିଂ ସମୟ ଭିତରେ ଗୋଟିଏ କଥା ମୁଁ ଅନେକବାର ଲକ୍ଷ୍ୟ କରିଛି ।

ବଙ୍ଗାଳୀ ସହକର୍ମୀମାନେ (ଆମ ବ୍ୟାଚ୍‌ରେ ଚାରିଜଣ ଥିଲେ) ଆମ ସହିତ ଯେକୌଣସି ବିଷୟ କଥାବାର୍ତ୍ତା କଲେ, ବଙ୍ଗଳାରେହିଁ କରିଥାନ୍ତି, ଆମେ ବୁଝୁ ବା ନ ବୁଝୁ । ଯଦିଓ ଭାଷାର ସାଦୃଶ୍ୟ ହେତୁ ଓଡ଼ିଆମାନେ ବଙ୍ଗଳଭାଷା ବୁଝି ପାରନ୍ତି । ଓଡ଼ିଆ ପିଲା ଆମ ବ୍ୟାଚ୍‌ରେ ମାତ୍ର ଦୁଇଜଣ ଥିଲେ ବି ଏହା ଆମର ଓଡ଼ିଆ ସ୍ୱାଭିମାନକୁ ବେଶ୍ ବାଧୁଥାଏ । ତେଣୁ ମୁଁ ଓ ପ୍ରଧାନ ଦୁହେଁଯାକ ସ୍ଥିର କଲୁ, ଏଥର ସେମାନେ ଯେବେ ବଙ୍ଗଳାରେ କଥାହେବେ, ଆମେ ତା'ର ଉତ୍ତର ଓଡ଼ିଆରେ ଦେବା । ସେମାନେ ଯେପରି ବଙ୍ଗଳା ଭାଷା ବୁଝିବା ପାଇଁ ଆମଠୁ ଆଶା ରଖୁଛନ୍ତି, ସେହିପରି ସେମାନେ ମଧ୍ୟ ଆମର ଭାଷା ବୁଝନ୍ତୁ, ଏହାହିଁ ଥିଲା ଆମର ଉଦ୍ଦେଶ୍ୟ । କିନ୍ତୁ ତିରିଶ ବର୍ଷ ଅତିକ୍ରାନ୍ତ ହେଲା ପରେ ସେ ଦିନର ଆମର ସେ ଅଭିବ୍ୟକ୍ତି ଓ ଅଭୀପ୍ସାକୁ ଯଦି ସାଂପ୍ରତିକ ଓଡ଼ିଶାର ପାରିପାର୍ଶ୍ୱିକ ପରିସ୍ଥିତି ସହିତ ନିକିତି ତଉଲ କରାଯାଏ, ତେବେ ଆଜିର ଓଡ଼ିଆଙ୍କ ମନରେ ସ୍ୱାଭିମାନର ଧାରା କେତେ କ୍ଷୀଣ ଓ ସଙ୍କୁଚିତ ହୋଇ ଆସିଲାଣି, ତାହା ସହଜରେ ଅନୁମେୟ । ଏବେ ସ୍କୁଲର ଛାତ୍ରଛାତ୍ରୀଙ୍କ ପାଇଁ ହେଉଥିବା ସଭା ସମିତିରେ ଭାଷଣ ଇଂରାଜୀରେ ଦିଆଯାଉଛି । ଗାଁ ଗଣ୍ଡାରେ ହେଉଥିବା ସଭାରେ ମଧ୍ୟ ବକ୍ତାମାନେ ଇଂରାଜୀରେ କହିବାକୁ ଅଧିକ ପସନ୍ଦ କରୁଛନ୍ତି ।

ସେଦିନ ଓଡ଼ିଆ ସ୍ୱାଭିମାନକୁ ବଂଚାଇ ରଖିବାକୁ ଯାଇ ଆମେ କେତେଜଣ ଓଡ଼ିଆ ପିଲା ଡେରାଡୁନ୍‌ଠାରେ ଏକ ଓଡ଼ିଆ ସମାଜ ପ୍ରତିଷ୍ଠା ପାଇଁ ନିଷ୍ପତ୍ତି ନେଲୁ । ଆମ ବ୍ୟାଚ୍‌ର ଆମେ ଦୁଇଜଣ ଓଡ଼ିଆ ପିଲା, ଉପର ବ୍ୟାଚ୍‌ର ଜଣେ ଏବଂ ଇଣ୍ଡିଆନ୍ ମିଲିଟାରୀ ଏକାଡେମୀରୁ ମଧ୍ୟ ଦୁଇ ତିନିଜଣ ଓଡ଼ିଆ ପିଲା ବାହାରିଲେ । ପ୍ରଥମଥର ପାଇଁ ଶ୍ରୀଯୁକ୍ତ ଅହମ୍ମଦଙ୍କ ଟ୍ରେଭର ରୋଡ ସ୍ଥିତ ବାସଭବନରେ ଓଡ଼ିଆ ସମାଜ ତରଫରୁ ସରସ୍ୱତୀ ପୂଜାର ଆୟୋଜନ କରାଗଲା । ଅଏଲ୍ ଏବଂ ନ୍ୟାଚୁରାଲ ଗ୍ୟାସ୍ କମିଶନ୍ ଓ ରାୟପୁର ସ୍ଥିତ ଅର୍ଡିନାନ୍‌ସ ଫ୍ୟାକ୍‌ଟରୀରେ କାମ କରୁଥିବା କେତେକ ଓଡ଼ିଆ ଦମ୍ପତିଙ୍କୁ ଏଥିପାଇଁ ନିମନ୍ତ୍ରଣ କରାଗଲା । ପ୍ରଥମଥର ପାଇଁ ଏଫ୍.ଆର୍.ଆଇ. କ୍ୟାମ୍ପସ୍‌ରେ ପନ୍ଦରଟି ଓଡ଼ିଆ ପରିବାର ପୂଜାରେ ଏକତ୍ର ହୋଇଥିଲେ । ଶ୍ରୀମତୀ ଅହମ୍ମଦ ନିଜ ହାତରେ ରାନ୍ଧି ସାଦା ଭୋଜନରେ ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ ।

ଭାରତୀୟ ବନ ମହାବିଦ୍ୟାଳୟ ହଷ୍ଟେଲ୍‌ରେ ଧୁମ୍‌ଧାମ୍‌ରେ ପାଳନ କରାଯାଏ ଦୀପାବଳୀ ଓ ହୋଲି ଉତ୍ସବ । କ୍ୟାମ୍ପସ୍‌ରେ ରହୁଥିବା ସମସ୍ତ ବନ ବିଭାଗ ଅଫିସର ତଥା

ଫରେଷ୍ଟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟର ବରିଷ୍ଠ ବୈଜ୍ଞାନିକମାନେ ସପରିବାର ଦୁଇବ୍ୟାଚ୍‌ର ପ୍ରୋବେସନ୍‌ରମାନଙ୍କ ସହ ଏହି ପର୍ବରେ ସାମିଲ୍ ହୋଇଥାନ୍ତି । ଏହି ଅବସରରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ମାନ ଅନୁଷ୍ଠିତ ହୋଇଥାଏ । ଏ ସମସ୍ତ ଉତ୍ସବ ସମାରୋହ ସହିତ ବଙ୍ଗାଳୀ ମାନଙ୍କର ଦୁର୍ଗାପୂଜା ଏବଂ ଆମ ଓଡ଼ିଆ ସମାଜର ସରସ୍ୱତୀ ପୂଜା ଓ ଗଣେଶ ପୂଜା ମଧ୍ୟ ସାମିଲ୍ ହୋଇଯାଇଥିଲା । ସାମୟିକ ଭାବରେ ମସୌରୀସ୍ଥିତ ଲାଲ୍‌ବାହାଦୁର ଶାସ୍ତ୍ରୀ ଏକାଡେମୀରେ ମଧ୍ୟ ଅନେକ ଓଡ଼ିଆ ଅଫିସର୍ ଥିଲେ । ଆମେ ଯେବେ ୧୯୭୭ ମସିହା ମାର୍ଚ୍ଚ ମାସରେ ମସୌରୀସ୍ଥିତ ଏକାଡେମୀରେ ଚାରିମାସିଆ ଫାଉଣ୍ଡେସନ୍ ଟ୍ରେନିଂ କାର୍ଯ୍ୟକ୍ରମରେ ଯୋଗଦେଲୁ, ସେବେ ଡେରାଡୁନ୍ ଓଡ଼ିଆ ସମାଜ ପରିସର ଆହୁରି ବ୍ୟାପକ ହୋଇଗଲା ଏବଂ ଏହା ମସୌରୀ ଯାଏ ପରିବ୍ୟାପ୍ତ ହୋଇଗଲା ।

ଫାଉଣ୍ଡେସନ୍ କୋର୍ସରେ ଆଇ.ଏ.ଏସ୍.; ଆଇ.ପି.ଏସ୍., ଆଇ.ଏଫ୍.ଏସ୍, ଏବଂ ବିଭିନ୍ନ ଆଲାଏଡ ସର୍ଭିସ ଯଥା ଇନକମ୍‌ଟ୍ୟାକ୍‌ସ, ରେଲେୱେ ଓ ପୋଷ୍ଟାଲ୍ ସର୍ଭିସ୍‌ର ଅଫିସରମାନେ ଥିଲେ । ସେଠି ମଧ୍ୟ ଥିଲେ ଓଡ଼ିଆ ଭାଷା ସାହିତ୍ୟର ପ୍ରଫେସର ତତ୍‌କାଳୀନ ପ୍ରଖ୍ୟାତ କବି ଭାନୁଜୀ ରାଓ (ବର୍ତ୍ତମାନ ସ୍ୱଗତ)। କ୍ୟାଡର ଆଲଟ୍‌ମେଣ୍ଟ ଭିତ୍ତିରେ ବାହାର ରାଜ୍ୟରୁ ଓଡ଼ିଶାକୁ ଯାଉଥିବା ସର୍ବଭାରତୀୟ ସେବାର ଅଫିସ୍‌ରମାନଙ୍କୁ ସେ ଓଡ଼ିଆ ଭାଷା ଶିକ୍ଷା ଦେଉଥିଲେ । ମୁଁ ସେତେବେଳେ କିଛି କିଛି କବିତା ଲେଖୁଥିଲି । ଏହି କାରଣରୁ ଖୁବ୍ ଅଳ୍ପ ସମୟ ମଧ୍ୟରେ ଭାନୁଜୀ ରାଓଙ୍କର ପ୍ରିୟ ହୋଇଗଲି । ଏକାଡେମୀରେ ଅନୁଷ୍ଠିତ ହୋଇଥିବା ଆଞ୍ଚଳିକ ଭାଷା ସାହିତ୍ୟ ପ୍ରତିଯୋଗିତାରେ ମୋର ଓଡ଼ିଆ କବିତା 'ଜୋଛନା ଓ ସୂର୍ପଣଖା' ପ୍ରଥମ ପୁରସ୍କାର ଲାଭ କରିଥିଲା । ପ୍ରଫେସର ରାଓଙ୍କ ବ୍ୟତୀତ ଅନ୍ୟ ଯେଉଁ କେତେଜଣ ଓଡ଼ିଆ ଅଫିସର, ଓଡ଼ିଆ ସମାଜର କାର୍ଯ୍ୟକ୍ରମକୁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ପ୍ରୋତ୍ସାହନ ଯୋଗାଉଥିଲେ ସେମାନଙ୍କ ଭିତରେ ଆଇ.ଏ.ଏସ୍. ଅଫିସର ଶ୍ରୀଯୁକ୍ତ ତରୁଣକାନ୍ତି ମିଶ୍ର, ଆଇ.ପି.ଏସ୍. ଅଫିସର ଶ୍ରୀ ଅଜିତ୍ ମହାନ୍ତି, ଶ୍ରୀ ବିଧାନ ଦାସ, ଇକୋନମିକ ସର୍ଭିସ୍‌ରେ ଶ୍ରୀଯୁକ୍ତ ରବିନାରାୟଣ ସେନାପତି (ସଂପ୍ରତି ଆଇ.ଏ.ଏସ୍.) ଓ ଶ୍ରୀ ରମେଶ ସାହୁ ଅନ୍ୟତମ ।

ଏକଦା ପ୍ରବୀଣ ନୃତ୍ୟଶିଳ୍ପୀ ଶ୍ରୀମତୀ ସୋନାଲ ମାନସିଂ ମସୌରୀସ୍ଥିତ ଏକାଡେମୀ ଅଡିଟୋରିୟମ୍‌ରେ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ନୃତ୍ୟର ଶୈଳୀ, ଛନ୍ଦ, ତାଳ ଲୟରେ ସୋନାଲଙ୍କ ପଟୁତା ସର୍ବଜନବିଦିତ । କିନ୍ତୁ ମୁହଁ ଓ ଶରୀରରେ ବୟସର ଛାପ

ବାରି ହୋଇ ପଡୁଥିବାରୁ ଏକାଡେମୀରେ ତରୁଣ ଦର୍ଶକପିଢ଼ିଙ୍କୁ ତାଙ୍କର ଏକକ ଓଡ଼ିଶୀ ନୃତ୍ୟ ସେତେଟା ପ୍ରଭାବିତ କରିପାରିଲା ନାହିଁ । ଅନ୍ୟ ପ୍ରଦେଶର ଅଫିସରମାନେ ଆକ୍ଷେପ କଲେ ଓଡ଼ିଶୀ ନୃତ୍ୟରେ ସେତେଟା ଲାଳିତ୍ୟ ନାହିଁ, ମାଦକତା ନାହିଁ । ଦର୍ଶକଙ୍କ ମନ ମୋହି ନେବାର ସାମର୍ଥ୍ୟ ନାହିଁ । ଆମର ଓଡ଼ିଆ ସ୍ୱାଭିମାନ ପୁଣି ଥରେ ଜାଗି ଉଠିଲା । ଖାଲି ଯୁକ୍ତିରେ ନୁହେଁ, ନିଶ୍ଚିତ ଭାବରେ କାମରେ ଏହାର ପ୍ରତିବାଦ ଜଣାଇବାକୁ ପଡ଼ିବ ।

ମସୌରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ଏକାଡେମୀର ନିର୍ଦ୍ଦେଶକ ଥିଲେ ଶ୍ରୀଯୁକ୍ତ ବି.ସି. ମାଥୁର । ସେ ଥିଲେ ଓଡ଼ିଶା କ୍ୟାଡରର ବରିଷ୍ଠ ଆଇ.ଏ.ଏସ୍. ଅଫିସର । ତାଙ୍କୁ କହିବାରୁ ସେ ଅବିଳମ୍ବେ ଓଡ଼ିଶା ସରକାରଙ୍କ ତତ୍‌କାଳୀନ ସଂସ୍କୃତି ସଚିବ ଶ୍ରୀଯୁକ୍ତ ଅବୋଧ ନାରାୟଣ ତିୱାରୀ ଆଇ.ଏ.ଏସ୍.ଙ୍କ ନିକଟକୁ ଏକ ଅର୍ଦ୍ଧ ସରକାରୀ ପତ୍ର ଲେଖି ସଂସ୍କୃତି ବିଭାଗ ତରଫରୁ ଓଡ଼ିଶୀ ନୃତ୍ୟ ଦଳ ଏକାଡେମୀକୁ ପଠାଇବାକୁ ଅନୁରୋଧ କଲେ । ପରେ ପରେ ଏକ ଚାରିଜଣିଆ ତରୁଣୀ ନୃତ୍ୟଶିଳ୍ପୀ ଦଳକୁ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଧୀରେନ୍ ଦାସଙ୍କ ତତ୍ତ୍ୱାବଧାନରେ ମସୌରୀ ପଠାଯାଇଥିଲା । ଦୁଇଦିନ କାଳ ସେମାନେ ଏକାଡେମୀ ପ୍ରେକ୍ଷାଳୟରେ ଉଭୟ ଏକକ ଓ ଦଳଗତ ଓଡ଼ିଶୀ ନୃତ୍ୟ ଯଥା ମଙ୍ଗଳାଚରଣ, ପଲ୍ଲବୀ, ଦଶାବତାର ଅଭିନୟ ଓ ଦଣ୍ଡନୃତ୍ୟ ଆଦି ପରିବେଷଣ କରି ସମଗ୍ର ଦର୍ଶକମଣ୍ଡଳୀକୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ଦୁଇଜଣ ତରୁଣୀ ଶିଳ୍ପୀଙ୍କ ନାଁ ଏବେ ବି ମନେ ପଡୁଛି । ସେମାନେ ହେଲେ କୁମାରୀ ସିକତା ଦାସ ଓ ନନ୍ଦିତା ପଟ୍ଟନାୟକ ।

ମସୌରୀରେ ଓଡ଼ିଶୀ ନୃତ୍ୟ କାର୍ଯ୍ୟକ୍ରମର ଲୋକପ୍ରିୟତାକୁ ଦେଖି ଆମେ ଡେରାଡୁନ୍ ଓଡ଼ିଆ ସମାଜ ତରଫରୁ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ଅଡିଟୋରିୟମ୍‌ରେ ପୁନର୍ବାର ନୃତ୍ୟଗୀତ କାର୍ଯ୍ୟକ୍ରମର ଆୟୋଜନ କରିଥିଲୁ । ସେ ସମୟକୁ ଓଡ଼ିଆ ସମାଜର ଦାୟିତ୍ୱ ନେଇଥାନ୍ତି ଆଇ.ଏଫ୍.ଏସ୍. ପ୍ରୋବେସନ୍‌ର ଶ୍ରୀ ଅଭିଜିତ ଘୋଷ । ସେ ୧୯୭୬ ମସିହା ବ୍ୟାଚ୍‌ର ଅଫିସର୍ । କଟକର ପ୍ରଖ୍ୟାତ ନାଟ୍ୟକାର, ମଞ୍ଚ ତଥା ଚଳଚ୍ଚିତ୍ର ଅଭିନେତା ଶ୍ରୀଯୁକ୍ତ ଗୋପାଳ ଘୋଷଙ୍କ ସୁପୁତ୍ର । ତାଙ୍କର ପ୍ରଗାଢ଼ ଚେଷ୍ଟାରେ ଆମେମାନେ ପକାଇଥିବା ଓଡ଼ିଆ ସମାଜର ମୂଳଦୁଆ କ୍ରମଶଃ ସୁଦୃଢ଼ ହେବାରେ ଲାଗିଥାଏ । ଓଡ଼ିଶାରୁ ଯାଇଥିବା ସାଂସ୍କୃତିକ ଦଳର ନୃତ୍ୟପରିବେଷଣ ଡେରାଡୁନ୍‌ଠାରେ ପ୍ରଶିକ୍ଷଣ ନେଉଥିବା ଦେଶର ବିଭିନ୍ନ ପ୍ରାନ୍ତର ଶିକ୍ଷାନବିସଙ୍କ ମଧ୍ୟରେ ବେଶ୍ ଆଦୃତ ଓ ପ୍ରଶଂସିତ ହୋଇଥିଲା ।

ଏ ଭିତରେ ଦୀର୍ଘ ତିରିଶ ବର୍ଷ ବିତିଗଲାଣି । ପ୍ରତିବର୍ଷ ନୂଆ ନୂଆ ଓଡ଼ିଆ ଅଫିସରମାନେ ଡେରାଡୁନ୍ ଓ ମସୌରୀ ଆସନ୍ତି ଏବଂ ଟ୍ରେନିଂ କାର୍ଯ୍ୟକ୍ରମ ସମାପନ ପରେ ଫେରିଯାନ୍ତି । ସେଠି ରହଣି ସମୟରେ ସେମାନଙ୍କ ଭିତରୁ ଅନେକ ଓଡ଼ିଆ ସମାଜ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସହଯୋଗ କରିଥାନ୍ତି । ବିଗତ ବର୍ଷମାନଙ୍କରେ ଉଦ୍ୟମୀ ଅଫିସରମାନଙ୍କର ନିଷ୍ଠା, ସଦିଚ୍ଛା ଓ ଆନ୍ତରିକତାକୁ ପାଥେୟକରି ଡେରାଡୁନ୍ ଓଡ଼ିଆ ସମାଜର କଳେବର ଦିନକୁ ଦିନ ବିସ୍ତାରିତ ହେବାରେ ଲାଗିଛି ଏବଂ ପ୍ରତିବର୍ଷ କିଛି କଳାକାରଙ୍କୁ ଓଡ଼ିଶାରୁ ଡକାଇ ସେଠି ସାଂସ୍କୃତିକ କାର୍ଯ୍ୟକ୍ରମମାନ ଆୟୋଜନ କରାଯାଉଛି । ଓଡ଼ିଶା ବାହାରେ ଓଡ଼ିଆ ସଂସ୍କୃତିର ପ୍ରଚାର ତଥା ପ୍ରସାର ହେଉଛି । ଅତୀତରେ ଆମେ ପୋତିଥିବା ମଂଜିରୁ ଗଜା ବାହାରି, ଗଛ ହୋଇ ଏବେ ତାହା ଶାଖାପ୍ରଶାଖା ମେଲି ବିରାଟକାୟ ଦ୍ରୁମରେ ପରିଣତ ହେଲାଣି, ଏହା ଶୁଣିଲେ ଯଥେଷ୍ଟ ଆନନ୍ଦ ମିଳୁଛି । ପରିତୃପ୍ତି ମିଳୁଛି ।

ସମସ୍ତ ପ୍ରକାର ତିକ୍ତ, ମଧୁର, କଷାୟ ଅନୁଭବ ତଥା ଅନୁଭୂତିର ପସରା ଭିତରେ, ଆନନ୍ଦ ଏବଂ ଦୁଃଖଦ ମୁହୂର୍ତ୍ତର ସମାବେଶ ଭିତରେ ଏବଂ ବାଦ, ବିସମ୍ବାଦର ସମାରୋହ ଭିତରେ ହିଁ ମୋ' ତିରିଶ ବର୍ଷ ଅବଧି ଚାକିରି ଜୀବନ କାଳରେ ଏହି ଦୁଇବର୍ଷ ଚାରିମାସ ଟ୍ରେନିଂ ପିରିୟଡ ହିଁ ଥିଲା ସର୍ବୋତ୍କୃଷ୍ଟ ଓ ସର୍ବାଧିକ ଉପଭୋଗ୍ୟ ତଥା ଆନନ୍ଦଦାୟକ; ଏକଥା ସ୍ୱୀକାର କରିବାରେ ମୋର ସାମାନ୍ୟତମ ଦ୍ୱିଧା ନାହିଁ । ପ୍ରାରମ୍ଭିକ ଚାକିରି କାଳର ଅନେକ ମଧୁରତମ ଅନୁଭୂତିକୁ ନେଇ ପରିପୁଷ୍ଟ ଏହି କ୍ୟାମ୍ପସ ଜୀବନ-ଯାହାର ସ୍ୱାଦ ନିଆରା, ନିରୁତା । ଏବେବି ମନେ ପଡ଼ିଗଲେ ପୁଲକିତ ହୋଇଯାଏ ଦେହ,ମନ, ପ୍ରାଣ !



# ବାଘ ନଦେଖିଲେ ବିରେଇଁ ଦେଖ



ଭାରତୀୟ ବନ ମହାବିଦ୍ୟାଳୟ ଡେରାଡୁନ୍‌ରେ ବିଭାଗୀୟ ଶିକ୍ଷାନବିଶ ଅଫିସରମାନଙ୍କୁ ଦିଆଯାଉଥିବା ଟ୍ରେନିଂ ପିରିୟଡ଼ର ଅବଧି ଦୁଇବର୍ଷ । ଏହି ଦୁଇବର୍ଷରୁ ପ୍ରାୟ ଆଠ ମାସରୁ ଊର୍ଦ୍ଧ୍ୱ ସମୟ ଭାରତର ବିଭିନ୍ନ ପ୍ରାନ୍ତରେ ଥିବା ଭିନ୍ନ ପ୍ରଜାତିର ଅରଣ୍ୟ, ଯଥା ବିଷୁବ ମଣ୍ଡଳୀୟ ଚିରହରିତ୍ ଅରଣ୍ୟ, ଶୁଷ୍କ ପର୍ଣ୍ଣମୋଚୀ ଅରଣ୍ୟ ଅବା ହିମାଳୟ ପାଦଦେଶର ପାଇନ୍ ଅରଣ୍ୟ, ସେ ସବୁର ପରିଚାଳନା, ବନ୍ୟଜନ୍ତୁ ଅଭୟାରଣ୍ୟ ବା ଜାତୀୟ ଉଦ୍ୟାନ ଗୁଡ଼ିକର ପରିଦର୍ଶନ ଆଦି କାର୍ଯ୍ୟକ୍ରମ ରଖାଯାଇଥାଏ । ଏହି ଟୁର୍ କାର୍ଯ୍ୟକ୍ରମର ସମୟ ନିରୂପଣ ମଧ୍ୟ ଉଦ୍ଦେଶ୍ୟମୂଳକ ଭାବରେ କରାଯାଇଥାଏ । ଅର୍ଥାତ୍ ଗ୍ରୀଷ୍ମ ଋତୁରେ ସିମ୍‌ଲା, ନୈନିତାଲ ଶୈଳ ନିବାସ ଅଥବା କାଶ୍ମୀର ଟୁର୍ ଏବଂ ଶୀତଦିନେ ଦକ୍ଷିଣ ଭାରତ, ରାଜସ୍ଥାନ ବା ମଧ୍ୟଭାରତ ଭ୍ରମଣର କାର୍ଯ୍ୟକ୍ରମ ଥାଏ, ଯେମିତି ଡେରାଡୁନ୍ ଉପତ୍ୟକାର ଅସହ୍ୟ ଗ୍ରୀଷ୍ମ ବା ପ୍ରବଳ ଶୀତକୁ ଅନାୟାସରେ ଏଡ଼ାଇ ହେବ । ଟ୍ରେନିଂ ଅବଧି ଭିତରେ ସମଗ୍ର ସହର ଦର୍ଶନ କରିବାର ସୁଯୋଗ ଆମକୁ ମିଳିଥିଲା । ବିଭିନ୍ନ ସ୍ଥାନକୁ

ଥିବା ଅବସରରେ ଅନେକ ଅନୁଭୂତି ପ୍ରାପ୍ତ ହୋଇଛି । ଅନେକ ସ୍ମୃତି ଏବେ ବି ଜୀବନ୍ତ ରହିଛି । ତନ୍ମଧ୍ୟରୁ ଜୀବନରେ ପ୍ରଥମଥର ପାଇଁ ମିଳିଥିବା ଏକ ବିରଳ ଅନୁଭୂତି ଏଠି ପ୍ରକାଶ କରାଯାଇପାରେ ।

କଥାରେ ଅଛି, 'ବାଘ ନ ଦେଖିଲେ ବିଲେଇ ଦେଖ'। ଏକଥା କହିବାର ତାତ୍ପର୍ଯ୍ୟ ହେଉଛି, ବାଘ ବା ବିଲେଇ ଗୋଟିଏ ପରିବାରର ବା ଗୋଟିଏ ପ୍ରଜାତିର । ତେଣୁ ବାଘ ନ ଦେଖିଥିବା ଲୋକ, ବିଲେଇଟି ଦେଖି ଏବଂ ତାର ବଡ଼ ଆକୃତିକୁ କଳ୍ପନା କରି କାମ ଚଳେଇ ନେଇପାରେ । ଏବେ ଅବଶ୍ୟ ପ୍ରକୃତ ବାଘ ଦେଖି ନଥିବା ଲୋକ କ୍ୱଚିତ୍ ମିଳିବେ । କାରଣ ସବୁ ରାଜ୍ୟର ଏକାଧିକ ଚିଡ଼ିଆଖାନା ଅଛି, ଯେଉଁଠି ଆବଦ୍ଧ ତାର ବାଡ଼ ଭିତରେ ମହାବଳ ବାଘ, ଧଳାବାଘ କିମ୍ବା ଚିତା ବାଘ ସବୁକିଛି ଦେଖିହେବ । ସେହିପରି ବାଘ ସଫାରିରେ ନିଜକୁ  ଆବଦ୍ଧ ବସ୍ ଭିତରେ ସବୁଦିଗରୁ ସୁରକ୍ଷିତ ରଖି, ଉନ୍ମୁକ୍ତ ପରିବେଶରେ ବୁଲୁଥିବା ବାଘମାନଙ୍କୁ ଦେଖିହେବ । କିନ୍ତୁ ଜଙ୍ଗଲ ଭିତରେ ଜାଙ୍ଗଲିକ ପରିବେଶରେ ମହାବଳ ବାଘକୁ ଦେଖିବାର ଅନୁଭୂତି ନିଆରା । ଏମିତି ଏକ ସୁଯୋଗ, ଟ୍ରେନିଂ ସମୟରେ ମଧ୍ୟ ପ୍ରଦେଶ ଟୁର୍ ଅବସରରେ ଆମକୁ ମିଳିଥିଲା ।

୧୯୭୬ ମସିହାରେ ଆଇ.ଏଫ୍.ଏସ୍. ପ୍ରୋବେସନରମାନଙ୍କର ଗୋଟିଏ ବ୍ୟାଚ୍ ଭୋପାଳଠାରୁ ବସ୍ ଯାତ୍ରା ଆରମ୍ଭ କରି ଜବଲପୁରଠାରେ ପହଞ୍ଚିଥିଲୁ । ସେଠୁ 'କାହ୍ନା' ନ୍ୟାସ୍‌ନାଲ୍ ପାର୍କ ଅଭିମୁଖେ ୧୬୦ କିଲୋମିଟର ଯାତ୍ରା । ଆମ୍ଭମାନଙ୍କ ପାଇଁ ପାର୍କ ଭିତରେ ଥିବା ବନ ବିଭାଗ ବଙ୍ଗଳାମାନଙ୍କରେ ରହିବା ବନ୍ଦୋବସ୍ତ କରାଯାଇଥାଏ ।

ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାରେ ଥିବା 'ଶିମିଳିପାଳ ଜାତୀୟ ଉଦ୍ୟାନ ପରି ମଧ୍ୟ ପ୍ରଦେଶର 'କାହ୍ନା' ଜାତୀୟ ଉଦ୍ୟାନ ତଥା ବନଜନ୍ତୁ ବିଶେଷ କରି ବ୍ୟାଘ୍ର ଅଭୟାରଣ୍ୟ ନିମନ୍ତେ ସମଗ୍ର ଭାରତରେ ସୁବିଖ୍ୟାତ । ୧୯୫୫ ମସିହାରେ 'କାହ୍ନା' ଅଭୟାରଣ୍ୟ ଜାତୀୟ ଉଦ୍ୟାନର ମର୍ଯ୍ୟାଦା ଲାଭ କରିଥିଲା । ୧୯୪୫ ବର୍ଗ କିଲୋମିଟର ପରିବ୍ୟାପ୍ତ ଏହି ଅଭୟାରଣ୍ୟରେ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ ମଧ୍ୟ କାର୍ଯ୍ୟକାରୀ କରାଯାଉଛି । ଦେଶର ଅନେକ ଗୁଡ଼ିଏ ବ୍ୟାଘ୍ର ପ୍ରକଳ୍ପ ମଧ୍ୟରୁ କାହ୍ନା ଅନ୍ୟତମ । ନିଘଞ୍ଚ ଜଙ୍ଗଲ ତୁଳନାରେ ମାଇଲ ମାଇଲ ବ୍ୟାପ୍ତ ଖୋଲା ଘାସ ପଡ଼ିଆ ଏହି ଜଂଗଲର ବିଶେଷତ୍ୱ । ଏହି କାରଣରୁ ପାର୍କ ଭିତରେ ବୁଲିଲାବେଳେ, ପଲକୁ ପଲ ହରିଣ, ସମ୍ବର, ବାଲି ହରିଣ, କୁଟୁରା ଓ କୃଷ୍ଣସାର ମୃଗ ଅଭୟାରଣ୍ୟରେ ଦେଖିବାକୁ ମିଳନ୍ତି । ବାରାସିଙ୍ଗାଙ୍କର ଏହି ଜଙ୍ଗଲ ଯେପରି ନିଜସ୍ୱ

ସଂପତ୍ତି । କାହ୍ନାର ଜାଙ୍ଗଲିକ ପରିବେଶରେ ବିଗତ ଦିନମାନଙ୍କରେ ସେମାନଙ୍କର ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଛି । ଏହି ଅଭୟାରଣ୍ୟରେ ମଧ୍ୟ ଅଛନ୍ତି କୋକିଶିଆଳି, ଗାଡ଼ଭାଲୁ, ହ୍ୱାଏନା, ନୀଳଗାଈ, ଝିଙ୍କପକ୍ଷୀ; ଏପରି ଅନେକ ଜୀବଜନ୍ତୁ । ହେଲେ ଯେଉଁ ମହାବଳ ବାଘକୁ ଜଙ୍ଗଲର ଖୋଲା ପରିବେଶରେ, ରାଜକୀୟ ଠାଣିରେ ଦେଖିବାକୁ ମନସ୍ଥ କରି ଆମେ ଯାଇଛୁ, ସେ ମହାବଳ ବାଘ କାହିଁ ? ତଥାପି ଆମ ମନରେ ଉତ୍ସାହ କମିନଥାଏ । କାରଣ କାହ୍ନା ଜାତୀୟ ଉଦ୍ୟାନର ନିର୍ଦ୍ଦେଶକ, ଆମକୁ ନିଶ୍ଚିତ ଭାବରେ ଅଭୟାରଣ୍ୟ ଭିତରେ ବାଘ ଠାବ କରି ଦେଖେଇବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

କାହ୍ନା ଅଭୟାରଣ୍ୟରେ ଉପଯୁକ୍ତ ଟ୍ରେନିଂ ଦେଇ ଅନେକଗୁଡିଏ ପୋଷାହାତୀ ରଖାଯାଇଥାଏ । ସେମାନଙ୍କୁ 'କୁଙ୍କି' କୁହାଯାଏ । ଜଙ୍ଗଲ ଭିତରେ ବାଘକୁ ଖୋଜି ବାହାର କରିବାରେ ଏହି ହାତୀମାନେ ଧୁରନ୍ଧର । ଅନେକ ଦୂରରୁ ବାଘର ଗନ୍ଧ ସେମାନେ ବାରି ପାରନ୍ତି । ଜଙ୍ଗଲ ଭିତରେ ଯେଉଁଠିକି ରାସ୍ତା ନାହିଁ ସେଠିକୁ ଡାଳପତ୍ର ଭାଙ୍ଗି, କଣ୍ଟାଝଣ୍ଟା ଆଡ଼େଇ ଆଗେଇ ଯିବା ପାଇଁ ଏମାନଙ୍କୁ ତାଲିମ୍ ଦିଆଯାଇଥାଏ । ବାଘମାନେ ସାଧାରଣତଃ ନାଳକୂଳକୁ ପାଣି ପିଇବା ପାଇଁ ଆସିଥାନ୍ତି । ସେହିପରି ଏକ ନାଳକୂଳିଆ ଜାଗାରେ ପୂର୍ବ ରାତିରୁ ଗୋଟିଏ ମଇଁଷିକୁ ମାରି ବାନ୍ଧି ଦିଆଯାଇଥିଲା । ମୃତ ବଳଦ କିଂବା ମଇଁଷିଙ୍କୁ ମଡ଼ ନଚେତ୍ ଜୀବନ୍ତ ଗାଈ, ମଇଁଷିଙ୍କୁ ନାଳ କୂଳ ଗଛ ମୂଳରେ 'ଥୋପ' ଭାବରେ ବାନ୍ଧି ଶିକାରୀମାନେ ମଞ୍ଚା ଉପରେ ବସି ବାଘ ଶିକାର କରିବା ଏକ ପ୍ରଚଳିତ ବିଧି । ଶିକାର ବାସ୍ନାରେ ଆକୃଷ୍ଟ ହୋଇ, ଥୋପ ବନ୍ଧା ଯାଇଥିବା ମଡ଼ ନିକଟକୁ ବାଘ ପ୍ରାୟତଃ ଆସିଥାଏ । କାହ୍ନା ଅଭୟାରଣ୍ୟରେ ମଧ୍ୟ ବାଘକୁ ଆକୃଷ୍ଟ କରିବା ପାଇଁ ଠିକ୍ ଏହି ପଦ୍ଧତି ଗ୍ରହଣ କରାଯାଇଥିଲା ।

ପରଦିନ ସକାଳେ ଚାରିଜଣ ମାହୁନ୍ତ ଚାରୋଟି 'କୁଙ୍କି' ହାତୀଙ୍କ ଉପରେ ସବାର ହୋଇ, ସେହିନାଳ କୂଳକୁ ଅନୁସନ୍ଧାନରେ ବାହାରିଗଲେ । ରାତିରେ ବାଘ ଆସି ମଇଁଷିକୁ ଖାଇଛି, କିଂତୁ ମଡ଼ଟି ପାଖ ଗଛରେ ବନ୍ଧା ହୋଇ ଥିବାରୁ ତାକୁ ଟାଣି ନେଇ ପାରିନାହିଁ । ନାଳକୂଳିଆ ସନ୍ତସନ୍ତିଆ ମାଟି ଉପରେ ବାଘର ପାଦଚିହ୍ନ ପଡ଼ିଥିବାର ଦେଖାଗଲା । ପ୍ରକୃତି ଅନୁସାରେ ବାଘ ତାର ଶିକାରକୁ ସଂପୂର୍ଣ୍ଣ ରୂପେ ଭକ୍ଷଣ ନକଲା ପର୍ଯ୍ୟନ୍ତ, ସେ ସ୍ଥାନ ଛାଡ଼ି ଦୂରକୁ ଯାଏ ନାହିଁ । ଆଖପାଖ ବୁଦା ବା ଝାଡ଼ ଭିତରେ ଛପିକରି ଲୁଚି ବସିଥାଏ । ଜଙ୍ଗଲର ଡେଙ୍ଗା ଡେଙ୍ଗା ଗହଳ ଘାସ ବଣ ଭିତରୁ ବାସ୍ନା ବାରି ବାଘକୁ ଠାବ କରିବା ଦାୟିତ୍ୱ ହାତୀମାନଙ୍କର । ତେଣୁ ମାହୁନ୍ତମାନେ ହାତୀଙ୍କୁ ନେଇ ପାଖ ଆଖର ଝାଡ଼ ଜଙ୍ଗଲ ଖୋଜିବାକୁ ବାହାରିଗଲେ ।

ସକାଳ ପ୍ରାୟ ଆଠଟା ବେଳୁ ଏହି ଖୋଜା ଖୋଜି କାମ ଆରମ୍ଭ ହୋଇଥିଲା । କ୍ରମଶଃ ମଧ୍ୟାହ୍ନ ଯାଇ ଉପରବେଳା ହେଲା । ତଥାପି ବାଘର ଖୋଜ ଖବର ନାହିଁ । ଡାକ ବଙ୍ଗଳାରେ ଆମେ ଅପେକ୍ଷା କରି ବସିଥାଉ । କେତେବେଳେ ବାଘର ସଂଧାନ ମିଳିଛି ବୋଲି ଖବର ପହଞ୍ଚିବ ! ଅପେକ୍ଷାର ମୁହୂର୍ତ୍ତ ଯେତିକି ବଢ଼ି ଚାଲିଥାଏ, ଆଶା ଓ ଆଶଙ୍କାରେ ମନ ସେତିକି ଭାଙ୍ଗି ପଡୁଥାଏ । ବୋଧହୁଏ ଜଙ୍ଗଲର ମୁକ୍ତ ପରିବେଶରେ ବାଘ ଦେଖିବାର ସୁଯୋଗ ଆମକୁ ଆଉ ମିଳିବ ନାହିଁ, ଗସ୍ତ କାର୍ଯ୍ୟକ୍ରମ ଅନୁସାରେ ଆସନ୍ତାକାଲି ଆମେ ନାଗପୁର ଚାଲିଯିବୁ । ସେଥିପାଇଁ ଟ୍ରେନ୍‌ରେ ଟିକେଟ୍ ମଧ୍ୟ କଟା ସରିଛି । ମନଦୁଃଖରେ, ନିଜ ନିଜ ଭିତରେ ଏପରି କଥାବାର୍ତ୍ତା ହେଉଥିବାବେଳେ ପ୍ରତୀକ୍ଷାରେ ପୂର୍ଣ୍ଣଚ୍ଛେଦ ପକାଇ ଖବର ପହଞ୍ଚିଲା ଯେ ଅଭୟାରଣ୍ୟ ଭିତରେ ଗୋଟିଏ ବାଘୁଣୀକୁ ହାତୀମାନେ ଠାବ କରିଛନ୍ତି ।

ସମଗ୍ର ଘଟଣାବଳୀର ବର୍ଣ୍ଣନା ଏହିପରି ଥିଲା । ବାଘୁଣୀଟି ଗୋଟିଏ ବାଉଁଶବୁଦା ଭିତରେ ଛପିଥିଲା । ତାକୁ ଠାବକରିବାର ଅଳ୍ପ ସମୟପରେ ଅନ୍ୟ ଏକ ହାତୀର ମାହୁନ୍ତ, ପାଖରେ ବର୍ଷକର ବାଘ ଛୁଆଟିଏ ଥିବାର ଦେଖି ପାରିଲା । ହାତୀମାନଙ୍କୁ ଦେଖି ବାଘଛୁଆଟି ଦଉଡ଼ି ଆସି ମା' ପାଖରେ ହାଜର । ପରେ ଚାରୋଟି ଯାକ ହାତୀ ମିଶି ଚଉଦିଗରୁ ଏମାନଙ୍କୁ ଜଗିଦେଲେ । ବାଘୁଣୀଟି ତା' ଛୁଆକୁ ନେଇ ଅନ୍ୟ କେଉଁ ସ୍ଥାନକୁ ଯାଇ ପାରିଲା ନାହିଁ । ସେ ଯେଉଁ ଦିଗକୁ ମୁହାଁଉଥାଏ, ହାତୀମାନେ ସେପଟକୁ ଆଗେଇ ଯାଇ ତାକୁ ବାଧା ଦେଉଥାନ୍ତି । ଘଣ୍ଟାଏ ଖଣ୍ଡେ ବାରଂବାର ପଳାୟନ କରିବାର ବ୍ୟର୍ଥ ଚେଷ୍ଟା ପରେ ବାଘୁଣୀଟି ହାଲିଆ ହୋଇ ପଡ଼ିଲା । ତା' ପରେ ଦୁଇଟି ହାତୀ ତାକୁ ସେଠାରେ ଜଗି ରହିଲେ ଓ ଅନ୍ୟଦୁଇଟି ହାତୀ ଆମ୍ଭମାନଙ୍କୁ କ୍ୟାମ୍ପରୁ ନେବାପାଇଁ ଆସିଲେ ।

ପ୍ରତ୍ୟେକଟି ହାତୀ ପିଠିରେ ମାହୁନ୍ତ ବ୍ୟତୀତ ଆମେ ଛଅଜଣ ବସିଲୁ । ବାଘ ଦେଖିବା ପାଇଁ ମନରେ ଯେତିକି ଉତ୍ସାହ ଥାଏ, ସେତିକି ଭୟ ବି ଲାଗୁଥାଏ । ଛାତି ଧଡ଼ପଡ଼ ହେଉଥାଏ । ଏକ ନୂଆଧରଣର ଅନୁଭୂତି ପ୍ରାପ୍ତ ହେବାକୁ ଯାଉଛି । ହାତୀ ଦୁଇଟି ପଛକୁ ପଛ, ବାଉଁଶ ଜଙ୍ଗଲ ଭିତରେ ଡାଳପତ୍ର ଭାଙ୍ଗି ଏବଂ କଣ୍ଟାଝଣ୍ଟା ଆଡ଼େଇ ରାସ୍ତା ପ୍ରସ୍ତୁତ କରି ଯାଉଥାନ୍ତି । ଆମେ ସତର୍କ ହୋଇ ନଇଁକରି ବସିଥାଉ । କାରଣ ଟିକିଏ ଅସାବଧାନ ହେଲେ ଚାରିଆଡ଼କୁ ଝୁଲି ପଡ଼ିଥିବା କଣ୍ଟା ବାଉଁଶ ଡାଳ ଦେହରେ ଲାଗିଯିବ ବା ମୁହଁରେ ବାଜିଯିବ । ଭୟ ମଧ୍ୟ ଲାଗୁଥାଏ । ଘଞ୍ଚ ଜଂଗଲ, ଅନେକ ଶ୍ୱାପଦ ଜଙ୍ଗଲରେ ଅଛନ୍ତି ।

କାଳେ କେଉଁଠୁ ବାଘଟିଏ ଆମ ଉପରକୁ ଡେଇଁ ପଡ଼ିବ ବା ପଛଆଡୁ ଆକ୍ରମଣ କରିବ । ପୂର୍ବରୁ ଆମେ ଶୁଣିଥିଲୁ ଯେ ବାଘ କେବେ ହାତୀକୁ ସାମ୍ନାସାମ୍ନି ଆକ୍ରମଣ କରେ ନାହିଁ । ଯଦି ଆକ୍ରମଣ କରିବାକୁ ଚାହେଁ, ତେବେ ସୁଯୋଗ ଦେଖି ପଛପଟୁ ଆକ୍ରମଣ କରିଥାଏ । ମୁହାଁମୁହିଁ ଏତେବଡ଼ ବିଶାଳକାୟ ଜନ୍ତୁକୁ ଆକ୍ରମଣ କରିବାକୁ ବାଘର ସାହସ ହୁଏ ନାହିଁ ।

ପ୍ରାୟ ଅଧଘଣ୍ଟାଏ ଜଂଗଲ ଭିତର ଦେଇ ଯିବା ପରେ, ଆମକୁ ନେଉଥିବା ହାତୀ ଦୁଇଟି ନିର୍ଦ୍ଦିଷ୍ଟ ସ୍ଥଳରେ ପହଞ୍ଚିଲେ । ଅନ୍ୟ ହାତୀ ଦୁଇଟି ସେଠି ଜଗି କରି ଥାଆନ୍ତି । ବାଘୁଣୀଟି କ୍ରୋଧରେ ଗର୍ଜ୍ଜନ କରୁଥାଏ । ବିଶେଷ କରି ଛୁଆ ପାଖରେ ଥିବାରୁ ମାଆ ବାଘୁଣୀ ଭୟଙ୍କର ରାଗିଯାଇଥାଏ ଏବଂ ପଳାୟନ ପାଇଁ ଏଣେତେଣେ ସୁଯୋଗ ସୃଷ୍ଟି କରୁଥାଏ । ହାତୀମାନେ ମଧ୍ୟ ତାକୁ ଅଟକାଇବା କୌଶଳରେ ଧୁରନ୍ଧର । ବାଘୁଣୀ ଯେଉଁ ପଟକୁ ଡେଇଁ ପଡୁଥାଏ, ହାତୀମାନେ ତାରି ଆଡ଼କୁ ମୁହଁକରି ସେହି ପଟକୁ ବୁଲିଯାନ୍ତି । ଆମେ ସେଠାରେ ପ୍ରାୟ କୋଡ଼ିଏ ମିନିଟ ଖଣ୍ଡେ ରହି ବାଘୁଣୀ ଓ ତା' ଛୁଆର ଗତିବିଧିକୁ ଲକ୍ଷ୍ୟ କଲୁ । ସମସ୍ତେ ହାତୀ ଉପରେ ବସିଥାଉ । ଏହି ସମୟରେ ଭୟରେ ହେଉ ବା ଅସାବଧାନତା ବଶତଃ ହେଉ, ଆମ ଭିତରୁ ଜଣଙ୍କର ମୁଣ୍ଡରୁ ଟୋପିଟି ତଳେ ଖସି ପଡ଼ିଲା । ବନ୍ଧୁ ଜଣକ ହାତୀକୁ ବସେଇ ତଳୁ ଟୋପିଟି ଉଠେଇ ଆଣିବା ନିମନ୍ତେ ମାହୁନ୍ତକୁ ଅନୁରୋଧ କଲେ । କିନ୍ତୁ ତାଙ୍କର ଅନୁରୋଧକୁ ପ୍ରତ୍ୟାଖାନ କରି ମାହୁନ୍ତ କହିଲା, ହାତୀକୁ ତଳେ ବସେଇବା ମାତ୍ରେ ହିଁ କ୍ରୋଧିତ ବାଘୁଣୀ ଆମମାନଙ୍କ ଉପରକୁ କୁଦି ପଡ଼ିବ । ତେଣୁ ଟୋପିଟି କଥା ଭୁଲିଯାନ୍ତୁ । ଆମ ଭିତରୁ କେତେଜଣ କ୍ୟାମେରାରେ ବାଘୁଣୀର ଫଟୋ ଉଠେଇଲେ । ସେତେବେଳକୁ ମନରୁ ଭୟ ସଂପୂର୍ଣ୍ଣ ରୂପେ କମିଯାଇଥିଲା ଏବଂ ପରିବର୍ତ୍ତେ ରୋମାଞ୍ଚ ଓ ଶିହରଣରେ ମନ ଭରି ଉଠୁଥିଲା । କିଛି ସମୟ ପରେ ହାତୀ ଦୁଇଟି ଆମକୁ ନେଇ କ୍ୟାମ୍ପକୁ ଫେରି ଆସିଲେ ।

ଜୀବନରେ ପ୍ରଥମଥର ପାଇଁ ଜଂଗଲର ମୁକ୍ତ ପରିବେଶରେ ବାଘ ଦେଖିବାର ଅନୁଭୂତି ଭୁଲିବାର ନାହିଁ । ଆଜିବି ସେହି ଦୃଶ୍ୟ ମାନସପଟରେ ପ୍ରତିଫଳିତ ହେଲେ ମନ ଉଚ୍ଛକିତ ହୋଇଉଠେ ।

ପୁନର୍ବାର ଉନ୍ମୁକ୍ତ ପରିବେଶରେ, ପୋଷା ଜୀବପରି ସ୍ୱଚ୍ଛନ୍ଦରେ ବିଚରଣ କରୁଥିବା ବାଘ ବାଘୁଣୀ ଦେଖିବାର ସୁଯୋଗ ଆସିଲା ୧୯୭୯ ମସିହା, ମାର୍ଚ୍ଚ ମାସରେ । ଡେରାଡୁନ୍ ଓ ମସୌରୀରୁ ସଫଳତା ସହ ପ୍ରଶିକ୍ଷଣ ସମାପନ ପରେ, ସହକାରୀ ବନ

ସଂରକ୍ଷଣ ଭାବରେ ମୋର ଅନୁଗୁଳ ବନଖଣ୍ଡରେ ପୋଷ୍ଟିଂ ହୋଇଥାଏ । ସେହି ବର୍ଷ ମାର୍ଚ୍ଚ ମାସରେ ଆସିଷ୍ଟାଣ୍ଟ ୱାର୍କିଙ୍ଗ୍‌ପ୍ଲାନ ଅଫିସର୍ ହିସାବରେ ମୋର ଅନୁଗୁଳରୁ ବାରିପଦା ବଦଳି ହୋଇଗଲା । ଅନୁଗୁଳରେ ମୋର ସହକର୍ମୀ ତଥା ଅନ୍ୟତମ ସହକାରୀ ବନସଂରକ୍ଷକ ଶ୍ରୀ ବଳଭଦ୍ର ପ୍ରସାଦ ଦାସ, ମୋତେ ମୋର ଯତ୍‌କିଞ୍ଚିତ୍ ସାମାନପତ୍ର ସହ ଜିପ୍‌ରେ ନେଇ ବାରିପଦାରେ ଛାଡ଼ିଦେବାର ପ୍ରତିଶ୍ରୁତି ଦେଇଥାନ୍ତି । ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ଆମେ ସକାଳୁ ସକାଳୁ ଅନୁଗୁଳ ଛାଡ଼ିଲୁ । ତାଳଚେର ଓ କେନ୍ଦୁଝର ଦେଇ କଲିକତା-ବମ୍ବେ ୬ନମ୍ବର ଜାତୀୟ ରାଜପଥ କଡ଼ରେ ଥିବା 'ଯଶୀପୁର' ଠାରେ ପହଞ୍ଚିଲା ବେଳକୁ ସମୟ ଅତିକ୍ରାନ୍ତ ଅପରାହ୍ନ । ଯଶୀପୁର ଶିମିଳିପାଳ ଅଭୟାରଣ୍ୟର ପ୍ରବେଶ ଦ୍ୱାର କହିଲେ ଅତ୍ୟୁକ୍ତି ହେବନାହିଁ । ସେଠାରେ ରାଜପଥ କଡ଼ରେ ବନବିଭାଗର ଗୋଟିଏ ଡାକବଙ୍ଗଳା ଅଛି । (ଏବେ ଉକ୍ତ ବଂଗଳାଟି 'ଖଇରୀ' ବଙ୍ଗଳା ନାମରେ ନାମିତ) ସେଥିରେ କିନ୍ତୁ ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ ଯୋଜନାର ତତ୍‌କାଳୀନ ନିର୍ଦ୍ଦେଶକ ଶ୍ରୀଯୁକ୍ତ ସରୋଜରାଜ ଚୌଧୁରୀ, ତାଙ୍କର ସଂପର୍କୀୟା ଭଉଣୀ ନୀହାର ଦେବୀ ଓ ଶିମିଳିପାଳ ଜଙ୍ଗଲରୁ ଛୁଆଟି ବେଳୁଆଣି ପାଳିଥିବା ବାଘୁଣୀ 'ଖଇରୀ' ରହୁଥିଲେ । ଏଥିପାଇଁ ଚାରିପଟେ ପ୍ରାୟ ୧୫, ୧୬ ଫୁଟ ଉଚ୍ଚର ଦୃଢ଼ ତାର ବାଡ଼ ଦିଆଯାଇ ବଙ୍ଗଳାଟିକୁ ଆବଦ୍ଧ ଓ ସୁରକ୍ଷିତ କରାଯାଇଥିଲା । ଅଗତ୍ୟା ରାତ୍ରୀଯାପନ ପାଇଁ ଆମେ ଦୁଇବଂଧୁ ଶିମିଳିପାଳ ଅଭୟାରଣ୍ୟ ମଧ୍ୟରେ ଥିବା 'ଚହଲା' ଡାକବଂଗଳା ଉଦ୍ଦେଶ୍ୟରେ ଯାତ୍ରାକଲୁ । ଯଶୀପୁରରୁ 'ଚହଲା' ପହଞ୍ଚିବା ପାଇଁ ଜଙ୍ଗଲ ମଧ୍ୟ ଦେଇ ଯାଇଥିବା କଚ୍ଚା ରାସ୍ତାରେ ଦୁଇଘଣ୍ଟା ଲାଗିଲା ଏବଂ ସେଠି ପହଞ୍ଚିଲାବେଳକୁ ସଂଧ୍ୟା ଅତିକ୍ରାନ୍ତ ହୋଇ ରାତ୍ରୀର ପ୍ରଥମ ପ୍ରହର ଉପନୀତ ପ୍ରାୟ ।

ମାର୍ଚ୍ଚମାସ ହୋଇଥିଲେ ମଧ୍ୟ, ରାତିରେ ଶିମିଳିପାଳ ଅଭୟାରଣ୍ୟ ସ୍ଥିତ 'ଚହଲା' ଡାକବଙ୍ଗଳାରେ ଶୀତ ପ୍ରଚୁର ଅନୁଭୂତ ହେଉଥାଏ । 'ଚହଲା' ଡାକ ବଙ୍ଗଳାରେ, ବନ୍ୟଜନ୍ତୁ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଭାଗନେବା ପାଇଁ ଆସି ସହକାରୀ ବନ ସଂରକ୍ଷକ (ବନ୍ୟପ୍ରାଣୀ) ସ୍ୱରାଜ ଦତ୍ତ ମଧ୍ୟ ରହୁଥିଲେ । ତାଙ୍କର ସହିତ ଡେରାଡୁନ୍‌ରେ ଟ୍ରେନିଂ ନେବା ସମୟରୁ ମୋର ପରିଚୟ ଥିଲା । ୧୯୭୫-୭୬ ମସିହାରେ ଆମର ପ୍ରଥମ ବର୍ଷ ଟ୍ରେନିଂ ସମୟରେ, ଶ୍ରୀ ଦତ୍ତ ଓଡ଼ିଶା ବନ ବିଭାଗ ତରଫରୁ ଡେରାଡୁନ୍‌ଠାରେ ଦିଆଯାଇଥିବା ବର୍ଷିକିଆ ବନ୍ୟଜନ୍ତୁ ପାଠ୍ୟକ୍ରମରେ ପ୍ରଶିକ୍ଷଣ ନେଉଥିଲେ ଏବଂ ସସ୍ତୀକ ଭାରତୀୟ ବନ ମହାବିଦ୍ୟାଳୟର ପୁରୁଣା ହଷ୍ଟେଲ୍‌ରେ ରହୁଥିଲେ । ତାଙ୍କ ସହିତ କଥାବାର୍ତ୍ତା ହେଲାରୁ ଟ୍ରେନିଂ ସମୟର ସ୍ମୃତି ସବୁ ଉଜ୍ଜୀବିତ ହୋଇ ଉଠିଲା । ବଂଗଳା ବାରଣ୍ଡାରେ ପେଟ୍ରୋମାକ୍ସ

ଲାଇଟ୍‌ଟିଏ ଜଳୁଥାଏ । ଆମେସବୁ, ସ୍ୱଳ୍ପାଲୋକିତ କୋଠରି ଭିତରେ 'ଫାୟାର୍ ପ୍ଲେସ୍'ରେ ନିଆଁ ଜଳେଇ ଉଷ୍ମତାକୁ ଉପଭୋଗ କରିବା ସଂଗେ ସଂଗେ ମଝିରେ ମଝିରେ ଚା' ପିଇ ଶୀତରାତିର ପ୍ରଖରତାକୁ ମୁକାବିଲା କରୁଥିଲୁ । ଏହି ସମୟରେ ଶ୍ରୀ ଦତ୍ତ ଗୋଟିଏ 'ନାଇଟ୍ ଭିଜନ'.ଯନ୍ତ୍ର ଆଣି, ସେଥିରେ ବାହାର ଦୃଶ୍ୟ ଦେଖାଇବା ପାଇଁ ଆମକୁ ବଂଗଳା ବାହାରକୁ ଡାକିନେଲେ । ଦୂରବୀକ୍ଷଣ ଯନ୍ତ୍ର ପରି ଯନ୍ତ୍ରଟିଏ । ରାତିରେ ଏହି ଯନ୍ତ୍ର ଭିତରେ ଦେଇ ଦେଖିଲେ, ଦୂର ବହଳ ଅନ୍ଧକାର ଭିତରର ଦୃଶ୍ୟ ମଧ୍ୟ ବେଶ୍ ପ୍ରତୀୟମାନ ହେଉଥାଏ ।

ଶିମିଳିପାଳ ଜଙ୍ଗଲରେ ହାତୀମାନଙ୍କ ସଂଖ୍ୟା ଯଥେଷ୍ଟ ଅଧିକ । ଆଗରୁ ସେମାନେ ଦଳବଦ୍ଧ ହୋଇ ବଙ୍ଗଳା ନିକଟକୁ ଚାଲି ଆସୁଥିଲେ ଓ ସାମ୍ନାରେ ଯାହା ପଡ଼ିଲା ତାକୁ ଭାଙ୍ଗି ରୁଜି ଦେଉଥିଲେ । ନାଇଟ୍ ଭିଜନ ଯନ୍ତ୍ରଟିକୁ ବାହାରେ ଗୋଟିଏ ଷ୍ଟାଣ୍ଡ ଉପରେ ରଖାଯାଇଥାଏ । ତା' ଭିତର ଦେଇ ଦେଖିବାରୁ ଜଣାଗଲା, ଗୋଟିଏ ହାତୀପଲ, ବଙ୍ଗଳା ପାଖର ମହୁଲ ଗଛ ତଳେ ରୁଣ୍ଡ ହୋଇଛନ୍ତି । ବୋଧହୁଏ ଝଡ଼ି ପଡିଥିବା ମହୁଲ ଫୁଲ ଖାଇବା ପାଇଁ ସେମାନେ ସେଠାକୁ ଆସିଛନ୍ତି । ଆମ ମନରେ ଛନକା ପଶିଲା । ହାତୀମାନେ ଆମ ଆଡ଼କୁ ଆଉ ମାଡ଼ି ଆସିବେନିତ ! ଏଇ ସମୟରେ ଶ୍ରୀ ଦତ୍ତ ହଠାତ୍ ହାତୀମାନଙ୍କ ଆଡ଼କୁ ଧୀରେ ଧୀରେ ଆଗେଇଗଲେ । ମୁଁ ତାଙ୍କୁ ହାତୀଙ୍କର ଏତେ ନିକଟକୁ ଯିବାପାଇଁ ବାରଣ କରୁଥାଏ । ଯନ୍ତ୍ର ଭିତର ଦେଇ ଦେଖିଲେ ଜଣାପଡୁଥାଏ, ମିଃ ଦତ୍ତ ହାତୀମାନଙ୍କ ଖୁବ୍ ନିକଟରେ ସାମ୍ନା ସାମ୍ନି ଠିଆ ହୋଇଛନ୍ତି । ତାଙ୍କର ସାହସକୁ ତାରିଫ୍ କରିବା ସଂଗେ ସଂଗେ, ଫେରି ଆସିଲା ପରେ ଏପରି ରିସ୍କ କାହିଁକି ନେଉଛନ୍ତି ବୋଲି ପଚାରିଲି । କାରଣ ହାତୀମାନଙ୍କର ବ୍ୟବହାର ବିଷୟରେ ପ୍ରାକ୍ ଆକଳନ କରିବା କଷ୍ଟକର । ଶ୍ରୀ ଦତ୍ତଙ୍କଠାରୁ ଯାହା ଶୁଣିଲି ସେଥିରେ ମୋ ଅଜ୍ଞତା ଓ ଅନଭିଜ୍ଞତା ପାଇଁ ନହସି ରହି ପାରିଲି ନାହିଁ । କଥାଟି ଏହିପରି ଥିଲା, ହାତୀଙ୍କ ଆକ୍ରମଣରୁ ଡାକବଂଗଳାକୁ ସୁରକ୍ଷିତ ରଖିବା ପାଇଁ, ବଙ୍ଗଳା ଚାରିକଡ଼ରେ ସୁଗଭୀର ପରିଖାମାନ ଖୋଳାଯାଇଛି । 'ଚହଲା' ବଙ୍ଗଳାକୁ ଯିବା ସମୟରେ ଆମେ ଗୋଟେ ପଟାପୋଲ ଉପର ଦେଇ ଆସିଥିଲୁ । ରାତି ହୋଇଥିବାରୁ ସେତେବେଳେ ଏକଥା ଜାଣି ପାରି ନଥିଲୁ । ଆମେ ପାର ହୋଇଯିବା ପରେ ପରେ ପଟା ପୋଲଟିକୁ ଭିତର ପଟକୁ ଉଠାଇ ନିଆଯାଇଥିଲା । ତେଣୁ 'ନାଇଟ୍ ଭିଜନ୍' ଯନ୍ତ୍ରରେ ଶ୍ରୀ ଦତ୍ତ ହାତୀମାନଙ୍କ ନିକଟରେ ଥିବା ଜଣା ପଡୁଥିଲେ ମଧ୍ୟ, ସେ ଖାଇ ବା ଟ୍ରେଞ୍ଚର ଭିତର ପଟେ ଥିଲେ ଏବଂ ହାତୀମାନେ ଟ୍ରେଞ୍ଚ ବାହାରେ ଥିଲେ ।

ପରଦିନ ସକାଳେ, ମୁଁ ଓ ଶ୍ରୀଯୁକ୍ତ ଦାସ ବଙ୍ଗଳା ହତାରେ ବୁଲି ବୁଲି କାକର ଭିଜା ସକାଳର ମହକକୁ ଉପଭୋଗ କରୁଥିଲୁ । ସକାଳର ସେହି ଢାଙ୍ଗୁଲୁ ଢାଙ୍ଗୁଲୁ ଆଲୁଅରେ, ପରିଖା ଚାରିପଟେ ତିନି ଚାରୋଟି କୁକୁର ପରି ଜୀବ ଗୋଟିଏ କୁଟ୍‌ରା ପଛରେ ଗୋଡ଼ାଉଥିବାର ଦୃଶ୍ୟ ଆମର ଦୃଷ୍ଟି ଆକର୍ଷଣ କଲା । ପ୍ରାୟ ଦୁଇ ତିନି ମିନିଟ୍ ଭିତରେ ସେମାନେ ଦଳବଦ୍ଧ ଆକ୍ରମଣ କରି କୁଟ୍‌ରାଟିକୁ ମାରିପକାଇଲେ । ଏହି କୁକୁର ପରି ଦେଖାଯାଉଥିବା ଜୀବ ଗୁଡ଼ିକ ବଳିଆ କୁକୁର ଛଡ଼ା ଆଉ କେହି ନୁହନ୍ତି । ସଂଘବଦ୍ଧ ଭାବରେ ଆକ୍ରମଣ କଲେ ସେମାନେ ବଡ଼ ବଡ଼ ଜନ୍ତୁଙ୍କୁ ମଧ୍ୟ ମାରି ଦେଇପାରନ୍ତି । ଆମ ପାଟି ଶୁଣି ଆଉ କେତେଜଣ ଫରେଷ୍ଟ ଅଫିସର ଓ ଡାକବଙ୍ଗଳାର କର୍ମଚାରୀ ବାହାରକୁ ଦଉଡ଼ି ଆସିଲେ, ଏସବୁ ଗୋଳମାଳରେ ବନ୍ୟ କୁକୁର ଦଳ ମୃତ କୁଟ୍‌ରାଟିକୁ ଛାଡ଼ି ଦେଇ ବଣ ଭିତରେ ଛପିଗଲେ । 'ଚହଲା' ଓୟାରଲେସ୍ ଷ୍ଟେସନରୁ ଭି.ଏଚ.ଏଫ୍ ମେସେଜ ଜରିଆରେ ଯଶୀପୁରଠାରେ ଥିବା ବ୍ୟାଘ୍ର ପ୍ରକଳ୍ପର ନିର୍ଦ୍ଦେଶକ ଶ୍ରୀ ସରୋଜରାଜ ଚୌଧୁରୀଙ୍କୁ ବଳିଆ କୁକୁର ମାନେ, କୁଟ୍‌ରାଟିଏ ମାରିଥିବାର ସମ୍ବାଦ ଜଣେଇ ଦିଆଗଲା । ସଂଗେ ସଂଗେ ସେପଟୁ ନିର୍ଦ୍ଦେଶ ଆସିଲା, କୁଟ୍‌ରାଟିକୁ ଜିପ୍‌ରେ ଲଦି ଯଶୀପୁର ଚାଲିଆସ ।

ଶୀଘ୍ର ଶୀଘ୍ର ନିତ୍ୟକର୍ମ ସାରି, ସାମାନ୍ୟ ପ୍ରାତଃଭୋଜନ ପରେ ଆମେ ତିନିଜଣ ମୁଁ, ଶ୍ରୀ ଦାସ ଓ ଶ୍ରୀ ଦତ୍ତ ଜିପ୍‌ନେଇ ଯଶୀପୁର ବାହାରିଲୁ । ସୁଉଚ୍ଚ ତାରବାଡ଼ ଦ୍ୱାରା ଆବଦ୍ଧ ଯଶୀପୁର ବନବିଭାଗ ବଙ୍ଗଳା ଭିତରକୁ, ଆମ ଜିପ୍ ପ୍ରବେଶ କଲାପରେ, ପୁନର୍ବାର ମୁଖ୍ୟ ଫାଟକକୁ ବନ୍ଦକରି ଦିଆଗଲା । ମୃତ କୁଟ୍‌ରାଟିକୁ ଜିପ୍‌ରୁ କାଢ଼ି , ବ୍ୟାଘ୍ର ପ୍ରକଳ୍ପର ତତ୍ତ୍ୱାବଧାରକ ଶ୍ରୀ ବିତ୍ତନାଥ ନାୟକ (ବର୍ତ୍ତମାନ ସ୍ୱଗତ) ଏ.ସି.ଏଫ୍.ଙ୍କୁ ହସ୍ତାନ୍ତର କଲାପରେ ଆମକୁ ବୈଠକଖାନାରେ ବସିବାକୁ କୁହାଗଲା । ଠିକ୍ ଏତିକିବେଳେ ପ୍ରାପ୍ତ ବୟସ୍କା ଖଇରୀ ବାଘୁଣୀ ବୈଠକଖାନାକୁ ପଶି ଆସିଲା ଏବଂ ଦୁଆର ମୁହଁ ପାଖରେ ଠିଆହୋଇ ଆଭିଜାତ୍ୟପୂର୍ଣ୍ଣ ଚାହାଣିରେ ଆମ ଆଡ଼କୁ ଅନାଇଲା । ମାତ୍ର ଦଶ ହାତ ଦୂରରେ ସଂପୂର୍ଣ୍ଣ ମୁକ୍ତ ଅବସ୍ଥାରେ ବାଘଟିଏ ଆମ ଆଡ଼କୁ ନିବିଷ୍ଟ ଚିତ୍ତରେ ଅନେଇ ରହିଛି । କାହା ଘରକୁ ଯାଇଥିଲେ ପୋଷା କୁକୁରଟିଏ ଦଉଡ଼ି ଆସିଲେ ମଧ୍ୟ ଭୟରେ ସଂକୁଚିତ ହୋଇଯିବା ଲୋକ ମୁଁ । ଏଠି କେବଳ ମନେ ମନେ ଭଗବାନଙ୍କୁ ସ୍ମରଣ କରିବା ବ୍ୟତୀତ, ଅନ୍ୟ କ'ଣ ବା ଉପାୟ ଅଛି । ଅଳ୍ପ କିଛି ସମୟ ଉପରାନ୍ତେ, ଖଇରୀ ନିଜ ବସିବା ସ୍ଥାନରୁ ଉଠି, ସ୍ୱରାଜ ଦତ୍ତଙ୍କ ନିକଟକୁ ଆସିଲା ଓ ତାଙ୍କ ନିକଟରେ ନସର ପସର ହେଲା । ବୋଧହୁଏ ସ୍ୱରାଜବାବୁ ବନ୍ୟପ୍ରାଣୀ ବିଭାଗରେ ଏ.ସି.ଏଫ୍. ଥିବାରୁ, ଖଇରୀ ସହ

ଆଗରୁ ତାଙ୍କର ଦେଖା ସାକ୍ଷାତ ହୋଇଥାଇପାରେ । କିଛି ସମୟ ପରେ ଖଇରୀ ମୁହଁ ବୁଲାଇ ମୋ ଆଡ଼କୁ ଚାହିଁଲା । ଭୟରେ ଜଡ଼ସଡ଼ ହୋଇ ମୁଁ ଠିଆ ହୋଇ ପଡ଼ିଥାଏ । ଯୋଗକୁ ଏହି ସମୟରେ ଶ୍ରୀ ସରୋଜରାଜ ଚୌଧୁରୀ ବୈଠକ ଖାନା ଭିତରକୁ ପଶି ଆସିଲେ ଏବଂ ଖଇରୀକୁ ନାଁ ଧରି ଡାକିଲେ । ଖଇରୀ ବୁଲିଯାଇ ଚୌଧୁରୀଙ୍କ ପାଖକୁ ଚାଲିଗଲା ଏବଂ ଶ୍ରୀ ଚୌଧୁରୀ ଗେହ୍ଲାକରି ତା' ପିଠିକୁ ଦୁଇଥର ଥାପୁଡ଼େଇ ଦେବାରୁ ଖଇରୀ ବାହାର ବାରଣ୍ଡାକୁ ଚାଲିଗଲା ।

ଏ ଭିତରେ ମୃତ କୁଟ୍‌ରାଟିର ଛାଲ ଉତାରି ଦିଆଯାଇ ସାରିଥିଲା । ଦୁଇଜଣ ବନରକ୍ଷୀ, ଜନ୍ତୁଟିକୁ ଖଣ୍ଡ ଖଣ୍ଡ କରି କାଟି ମାଂସ ବାହାର କରୁଥିଲେ । କୁଟ୍‌ରାଟିର ଲୋଭନୀୟ ଫଡ଼ିଆ ଦୁଇଟି ଆଣି ତାକୁ ଅମୁଲ୍‌ରେ ଗୋଳାଇ, ଛୁଆଙ୍କୁ ଖୁଆଇଲା ଭଳି ନୀହାର ଦେବୀ ଖଇରୀକୁ ଖୁଆଇବାକୁ ଲାଗିଲେ । ନୀହାରଙ୍କ ହାତରୁ ନେଇ, ଖଇରୀ ବାଘୁଣୀ ଅମୁଲ ଦୁଧ ଗୋଳାଯାଇଥିବା ମାଂସ ଫଡ଼ିଆ ଆଗ୍ରହରେ ଖାଇବା ଏକ ବିରଳ ଦୃଶ୍ୟ । କେବଳ ସେତିକି ନୁହେଁ, ପରେ ଶୁଣିଲି, ଶ୍ରୀଯୁକ୍ତ ଚୌଧୁରୀ ନୀହାର ଦେବୀ ଓ ଅନ୍ୟମାନେ ରହୁଥିବା ଡାକ ବଙ୍ଗଳାରେ ଖଇରୀ ମଧ୍ୟ ବିନା ବାଧାରେ ସ୍ୱଚ୍ଛନ୍ଦରେ ଚଳପ୍ରଚଳ କରିଥାଏ । ଏପରିକି ରାତିରେ ନୀହାର ଦେବୀଙ୍କ ଶୟନ କୋଠରିରେ, ମଧ୍ୟ ଅନ୍ୟ ଏକ ଖଟ ଉପରେ ଶୁଏ ।

ମଧ୍ୟାହ୍ନ ଭୋଜନ ସମୟରେ ଶ୍ରୀଯୁକ୍ତ ଚୌଧୁରୀ, ନୀହାର ଦେବୀ ଓ ଆମେ ଚାରିଜଣ ଏ.ସି.ଏଫ୍. ଡାଇନିଂ ଟେବୁଲ୍ ଚାରିପଟେ ବସି ଖାଇବା ଅବସରରେ, ଖଇରୀର ଆଚାର ବ୍ୟବହାର, ଚାଲିଚଳଣ ଓ ହାବଭାବ ସଂପର୍କରେ ଶ୍ରୀଯୁକ୍ତ ଚୌଧୁରୀଙ୍କ ମୁହଁରୁ ଶୁଣୁଥିଲୁ । ଏହି ସମୟ ଭିତରେ ଖଇରୀ କୋଠରି ଭିତରକୁ ପଶିଆସି ନିହାର ଦେବୀଙ୍କ ପାଖରେ ସିଧା ଡାଇନିଂ ଟେବୁଲ୍ ଉପରେ ଆଗ ଗୋଡ଼ ଦୁଇଟି ରଖି ଝୁଲି ପଡ଼ିଲା । ଚୌଧୁରୀ ସାହବଙ୍କର ବାରଣ ସତ୍ତ୍ୱେ ବି ଖାଇବା ପ୍ଲେଟ୍‌ରେ ମୁହଁ ଲଗାଇ ଦେବାକୁ ଉଦ୍ୟତ ହେଲା । ଏହି ସମୟରେ ଶ୍ରୀଯୁକ୍ତ ଚୌଧୁରୀ ଛିଡ଼ା ହୋଇ ବସିଥିବା ଚୌକିଟିକୁ ମାରିବା ଭଂଗୀରେ ଖଇରୀ ଆଡ଼କୁ ଉଠାଇଲେ, ବାସ୍ ସେତିକିରେ ସେ ଡାଇନିଂ ରୁମ୍‌ରୁ ଅପସରି ଗଲା । ପରେ ଶୁଣିଲି ଯେ ପିଲାଟି ଦିନରୁ ତା'ର ଚୌକିକୁ ଭୀଷଣ ଭୟ । ତେଣୁ ଚୌକିଟିଏ ଟେକିଧରି ମାରିବାକୁ ଉଠାଇଲେ, ସେ ଭୟଭୀତ ହୋଇ ପ୍ରସ୍ଥାନ କରେ ।

ମଧ୍ୟାହ୍ନ ଭୋଜନ ପରେ, ବୈଠକ ଖାନାରେ କିଛି ସମୟ ବିଶ୍ରାମ ନେଇ ମୁଁ ଓ ବଳଭଦ୍ରବାବୁ ବାରିପଦା ଯିବାକୁ ବାହାରିଲୁ । ତହିଁ ପରଦିନ ବାରିପଦାରେ ମୋର ଜଏନିଂ

ରିପୋର୍ଟ ଦେବାର ଥାଏ । ସାମ୍ନା ବଗିଚାରେ ଖଇରୀ ଓ ବାଘା (ମିଃ ଚୌଧୁରୀଙ୍କର ପାଳିତ କୁକୁରର ନାମ) ଦୌଡ଼ା ଦୌଡ଼ି ହୋଇ ଖେଳୁଥିଲେ । ବାଘା (କୁକୁର) ଖୁବ୍ ଜୋର୍‌ରେ ଦୌଡ଼େ । କିନ୍ତୁ କିଛି ସମୟ ପରେ ଦୌଡ଼ିବା ଆରମ୍ଭ କରି, ମାତ୍ର ଦୁଇ, ଚାରି ଲମ୍ଫ ଦେଇ ଖଇରୀ ତାକୁ ମାଡ଼ି ବସେ । ପାଳିତ ବାଘୁଣୀ ଓ କୁକୁରଙ୍କର ଏ ପ୍ରୀତି ଯୁଦ୍ଧ ଦୃଶ୍ୟ କେବଳ ଉପଭୋଗ୍ୟ ନୁହେଁ, ବିରଳ ମଧ୍ୟ ।

ତୃତୀୟ ଥର ପାଇଁ, ଘଞ୍ଚ ଜଙ୍ଗଲ ଭିତରେ ଅତର୍କିତ ବାଘର ସାମ୍ନା କରିବାକୁ ପଡ଼ିଥିଲା, ୧୯୮୪ ମସିହାରେ । ସେତେବେଳକୁ ମୁଁ ନବରଂଗପୁର ଫରେଷ୍ଟ ଡିଭିଜନରୁ ବଦଳି ହୋଇ, ରାୟଗଡ଼ା ଡିଭିଜନରେ ଡି.ଏଫ୍.ଓ. ଭାବରେ କାର୍ଯ୍ୟ କରୁଥାଏ । ସେ ସମୟକୁ ରାୟଗଡ଼ା ଜିଲ୍ଲାର ମାନ୍ୟତା  ପାଇନଥାଏ । କୋରାପୁଟ ଜିଲ୍ଲା ଅଧୀନରେ ରାୟଗଡ଼ା ଗୋଟିଏ ସବ୍‌ଡିଭିଜନ୍ ମାତ୍ର । କୋରାପୁଟ ଜିଲ୍ଲାର ତତ୍‌କାଳୀନ ଜିଲ୍ଲାପାଳଥାନ୍ତି, ଶ୍ରୀ ଅରୁଣ କୁମାର ସାମନ୍ତରାୟ, ଆଇ.ଏ.ଏସ୍. ଏବଂ ଏସ୍.ପି ଶ୍ରୀ  ବିଦ୍ୟା ଭୂଷଣ ମହାନ୍ତି, ଆଇ.ପି.ଏସ୍. । ଦିନେ ଅପରାହ୍ନ ତିନିଟା ବେଳକୁ ସେ ଦୁହେଁ ଆସି ମୋ କ୍ୱାଟର୍ସରେ ହାଜର ହୋଇଗଲେ । ପି.ଡବ୍ଲ୍ୟୁ.ଡି. ଡାକବଙ୍ଗଳାକୁ ଲାଗି ରାୟଗଡ଼ା ଡି.ଏଫ୍.ଓ.ଙ୍କର ବାସଭବନ ଓ ତତ୍‌ସଂଲଗ୍ନ ବିରାଟ ହତା । ଦୁଇ ଦୁଇଟା ଗେଟ୍ ପାରହେଲେ ବାସଭବନ ନିକଟରେ ପହଞ୍ଚି ହେବ । ସେ ଦୁହେଁ ପହଞ୍ଚି ସଂଗେ ସଂଗେ ଚନ୍ଦ୍ରପୁର ଯିବାପାଇଁ ପ୍ରସ୍ତାବ ଦେଲେ ।

ଚନ୍ଦ୍ରପୁର, ରାୟଗଡ଼ା ସବ୍‌ଡିଭିଜନ୍‌ର ଏକ ଉପାନ୍ତ ବ୍ଲକ୍ । ସେଠାକାର ବ୍ଲକ୍ ଅଫିସ୍‌ରେ, ବ୍ଲକର ସମସ୍ତ ବିଭାଗୀୟ ଅଧିକାରୀମାନଙ୍କର ଏକ ସମୀକ୍ଷା ବୈଠକ ସଂଧ୍ୟା ସମୟକୁ ଡକାଯାଇଥାଏ ଏବଂ ଜିଲ୍ଲାପାଳ ସେଥିରେ ଉଦ୍‌ବୋଧନ ଦେବାର ଥାଏ । ଏସ.ପି. ଏବଂ ମୋତେ ସାଙ୍ଗରେ ନେବାର ଉଦ୍ଦେଶ୍ୟ ଥିଲା, ରାତିରେ ଫେରିବା ବାଟରେ ଘଞ୍ଚ ଜଙ୍ଗଲ ଭିତର ଦେଇ ଆସିବାକୁ ପଡୁଥିବାରୁ, ବନ୍ୟ ଜୀବଜନ୍ତୁ କିଛି ଦୃଶ୍ୟମାନ ହୋଇପାରନ୍ତି । ଆମର ଆଶା ଥିଲା, ଯିବାବେଳେ ରାସ୍ତାରେ ବଣୁଆ ହାତୀ ତ ନିଶ୍ଚୟ ଦେଖିବାକୁ ମିଳିବ । କାରଣ ଚନ୍ଦ୍ରପୁର ବ୍ଲକ୍‌ରେ ହାତୀ ଉପଦ୍ରବ ବା ହାତୀମାନଙ୍କ ଦ୍ୱାରା ଫସଲ ନଷ୍ଟ ହେଉଥିବା, ଏକ ନିତିଦିନିଆ ଖବର । ଆମେ କିନ୍ତୁ ଭାବିଥିଲୁ, ଗଭୀର ରାତିରେ ଫେରିବା ବାଟରେ ବାଘ ବା କଲରାପତରିଆ ବାଘଟିଏ ସହିତ ହୁଏତ ଭେଟ ହୋଇଯାଇପାରେ ।

ଚନ୍ଦ୍ରପୁର ଯିବାକୁ ହେଲେ, ରାୟଗଡ଼ାଠାରୁ କାଠ ବ୍ୟବସାୟର ପେଣ୍ଠସ୍ଥଳୀ ମୁନିଗୁଡ଼ା ଯିବାକୁ ପଡ଼େ । ବାଟରେ ବିଷମ କଟକ ପାଖାପାଖି ରେଳ ଲାଇନ୍ ଅତିକ୍ରମ କରିବାକୁ ହୁଏ । ମୁନିଗୁଡ଼ାଠାରୁ ତୁମୁଡ଼ିବନ୍ଧ ରାସ୍ତାରେ କିଛିବାଟ ଗଲେ, ଡାହାଣପଟକୁ ଅଧାପିଚୁ, ଅଣଓସାରିଆ ରାସ୍ତାଟିଏ 'ଡାଙ୍ଗସୁରୁଡ଼ା' ଦେଇ ଚନ୍ଦ୍ରପୁର ଯାଇଛି । ଡାଙ୍ଗସୁରୁଡ଼ା ପର୍ଯ୍ୟନ୍ତ ରାସ୍ତା ଏକପ୍ରକାର ଭଲ ଓ ନିତିଦିନିଆ ରାସ୍ତା । ଖରାଦିନ ଚାରିମାସ ବ୍ୟତୀତ, ବାକି ଆଠମାସ ସରକାରୀ ବସ୍ କେବଳ ଡାଙ୍ଗସୁରୁଡ଼ା ପର୍ଯ୍ୟନ୍ତ ଯାଇ ରୁହେ । ସେଠୁ ଲୋକମାନେ ଚାଲିକରି ବା ସାଇକେଲ୍‌ରେ ଚନ୍ଦ୍ରପୁର ଯାଇଥାନ୍ତି । ଏହି ଛକରୁ ଦୁଇ କିଲୋମିଟର ଗଲେ ପଡ଼ିବ ହନୁମନ୍ତପୁର ନାଳ । ଠିକ୍ ନାଳ ଆରପଟେ ରେଭେନ୍ୟୁ ଡାକ ବଂଗଳାଟିଏ ରହିଛି । ଶାଳ, ମହୁଲ ଓ ବାଉଁଶ ଜଙ୍ଗଲର ପ୍ରାକୃତିକ ପରିବେଷ୍ଟନୀ ଭିତରେ ଜରାଜୀର୍ଣ୍ଣ ବଙ୍ଗଳାଟିଏ । ଚୌକିଦାରଠାରୁ ଜଣାଗଲା, ହାତୀ ଭୟରେ ରାତିରେ କେହି ସେ ବଙ୍ଗଳାରେ ରୁହନ୍ତି ନାହିଁ । ମୁହଁ ସଞ୍ଜ ହୋଇଗଲେ ହାତୀପଲ ପାଣି ପିଇବା ପାଇଁ ନାଳ କୂଳକୁ ଗଡନ୍ତି । ତା' ଆଗରୁ ବଙ୍ଗଳାରେ ତାଲା ଲଗେଇ ଚୌକିଦାର ତା' ନିଜ ଗାଁକୁ ଚାଲିଯାଏ ।

ଯିବାବେଳେ, ହନୁମନ୍ତପୁର ନିକଟରେ ଅଣଓସାରିଆ ନାଳ ଅତିକ୍ରମ କରିବା ସମୟରେ ଅଦୂରରେ ଦୁଇଟି ହାତୀ ନାଳରୁ ପାଣି ପିଉଥିବାର ଦୃଶ୍ୟ ଦେଖିବାକୁ ମିଳିଲା । ସେତେବେଳକୁ ଜଙ୍ଗଲ ଭିତରେ ଜାଙ୍ଗୁ ଲୁ ଜାଙ୍ଗୁଲୁ ସଂଜ ନଇଁ ଆସୁଥାଏ । ନାଳ ଉପରେ ଥିବା କାଠ ପୁଲିଆଟି ଭାଙ୍ଗି ଯାଇଥିଲା; କିନ୍ତୁ ସଂଯୋଗ ବଶତଃ, ବାଉଁଶ କମ୍ପାନୀ ଜଙ୍ଗଲରୁ ବାଉଁଶ କାଢ଼ିବା ପାଇଁ ଗୋଟିଏ ଖରାଦିନିଆ ବିକଳ୍ପ ରାସ୍ତା ନାଳ ଉପରେ କରିଥାନ୍ତି । ସେହି ରାସ୍ତାରେ ଆମେ ଜିଲ୍ଲାପାଳଙ୍କ ଆମ୍ବାସାଡର କାର୍‌ରେ ସିଧାସଳଖ ଯାଇ ଚନ୍ଦ୍ରପୁରରେ ପହଞ୍ଚିଲୁ । ପଛରେ ବନ ବିଭାଗର ଜିପ୍ ଅନୁସରଣ କରୁଥାଏ ।

ବାଟସାରା ରାସ୍ତାର ଦୁଇକଡ଼ରେ ଅକ୍ଷତ ଶାଳ ଜଙ୍ଗଲ । ପିଆଶାଳ, କୁରୁମ ଓ ମହୁଲ ଗଛ ମଧ୍ୟ ବହୁତ ରହିଛି । ଶାଳ ଗଛ ଗୁଡ଼ିକ ଡେଙ୍ଗା ହୋଇ ସିଧାସଳଖ ପେନ୍‌ସିଲ ଭଳି ଉପରକୁ ଉଠିଛନ୍ତି । ତଳେ ବାଉଁଶ ଓ ବେତବୁଦା ଜଙ୍ଗଲକୁ ଆହୁରି ନିଘଞ୍ଚ କରି ଗଢ଼ିଛି । ଗମନାଗମନର ଅସୁବିଧା ହେତୁ, ଏହି ଜଙ୍ଗଲ ଗୁଡ଼ିକ ଏ ପର୍ଯ୍ୟନ୍ତ ଅକ୍ଷତ ରହିପାରିଛି । ନଚେତ୍ ନବରଂପୁର ବା ମାଲ୍‌କାନଗିରି ସମତଳ ଅଞ୍ଚଳର ଜଙ୍ଗଲ ପରି ଏଗୁଡ଼ିକ ମଧ୍ୟ ସଫା ହୋଇ ସାରନ୍ତାଣି । ଶାଳବଣର ଜଙ୍ଗଲ ଭିତରେ ଚନ୍ଦ୍ରପୁର ବ୍ଲକ୍ ଗୋଟିଏ ଛୋଟିଆ

ଗାଁ କହିଲେ ଚଳେ । ସମୁଦାୟ ଗାଁଟିରେ ମୋଟେ ଅଶୀରୁ ଶହେ ଘର ହେବ । ଅଫିସ୍ ଭିତରେ ବ୍ଲକ୍ ଅଫିସ୍, ପ୍ରାଥମିକ ଚିକିତ୍ସାଳୟ, ରାଜସ୍ୱନିରୀକ୍ଷକ ଙ୍କ ଅଫିସ୍ ଏବଂ ବନରକ୍ଷୀ ବିଟ୍ ଘର । ଅଫିସ୍ କେତୋଟି ଥିବାରୁ ମାଇନର୍ ସ୍କୁଲଟିଏ ମଧ୍ୟ ଗଢ଼ି ଉଠିଛି । ଚନ୍ଦ୍ରପୁର ବ୍ଲକ୍‌ର ସୀମାନ୍ତରୁ ଆରମ୍ଭ ହୋଇଛି, ଗଂଜାମ ଜିଲ୍ଲାର 'ଅଡ଼ବା' ରିଜର୍ଭ ଜଙ୍ଗଲ ଓ ଫୁଲବାଣୀ ଜିଲ୍ଲାର 'କୋଠଗଡ଼' ରିଜର୍ଭ ଜଙ୍ଗଲ । ଏହି ତିନୋଟି ଜିଲ୍ଲାର ସୀମାନ୍ତ ଅଂଚଳର ନିଘଞ୍ଚ ଶାଳ, ବାଉଁଶ ବଣ ହାତୀ ପଲଙ୍କର ଚରାଭୂଇଁ ।

ଆମେ ଚନ୍ଦ୍ରପୁରରେ ପହଞ୍ଚିଲା ବେଳକୁ, ବ୍ଲକ୍ ଅଫିସ୍‌ରେ ବ୍ଲକ୍‌ସ୍ତରୀୟ ସବୁ ବିଭାଗର ଅଧିକାରୀ ଓ ଗ୍ରାମବାସୀମାନଙ୍କ ଦ୍ୱାରା ଭରପୂର ହୋଇ ଯାଇଥାଏ । ଅଳ୍ପ ସମୟପରେ ପେଟ୍ରୋମାକ୍‌ସ ଲଗାଯାଇ ସଭାକାର୍ଯ୍ୟ ଆରମ୍ଭ ହେଲା । ବ୍ଲକ୍‌ରେ ହେଉଥିବା ପ୍ରଗତିମୂଳକ କାର୍ଯ୍ୟକ୍ରମ ଓ ସ୍ଥାନୀୟ ଲୋକଙ୍କର ବିଭିନ୍ନ ସମସ୍ୟା ସଂପର୍କରେ ଜିଲ୍ଲାପାଳ ସମୀକ୍ଷା କଲେ । ଜିଲ୍ଲାପାଳ ଏବଂ ଉପସ୍ଥିତ ଅନ୍ୟ ସରକାରୀ ଅଫିସର୍‌ମାନଙ୍କ ପାଇଁ ଅନ୍ୟ ଏକ କୋଠରିରେ ରାତ୍ରୀଭୋଜନର ଆୟୋଜନ କରାଯାଇଥାଏ । ଭୋଜନ ସମାପନ ପରେ ରାତ୍ରୀ ପ୍ରାୟ ଦଶଟାବେଳକୁ ଆମେ ଚନ୍ଦ୍ରପୁର ଛାଡ଼ିଲୁ । ଚନ୍ଦ୍ରପୁରଠାରୁ ହନୁମନ୍ତପୁର ନାଳ ପର୍ଯ୍ୟନ୍ତ ୧୪ କିଲୋମିଟର ରାସ୍ତା ଅତ୍ୟନ୍ତ ଅଣଓସାରିଆ କଚ୍ଚାରାସ୍ତା । କିଛି ବାଟ ଆସିଲାପରେ ଜଣାପଡ଼ିଲା, ସଂଧ୍ୟା ସମୟରେ ଏ ପାଖରେ ହୁଏତ ଅସରାଏ ଭଲ ବର୍ଷା ହୋଇଯାଇଛି । ରାସ୍ତା ସାରା କର୍ଦ୍ଦମାକ୍ତ ଓ ଖାଲ ଜାଗାମାନଙ୍କରେ ପାଣି ଜମିରହିଛି । ହଠାତ୍ ଆମ କାର୍‌ଟି କାଦୁଅ ଭିତରେ ଗଳି ପଡ଼ିଲା । କାର୍‌ର ଡ୍ରାଇଭର ଓ ପଛରେ ଜିପ୍‌ରେ ଆସୁଥିବା କେତେଜଣ ବନବିଭାଗ କର୍ମଚାରୀ ବାରଂବାର ଚେଷ୍ଟା କରି ଗାଡ଼ିଟିକୁ କାଦୁଅରୁ ଉଠାଇବା ପାଇଁ ବିଫଳ ହେଲେ । ଚନ୍ଦ୍ରପୁର୍ ବ୍ଲକ୍ ଅଫିସ୍‌ଠାରୁ ଆମେ ପ୍ରାୟ ପାଞ୍ଚ, ଛଅ କିଲୋମିଟର ଦୂରକୁ ଆସି ସାରିଥିଲୁ । ଅଗତ୍ୟା ଜିପ୍‌ଟି ଫେରିଯାଇ ବ୍ଲକ୍ ଅଫିସରେ ଖବର ଦେଲା । ପ୍ରାୟ ଅଧଘଣ୍ଟାଏ ଭିତରେ ୬୦ରୁ ୭୦ଜଣ ଗାଁ ଲୋକଙ୍କୁ ନେଇ ବ୍ଲକ୍ କର୍ମଚାରୀମାନେ ପହଞ୍ଚି ଗଲେ ଏବଂ ଖୁବ୍ ଅଳ୍ପ ସମୟ ଭିତରେ ଗାଁ ବାଲାମିଶି, କାଦୁଅରୁ କାର୍‌ଟିକୁ ଶୂନ୍ୟେଶୂନ୍ୟେ ଉଠାଇ ନେଇ ଦଶହାତ ଦୂରରେ ପୁନର୍ବାର ରାସ୍ତା ଉପରେ ରଖିଦେଲେ । ଏହାପରେ ଡ୍ରାଇଭର ବେଶ୍ ସତର୍କତାର ସହିତ ଧୀରେ ଧୀରେ କାର୍ ଚଳାଇ ହନୁମନ୍ତପୁରରେ ପହଞ୍ଚିଗଲା । ନାଳଟପି ଦୁଇ କିଲୋମିଟର ଆଗେଇ ଯିବାପରେ ଆସିଲା ଡାଙ୍ଗସୁରୁଡ଼ା ଛକ । ଏଇଠୁ ଅଧା ପିଚୁ ଓ ମୋରମ ବିଛା ରାସ୍ତାରେ ଯାତ୍ରା କରିବା ଅପେକ୍ଷାକୃତ ସହଜ ଥିଲା ।

ରାତି ଦଶଟାରେ ଚନ୍ଦ୍ରପୁର ବ୍ଲକ୍ ଛାଡ଼ିବା ପରେ ପରେ ହନୁମନ୍ତପୁର, ଡାଙ୍ଗସୁରୁଡା ଦେଇ ମୁନିଗୁଡ଼ାରେ ପହଞ୍ଚିଲା ପର୍ଯ୍ୟନ୍ତ, ରାସ୍ତାଦୁଇ କଡ଼ର ଗହଳ ବୃକ୍ଷଲତା ଭିତରେ ଖୁନ୍ଦି ହୋଇ ରହିଥିବା ଅନ୍ଧାର ଭେଦ କରି ଆମ୍ଭମାନଙ୍କର ଆଖି ତରସି ଯାଉଥିଲା, ହୁଏତ ଅଂଧାର ଭିତରେ ଦୃଶ୍ୟମାନ ହେବ, କୌଣସି ଏକ ଜନ୍ତୁର ଦୁଇଟି ରଡ଼ ନିଆଁ ପରି ଜଳନ୍ତା ଆଖି । ନଚେତ୍ କେଉଁଠି ଆମ ସାମ୍ନାରେ କାର୍‌ର ଉଜ୍ଜ୍ୱଳ ଆଲୋକରେ ବାଘଟିଏ ବା ଚିତାବାଘଟିଏ ରାସ୍ତା ଅତିକ୍ରମ କରିଯିବ । କିଂବା କେଉଁଠି ରାସ୍ତା କଡ଼ର ମହୁଲ ଗଛ ମୂଳରେ ଭାଲୁ ଠିଆହୋଇ ଝଡ଼ି ପଡ଼ିଥିବା ମହୁଲଫୁଲ ଖାଇ ଚାଲିଥିବେ । ରାତିରେ ଜଙ୍ଗଲ ରାସ୍ତାଦେଇ ଫେରିବାର ଏହାହିଁ ଆମ୍ଭମାନଙ୍କର ଏକମାତ୍ର ଉଦ୍ଦେଶ୍ୟଥିଲା । ଅଥଚ ଆମକୁ କେବଳ ନିରାଶାର ସାମ୍ନା କରିବାକୁ ପଡ଼ିଲା । ଦୀର୍ଘ ପଥ ଯାତ୍ରା ଭିତରେ ଗୋଟିଏ ବି ହିଂସ୍ର ଜନ୍ତୁ ଦୃଶ୍ୟ ହେଲେ ନାହିଁ । ସତରେ ରାତିରେ ଜଙ୍ଗଲ ଭିତରେ ଯାତ୍ରା କଲାବେଳେ ଚତୁଷ୍ପଦ ହିଂସ୍ର ଜନ୍ତୁ ଦେଖିବା ସୁଯୋଗ ନୁହେଁ ତ ଆଉ କ'ଣ ? ଆଜି ହୁଏତ ଆମର ଯୋଗନାହିଁ । ଜିଲ୍ଲାପାଳ ଅରୁଣ ସାମନ୍ତରାୟ ଆମ ଯାତ୍ରାର ବିଫଳତା ପାଇଁ ବେଳେବେଳେ ମୃଦୁ ଆକ୍ଷେପ କରିବାକୁ ମଧ୍ୟ ପଛାଉନଥାନ୍ତି ।

'ମୁନିଗୁଡ଼ା'ରୁ ବିଷମ କଟକ, ଚାଟିକୋଣା ଦେଇ ରାୟଗଡ଼ା ପର୍ଯ୍ୟନ୍ତ ରାସ୍ତା ପିଚୁ ଓ ଅପେକ୍ଷାକୃତ ବେଶ୍ ଭଲ । ଆମ କାର୍‌ର ଗତି ତେଣୁ ବଢ଼ି ଯାଇଥାଏ । ମୁନିଗୁଡ଼ା ପାରହୋଇ ସାରିଥିଲେ ମଧ୍ୟ, ରାସ୍ତାର ଦୁଇକଡ଼ରେ ତଥାପି ରହିଥାଏ ବଡ଼ ବଡ଼ ବୃକ୍ଷର ଘନ ଜଙ୍ଗଲ । ବହଳ ଅଂଧାର ଭିତରେ ଗଛମାନେ ଡେଙ୍ଗା ଡେଙ୍ଗା ଭୂତ ପରି ପ୍ରତୀୟମାନ ହେଉଥାନ୍ତି । ରାତି ୧୨ଟା ପରେ ଜଙ୍ଗଲ ଭିତର ଦେଇ ଯାଉଥିବାରୁ, ସାମାନ୍ୟ ଥଣ୍ଡା ମଧ୍ୟ ଅନୁଭୂତ ହେଉଥାଏ । ସଂପୂର୍ଣ୍ଣ ନିସ୍ତବ୍ଧତା ଓ ନିର୍ଜନ ପରିବେଶ ଭିତରେ କେବଳ ଦୁଇଟି ଗାଡିର ଇଂଜିନ୍ ଚାଲିବାର ଶବ୍ଦ ସଂଚରିତ ହେଉଥାଏ । ବିଷମ କଟକ ଟପିବା ପରେ ଏବଂ ଚାଟିକୋଣା ଆସିବା ଆଗରୁ ରାୟଗଡ଼ାରୁ କେସିଙ୍ଗା ଦେଇ ରାୟପୁର ବା ବଲାଙ୍ଗୀର ଯାଇଥିବା ରେଳପଥକୁ ଅତିକ୍ରମ କରିବାକୁ ପଡ଼ିଥାଏ । ଲେଭଲକ୍ରସିଂ ଗେଟ୍ ବନ୍ଦଥିବାରୁ ଆମର ଗାଡ଼ି ସେଇଠି ଅଟକି ଗଲା । ରାତି ଦଶଟାପରେ ଏ ରାସ୍ତାରେ ଯାନବାହନ ବିଶେଷ ଚଳପ୍ରଚଳ ନଥିବାରୁ, ଲେଭଲକ୍ରସିଂ ଗେଟ୍ ପକେଇଦେଇ ଗ୍ୟାଙ୍ଗ୍‌ମ୍ୟାନ୍ ଜଗୁଆଳୀଟି ବିଟ୍‌ଘରେ ବୋଧହୁଏ ଆରାମରେ ଶୋଇଯାଇଛି । କାର୍‌ର ହେଡଲାଇଟ୍ ଜଳେଇ ରଖି ଏବଂ ଇଂଜିନ୍‌କୁ ଚାଲୁରଖି ଆମେ ଜଗୁଆଳୀକୁ ଉଠେଇବା ପାଇଁ ବାରଂବାର ହର୍ଣ୍ଣ ବଜାଇଲୁ, ପଛରେ ଆସୁଥିବା ଜିପ୍‌ଟି ଷ୍ଟାର୍ଟ ବନ୍ଦ କରି ଦେଇଥାଏ କିନ୍ତୁ ହେଡ୍‌ଲାଇଟ୍

ଜଳେଇ ରଖିଥାଏ । ଠିକ୍ ଏହି ସମୟରେ ଦୁଇଟି ଆଖି ରେଲୱେ ବିଟ୍ ହାଉସ୍‌ର ପଛପଟେ ଥିବା ବୁଦୁବୁଦିକିଆ ଜଙ୍ଗଲ ଭିତରୁ ହେଡଲାଇଟ୍‌ର ଆଲୋକରେ ରଡ଼ ଅଙ୍ଗାର ପରି ଧପ୍‌ଧପ୍ ଜଳି ଉଠିଲା । କାର୍ ଡ୍ରାଇଭର ଠାରୁ ସୂଚନାପାଇ, ଆମେ ସମସ୍ତେ ସତର୍କତାର ସହ ସେହି ଦିଗରେ ଲକ୍ଷ୍ୟ କେନ୍ଦ୍ରୀଭୂତ କଲୁ । ଏହି ସମୟ ଭିତରେ ଗାଡ଼ିଗୁଡ଼ିକ ସାମାନ୍ୟ ଆଗପଛ କରି ନିର୍ଦ୍ଦିଷ୍ଟ ସ୍ପଟ୍‌ରେ ହେଡଲାଇଟ୍‌ର ଆଲୋକକୁ କେନ୍ଦ୍ରୀଭୂତ କଲେ । ଜିପ୍ ଡ୍ରାଇଭର ମଧ୍ୟ ତାର ଇଂଜିନ୍ ଷ୍ଟାର୍ଟ କରିଦେଇଥାଏ । ଜନ୍ତୁଟିର ଦେହରେ ଥିବା ଲମ୍ବା କଳା କଳା ପଟା ଦାଗ ଓ ଦୋଳାୟମାନ ମୁଣ୍ଡର ଆକୃତିରୁ ଜଣାପଡ଼ିଲା, ଲେଭଲକ୍ରସିଂ ଗେଟ୍ ସେପଟେ ଅପେକ୍ଷା କରି ରହିଥିବା ଜୀବଟି ବାଘ ବା ବାଘୁଣୀ ନିଶ୍ଚୟ । ଏକ ଲୟରେ ଓ ନିବିଷ୍ଟ ଚିତ୍ତରେ ଆମ ଗାଡ଼ି ଆଡକୁ ଅନେଇ ରହିଛି । ହୁଏତ ସୁଯୋଗ ପାଇଲେ ଲମ୍ଫ ମାରିପାରେ । କିନ୍ତୁ ଗାଡ଼ି ଇଂଜିନ୍ ଚାଲିବାର ଶବ୍ଦ ହୁଏତ ତାକୁ ବାଧା ଦେଉଥିଲା ବା ଏହି ଉଦ୍ୟମରୁ ନିବର୍ତ୍ତାଉଥିଲା । ମନରେ ଆମର ଭୟ ମିଶ୍ରିତ ଉତ୍ତେଜନା !

ଏହି ସମୟରେ ବିଟ୍ ହାଉସ କବାଟ ଖୋଲିବାର ଆବାଜ ଆସିଲା । ଆମ ଗାଡ଼ିର ହର୍ଣ୍ଣ ଶୁଣି ଜଗୁଆଳୀ ଗ୍ୟାଙ୍ଗ୍‌ମ୍ୟାନ୍ ସମ୍ଭବତଃ ଗେଟ୍ ଖୋଲିବାକୁ ଆସୁଛି । ଘନ ଘନ ହର୍ଣ୍ଣ ବଜେଇ ପଛପଟେ ବାଘ ଛକିଥିବା ବିଷୟରେ ତାକୁ ସତର୍କ କରିଦେଲୁ ଏବଂ ପଦାକୁ ନ ବାହାରିବା ପାଇଁ ଉଚ୍ଚସ୍ୱରରେ ପାଟିକରି ଜଣେଇଦେଲୁ । କାର୍ ଓ ଜିପ୍‌ର ଘନଘନ ବିକଟାଳ ହର୍ଣ୍ଣ ତଥା ଗାଡ଼ିରେ ବସିଥିବା ଲୋକମାନଙ୍କର କୋଳାହଳରେ ଶଙ୍କିତ ହୋଇ ବାଘଟି ଗୁରୁଗୁରୁ ଗର୍ଜ୍ଜନ କରି ମଦମତ୍ତ ଠାଣିରେ ଧୀରେଧୀରେ ରେଳଲାଇନ୍ ଆରପଟକୁ ଅପସରି ଗଲା । କିଛି ସମୟ ବିତିଗଲା ପରେ ଆମେ ଫାଟକ ଜଗୁଆଳୀକୁ ବାହାରକୁ ଆସିବାକୁ କହିଲୁ । ସେ ଏହି ସମୟ ଭିତରେ ଗୋଟିଏ ନିଆଁହୁଳା ପ୍ରସ୍ତୁତି କରି ତାକୁ ଜଳେଇ ସାରିଥାଏ । ଜଳନ୍ତା ମଶାଲକୁ ଧରି ସେ ସନ୍ତର୍ପଣରେ ଆସି ଲେଭଲ କ୍ରସିଂ ଗେଟ୍ ଉଠେଇଲା । ଆମର ଗାଡ଼ି ଦୁଇଟି ରେଳ ଧାରଣା ପାର ହୋଇ ଆରପଟେ ଅପେକ୍ଷା କଲା । ଜଗୁଆଳୀଟି ପୁନର୍ବାର ଗେଟ୍ ବନ୍ଦ କରି ତା' ଘର ଭିତରକୁ ଗଲାପରେ ଗାଡ଼ି ରାୟଗଡ଼ା ଅଭିମୁଖେ ଗନ୍ତବ୍ୟ ପଥରେ ଆଗେଇ ଯାଇଥିଲା । କିଛି ଘଣ୍ଟା ପୂର୍ବରୁ ସମଗ୍ର ଯାତ୍ରା ପଥରେ କୌଣସି ଜନ୍ତୁ ନ ଦେଖି ପାରିବାର ଗ୍ଳାନିରେ ଆମେ ସମସ୍ତେ ବିମର୍ଷ ହୋଇ ପଡ଼ିଥିଲୁ । ଅଥଚ ଯାତ୍ରା ସମାପ୍ତିର ଅବ୍ୟବହିତ ପୂର୍ବରୁ ଏ ବିରଳ ଦୃଶ୍ୟ, ଆମକୁ ଯେତିକି ଉତ୍ତେଜିତ ଓ ଉଲ୍ଲସିତ କରି ଦେଇଥିଲା, ପରିପୂର୍ଣ୍ଣତାର ଉପଲବ୍‌ଧିରେ ସେତିକି ପୁଲକିତ ହୋଇ ଉଠିଥିଲୁ ମୁଁ, ଜିଲ୍ଲାପାଳ ଏବଂ ଏସ୍.ପି. ମହୋଦୟ ।

ତିନୋଟି ଭିନ୍ନ ଭିନ୍ନ ପରିସ୍ଥିତିରେ, ମୁକ୍ତ ଭାବରେ ବିଚରଣ କରୁଥିବା ବାଘ ଅଥବା ବାଘୁଣୀ ଦେଖିବାର ଅନୁଭୂତି ସଂପୂର୍ଣ୍ଣ ଭାବେ ନିଆରା । ପ୍ରଥମଥର ଅଭୟାରଣ୍ୟ ଭିତରେ ମଇଁଷି ମଢ଼ର ଥୋପ ବସେଇ, ବାଘକୁ ଶିକାର ଆଡ଼କୁ ଆକୃଷ୍ଟ କରି ପର୍ଯ୍ୟଟକମାନଙ୍କ ପରି ଆମକୁ ମଧ୍ୟ ରୁଟିନ୍ ମାଫିକ୍ ବାଘ ଦେଖାଇ ଦିଆଯାଇଥିଲା । ଦ୍ୱିତୀୟ କ୍ଷେତ୍ରରେ ଯଶୀପୁରର 'ଖଇରୀ' ବାଘୁଣୀ ଦେଖିବାକୁ ଭୟଙ୍କର ଥିଲେ ବି, ପୋଷା ଜନ୍ତୁ ପରି ତାର ହାବଭାବ ବଦଳି ଯାଇଥିଲା । ତୃତୀୟ ଥରଟି ଥିଲା ଏକ ଅତର୍କିତ ମୁହୂର୍ତ୍ତରେ ଏବଂ ଅଭାବନୀୟ ପରିସ୍ଥିତିରେ ଜଙ୍ଗଲ ମଝିରେ ବାଘସହ ସାମ୍ନା ସାମ୍ନି ଭେଟ । ସେ ଅନୁଭୂତି ସ୍ୱତନ୍ତ୍ର ତଥା ଅନନ୍ୟ ।



# ଉତ୍ତର ହିମାଳୟ ଦର୍ଶନ



ଡେରାଡୁନ୍ ମହାବିଦ୍ୟାଳୟରେ ଦୁଇବର୍ଷର ପ୍ରଶିକ୍ଷଣ ପରିସମାପ୍ତି ପରେ, ୧୯୭୭ ମାର୍ଚ୍ଚ ମାସରେ ଆମ୍ଭେମାନେ ମସୌରୀ ଶୈଳନିବାସ ସ୍ଥିତ ଲାଲ୍‌ବାହାଦୁର ଶାସ୍ତ୍ରୀ ଜାତୀୟ ପ୍ରଶାସନ ଏକାଡେମୀରେ ରିପୋର୍ଟ କଲୁ । ସେଠାକାର ଟ୍ରେନିଂ ଅବଧି ଥିଲା ଚାରିମାସ । ପ୍ରଶାସନ, ଆଇନ୍, ଯୋଗାଯୋଗ, ଅର୍ଥନୀତି ଇତ୍ୟାଦି ବିଷୟରେ ଏଠି ପ୍ରଶିକ୍ଷଣ ଦିଆଯିବାର ବ୍ୟବସ୍ଥା ରହିଛି । ଏକାଧାରରେ ଭାରତୀୟ ପ୍ରଶାସନିକ ସେବା, ପୋଲିସ୍ ସେବା, ଇନ୍‌କମ ଟ୍ୟାକ୍‌ସ, କଷ୍ଟମସ୍, ରେଲୱେ ଏବଂ ପୋଷ୍ଟାଲ ଆଦି ଆଲାଏଡ୍ ସର୍ଭିସ୍‌ର ଅଧିକାରୀମାନଙ୍କୁ ମିଳିତ ଭାବେ ଏଠି ଟ୍ରେନିଂ ଦିଆଯାଇଥାଏ । ସେଥିପାଇଁ ଏଇ ଚାରିମାସିଆ ଟ୍ରେନିଂ ନାମକରଣ କରାଯାଇଛି, 'ସ୍ୟାଣ୍ଡଉଇଚ୍' ବା ଫେଣ୍ଡାଫେଣ୍ଡି ଟ୍ରେନିଂ । ସର୍ବଭାରତୀୟ ସ୍ତରୀୟ ବିଭିନ୍ନ ବିଭାଗରେ ଅଧିକାରୀମାନଙ୍କୁ ଜାତୀୟ ସ୍ରୋତରେ ସାମିଲ୍ କରିବା ଏବଂ ଜାତୀୟ ଐକଧାରା ପ୍ରତିଷ୍ଠା କରିବା ଲକ୍ଷ୍ୟ ନେଇ, ଟ୍ରେନିଂ ସମୟରେ ହଷ୍ଟେଲ୍‌ର ଗୋଟିଏ ଗୋଟିଏ ରୁମ୍‌ରେ ମଧ୍ୟ ଭିନ୍ନ ଭିନ୍ନ ସର୍ଭିସ୍‌ର ଓ ଭିନ୍ନ ଭିନ୍ନ ପ୍ରଦେଶର ଦୁଇ ବା ତିନିଜଣ ଅଫିସରଙ୍କୁ ଏକାଠି ରଖିବାର ପ୍ରୟାସ କରାଯାଇଥାଏ ।

ଏକାଡେମୀରେ ଚାରିମାସର ପ୍ରଶିକ୍ଷଣ ଭିତରେ 'ଭାରତ ଦର୍ଶନ' କାର୍ଯ୍ୟକ୍ରମ ମଧ୍ୟ ଅନ୍ତର୍ଭୁକ୍ତ । ସବୁ ସର୍ଭିସ୍‌ରୁ ପ୍ରାୟ ଚାଳିଶଜଣ ପ୍ରୋବେସନର୍‌ଙ୍କୁ ନେଇ ଗଠିତ ଏକ ଦଳ ଉତ୍ତର ହିମାଳୟର କେଦାରନାଥ, ବଦ୍ରୀନାଥ ଆଦି ପ୍ରସିଦ୍ଧ ଧର୍ମପୀଠ ଏବଂ ଭ୍ୟାଲି ଅଫ୍ ଫ୍ଲାୱାରସ୍ ଓ ହେମକୁଣ୍ଡ ପରିଦର୍ଶନରେ ବାହାରି ପଡ଼ିଲୁ । ଜୁନମାସ ପ୍ରଥମ ସପ୍ତାହ । ମସୌରୀ ଛାଡ଼ିବା ପରେ ଆମର ପ୍ରଥମ ଦିନର ରହଣିର ବନ୍ଦୋବସ୍ତ ହୋଇଥିଲା, ଋଷିକେଶର ପବିତ୍ର 'ଗୀତା' ଆଶ୍ରମରେ । ହିମାଳୟର ଗିରିଗହ୍ୱରରେ ଜନ୍ମ ନେଇଥିବା ପତିତପାବନୀ ଗଙ୍ଗା, ଋଷିକେଶ ନିକଟରେ ପାର୍ବତୀୟ ଅଂଚଳରୁ ସମତଳ ଭୂମିରେ ଅବତରଣ କରିଛି । ଏହି ଅବରୋହଣ ସ୍ଥାନରେ ଗଙ୍ଗାନଦୀର କାୟା ସଂକୀର୍ଣ୍ଣ । ଫଳରେ ନଦୀର ଦୁଇ ତଟକୁ ଏକ ଝୁଲନ୍ତା ପୋଲଦ୍ୱାରା ସଂଯୁକ୍ତ କରାଯାଇଛି, ଯାହା 'ଲକ୍ଷ୍ମଣ ଝୋଲା' ନାମରେ ପ୍ରସିଦ୍ଧ । ଲକ୍ଷ୍ମଣଝୋଲା ଏପଟେ ବସ୍ ରଖି, ପାଦରେ ଚାଲି ଝୁଲନ୍ତା ପୋଲ ଅତିକ୍ରମ କରିବା ସମୟରେ, ମଝିରେ କିଛି ସମୟ ଠିଆ ହୋଇ ବିଶାଳକାୟ ପର୍ବତପୁଞ୍ଜ ଭିତରୁ ଗଙ୍ଗାନଦୀର ନିର୍ଗମନକୁ ମୁଁ ନୀରବରେ ଲକ୍ଷ୍ୟ କରୁଥିଲି । ଚପଳଛନ୍ଦା ପରି କିଶୋରୀ ନଦୀର ଉତ୍ତାଳ ଜଳରାଶି; କିନ୍ତୁ ମନେ ହେଉଥିଲା ସତେ ଯେପରି କରୁଣା ଓ ଆବେଗରେ ଭରା । ନଦୀର ଅପର ତଟରେ ପ୍ରାୟ ଦେଢ଼ କିଲୋମିଟର ଚାଲିବା ପରେ, ସଂଧ୍ୟା ପୂର୍ବରୁ ଗୀତା ଆଶ୍ରମରେ ପହଞ୍ଚିଲୁ ଏବଂ ଆଶ୍ରମର ସନ୍ଧ୍ୟା ଆଳତି ଉପଭୋଗ କରିଥିଲୁ । ଗଙ୍ଗା ତଟବର୍ତ୍ତୀ ଏକ ହୋଟେଲ ଓ ଋଷିକେଶ ବନ ବିଭାଗ ବଂଗଳାରେ ଆମ୍ଭମାନଙ୍କର ରହିବାର ବନ୍ଦୋବସ୍ତ ପୂର୍ବରୁ କରାଯାଇଥିଲେ ମଧ୍ୟ ଆଗକୁ ଥିବା ଏକ ଆଧ୍ୟାତ୍ମିକ ଯାତ୍ରା ନିମନ୍ତେ ପାକ୍ ପ୍ରସ୍ତୁତି ପୂର୍ବକ ଆମେ ଗୀତା ଆଶ୍ରମରେ ଶୁଦ୍ଧ, ପୂତ ବାତାବରଣ ଭିତରେ ରାତ୍ରିଯାପନ କରି, ଆଗାମୀ କେଦାରନାଥ ଓ ବଦ୍ରୀନାଥ ଯାତ୍ରାପାଇଁ ନିଜକୁ ମାନସିକ ସ୍ତରରେ ପ୍ରସ୍ତୁତ କରିନେଇଥିଲୁ ।

ତହିଁ ପରଦିନ ପ୍ରତ୍ୟୁଷରୁ ଆଶ୍ରମର ପବିତ୍ର ପରିବେଶରେ ଓଁକାର ଧ୍ୱନିର ଉଚ୍ଚାରଣ, ମଙ୍ଗଳ ଆଳତି ଓ ଦେବ ପୂଜାର୍ଚ୍ଚନା ଅନ୍ତେ ଆମେ ଋଷିକେଶ ଛାଡ଼ି ଗନ୍ତବ୍ୟ ପଥରେ ଅଗ୍ରସର ହେଲୁ । ଋଷିକେଶକୁ ହିମାଳୟ ପର୍ବତର ପ୍ରବେଶଦ୍ୱାର କହିଲେ ଅତ୍ୟୁକ୍ତି ହେବନାହିଁ । ଏଇଠୁ ଆରମ୍ଭ ହୋଇଯାଏ ପାର୍ବତୀୟ ଘାଟିରାସ୍ତା । ଗୋଟେପଟେ ସୁଉଚ୍ଚ ପର୍ବତର ବିଶାଳକାୟ କାନ୍ଥ ଏବଂ ଅନ୍ୟପଟେ ହଜାର ଫୁଟ ତଳେ ଗିରି ଗହ୍ୱରରେ ପ୍ରବାହିତ ମନ୍ଦାକିନୀ ଗଙ୍ଗା । ମଝିରେ ବିପଦ ସଂକୁଳ ସଂକୀର୍ଣ୍ଣ ଘାଟିରାସ୍ତାଟି, ଝିଅଙ୍କର ମୁଣ୍ଡ କଣ୍ଟା ଭଳି ମୋଡ଼ି ମୋଡ଼ି ହୋଇ ଆଗେଇ ଯାଉଛି ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ । ରାସ୍ତାରେ ପଡ଼େ ତୀର୍ଥସ୍ଥଳୀ-ଦେବପ୍ରୟାଗ । ଏଠାରେ ହିମାଳୟର ଦୁଇ ପାର୍ଶ୍ୱରୁ ଲୀଳାୟିତ ଭଙ୍ଗୀରେ ବୋହି ଆସିଥିବା

'ଭାଗୀରଥି' ଏବଂ 'ଅଳକାନନ୍ଦା' ନଦୀର ମିଶ୍ରଣ ହୋଇଛି । ଏହି ମିଶ୍ରଣ ବା ମିଳନ ପରେ 'ଭାଗୀରଥି' ଗଙ୍ଗା ନାମରେ ନାମିତ ହୋଇ ଋଷିକେଶ, ହରିଦ୍ୱାର ଦେଇ ସମତଳ ଅଞ୍ଚଳରେ ପ୍ରବାହିତ ହୋଇଛି । ଋଷିକେଶଠାରୁ ପ୍ରାୟ ୭୦ କିଲୋମିଟର ଉପରେ ଅବସ୍ଥିତ 'ଦେବ ପ୍ରୟାଗ' ଗଙ୍ଗାଙ୍କର ଜନ୍ମସ୍ଥାନ କହିଲେ ଅତ୍ୟୁକ୍ତି ହେବନାହିଁ ।

ପାହାଡ଼ୀ ରାସ୍ତାରେ ଆମକୁ ନେଇ ଯାଉଥିବା ବସ୍‌ଟି ଆଗେଇ ଚାଲିଥିଲା ଆଗକୁ ଆଗକୁ । ଯାତ୍ରାପଥ ଅସରନ୍ତି । ମନରେ କିନ୍ତୁ ଅସୁମାରୀ ସ୍ଫୁର୍ତ୍ତି ଓ ଉତ୍ସାହ । ପୁନଶ୍ଚ ୭୦କିଲୋମିଟର ଅତିକ୍ରମ କରିବା ପରେ ଆସିଲା ଛୋଟ, ରମଣୀୟ ସହରଟିଏ 'ରୁଦ୍ରପ୍ରୟୋଗ' । ଏଠାରେ ଅଳକାନନ୍ଦା ନଦୀ ସହିତ, କେଦାରନାଥ ଶୃଙ୍ଗରୁ ବୋହି ଆସିଥିବା 'ମନ୍ଦାକିନୀ' ସ୍ରୋତ ମିଳିତ ହୋଇଛି । ପାହାଡ଼ ଘାଟି ରାସ୍ତାରେ ଏତିକି ବାଟ ଆସିଲା ବେଳକୁ ପ୍ରାୟ ପାଞ୍ଚ, ଛଅ ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଅତିକ୍ରମ ହୋଇସାରିଥାଏ । କାରଣ ଘଣ୍ଟାପ୍ରତି ଗାଡ଼ିର ବେଗ ମାତ୍ର ୨୫ରୁ ୩୦ କିଲୋମିଟର ମଧ୍ୟରେ ସୀମିତ । ପେଟରେ ଭୋକ ସେତେବେଳକୁ ପ୍ରବଳ । ରୁଦ୍ର ପ୍ରୟାଗ ଘାଟରେ ହାତ, ମୁହଁ ଧୋଇ, ଛୋଟ ଏକ ଢାବାରେ ଯତ୍‌କିଞ୍ଚିତ୍ ମଧ୍ୟାହ୍ନ ଭୋଜନ କରିନେଲୁ ।

ରୁଦ୍ରପ୍ରୟାଗ ଠାରୁ ଘାଟି ରାସ୍ତା ଦୁଇ ଭାଗରେ ବିଭକ୍ତ ହୋଇଛି । ଗୋଟିଏ ରାସ୍ତା ଗୁପ୍ତକାଶୀ ଦେଇ 'ସୋନପ୍ରୟାଗ' ଠାରେ ପହଞ୍ଚିଛି । ସେଇଠୁ ପ୍ରସିଦ୍ଧ ଶୈବପୀଠ କେଦାରନାଥ ମନ୍ଦିର ଅଭିମୁଖେ ଯାତ୍ରା ଆରମ୍ଭ କରିବାକୁ ହୁଏ । ଅନ୍ୟ ରାସ୍ତାଟି କର୍ଣ୍ଣ ପ୍ରୟାଗ, ନନ୍ଦ ପ୍ରୟାଗ ଓ ଯୋଷୀମଠ ଦେଇ ଶେଷ ହୋଇଛି ବଦ୍ରୀନାଥ ଧାମରେ । ମନ୍ଦାକିନୀ ନଦୀତଟରେ ଅବସ୍ଥିତ ସୋନପ୍ରୟାଗଠାରୁ ଗୌରୀକୁଣ୍ଡ କେବଳ ଛୋଟ ବସ୍ ବା ଟ୍ୟାକ୍ସିରେ ଯାତ୍ରା କରିହେବ । ରାସ୍ତା ଅପ୍ରଶସ୍ତ । ଡାହାଣ ପଟରେ ସିଧା ଦଣ୍ଡାୟମାନ ସୁଉଚ୍ଚ ପର୍ବତ କାନ୍ଥି ଏବଂ ବାମ ପଟର ଗଭୀର ଉପତ୍ୟକା ଭିତରେ କ୍ଷିପ୍ର ଗତିରେ ବୋହିଯାଉଛି ପାହାଡ଼ୀ ନଈ । କେବଳ ସ୍ଥାନୀୟ ପାହାଡ଼ୀ ଇଲାକାର ଡ୍ରାଇଭରମାନେ ହିଁ ଏହି ରସ୍ତାରେ ଗାଡ଼ି ଚଳେଇ ନିରାପଦରେ ଗନ୍ତବ୍ୟ ସ୍ଥଳରେ ପହଞ୍ଚେଇ ପାରିବେ । ସୋନ୍‌ପ୍ରୟାଗଠାରେ ପହଞ୍ଚିଲାବେଳକୁ ସଂଧ୍ୟା ଆଗତ ପ୍ରାୟ । ସେଦିନ ସେହିଠାରେ ଗୋଟିଏ ଛୋଟ ରେଭିନ୍ୟୁ ଡାକବଂଗଳାରେ ରାତ୍ରୀ ବିଶ୍ରାମର ବନ୍ଦୋବସ୍ତ କରାଯାଇଥାଏ ।

ପରଦିନ ସକାଳୁ ସକାଳୁ ଦୁଇଟି ଛୋଟ ବସ୍‌ରେ ସବାର ହୋଇ ସମସ୍ତେ ବାହାରି ପଡ଼ିଲୁ 'ଗୌରୀକୁଣ୍ଡ' ଅଭିମୁଖେ । ଗୌରୀକୁଣ୍ଡ ବେଶ୍ ଛୋଟ ଜାଗାଟିଏ । ଗହଳି ଚହଳି

କହିଲେ ପାଞ୍ଚ ଛଅଟି କଚ୍ଚା ଦୋକାନ ଓ ତୀର୍ଥଯାତ୍ରୀମାନଙ୍କ ଭୋଜନ ପାଇଁ ରାସ୍ତାକଡ଼ରେ ଦୁଇଟି ଢାବା ରହିଛି । ଗଡ଼ୱାଲ ପର୍ଯ୍ୟଟନ ନିଗମର ପାନ୍ଥଶାଳାଟିଏ ମଧ୍ୟ ଅଛି । ଚତୁଃପାର୍ଶ୍ୱରେ ଘଞ୍ଚ ଅରଣ୍ୟ । ଅଦୂରରେ ସାମାନ୍ୟ ତଳକୁ ଓହ୍ଲେଇ ଗଲେ ଉଷ୍ଣ ପ୍ରସ୍ରବଣଟିଏ ରହିଛି- ଗୌରୀକୁଣ୍ଡ । ଏହି ନାଁରେ ସ୍ଥାନଟି ମଧ୍ୟ ନାମିତ । ବସ୍ ସେଇଠି ରହିଲା । ତେଣିକି ଆଗକୁ ସଂକୀର୍ଣ୍ଣ ଅଙ୍କାବଙ୍କା ପାଦଚଲା ରାସ୍ତା । ପାଦରେ ଚାଲିଚାଲି ୧୪କିଲୋମିଟର ରାସ୍ତା ଅତିକ୍ରମ କରିବାକୁ ପଡ଼ିବ ।

ଯେଉଁମାନେ ଏତେ ଦୂର ପଥ ଚାଲି ପାରିବେ ନାହିଁ, ସେମାନେ ଖଚର (ତଟୁଘୋଡ଼ା) ପିଠିରେ ବସି ଯାଇ ପାରନ୍ତି । ଅଥବା ଜଣେ 'ବାହକ' ପିଠିରେ ଭାର ଭଳି ବୁହା ହୋଇ ପାରନ୍ତି । ନଚେତ୍ ଦୁଇଜଣ ଭାର ବାହକ 'ଡୋଲିରେ.ଦୋଳି ଝୁଲାଇଲା ପରି ନେଇ ଯାଇ ପାରନ୍ତି । ଆମେ ବନ ବିଭାଗର ଅଫିସରମାନେ ବାଡ଼ି ଖଣ୍ଡେ ଖଣ୍ଡେ ଯୋଗାଡ଼ କରି ଚାଲିବା ପାଇଁ ପ୍ରସ୍ତୁତ ହୋଇଗଲୁ । ଡେରାଡୁନ୍‌ଠାରେ ଟ୍ରେନିଂ ଅବସରରେ 'ଚକର୍ତ୍ତା' ହିଲ୍‌ଟୁର୍‌ରେ ଦୈନିକ ପନ୍ଦରରୁ କୋଡ଼ିଏ କିଲୋମିଟର, ଉଠାଣିଆ, ଗଡ଼ାଣିଆ ପାହାଡ଼ ରାସ୍ତାରେ ଚାଲି ଚାଲି ଗୋଟିଏ କ୍ୟାମ୍ପରୁ ଅନ୍ୟ ଗୋଟିଏ କ୍ୟାମ୍ପକୁ ଯିବା ଅଭ୍ୟାସ ଏବଂ ଅଭିଜ୍ଞତା ଆମର ଥାଏ ।

· ସମୁଦ୍ର ପତ୍ତନଠାରୁ ୧୧, ୭୩୫ ଫୁଟରେ ଉଚ୍ଚରେ ଅବସ୍ଥିତ 'କେଦାରନାଥ' ଶିବମନ୍ଦିର । 'ସ୍ନୋ ଲାଇନ୍' ବା ବରଫରେଖା (୧୨,୦୦୦ଫୁଟ୍) ପାଖାପାଖି । ଗୌରୀକୁଣ୍ଡଠାରୁ ଏହାର ଦୂରତା ମାତ୍ର ୧୪ ବା ୧୫ କିଲୋମିଟର ହୋଇଥିଲେ ମଧ୍ୟ ଚାଲିକରି ଯିବାକୁ ପ୍ରାୟ ଚାରିଘଣ୍ଟାରୁ ଅଧିକ ସମୟ ଲାଗିଥାଏ । କେମିତି ଏକ ଅଦ୍ଭୁତ ଶାନ୍ତ ବାତାବରଣ, ଚାରିପଟେ ଆଖି ପାଇଲା ଯାଏ ନୀରବ, ନିର୍ଜନତାକୁ ଭଙ୍ଗ କରୁଥାଏ । ରାସ୍ତା ମଝିରେ ପର୍ବତ କୋଳରେ କ୍ଷୁଦ୍ର ପଲ୍ଲୀମାନ ଗଢ଼ି ଉଠିଛି । ଦୂର ଦିଗ୍‌ବଳୟର ପଟ୍ଟଭୂମିରେ, ଚିତକ୍ରରର ତୂଳୀମୁନରେ ଅଙ୍କିତ ଚିତ୍ରପଟ ଭଳି ସୁନ୍ଦର ଓ ରମଣୀୟ । ବସତି ନିକଟରେ ରାସ୍ତା କଡ଼ରେ ଚାହା ବା ପାନଦୋକାନଟିଏ । ପାଦଚଲା ପଥିକଟିଏ ଦୋକାନ କଡ଼ର କାଠଗଣ୍ଡି ଉପରେ ବସିଯାଇ ଚାହାପିଇବା ଅବସରରେ ଥକ୍କା ମେଣ୍ଟାଇ ନିଏ । ପାହାଡ଼ ଚୂଡାରୁ ସଂଧ୍ୟା ଓହ୍ଲେଇ ଆସିବାର ବେଶ୍ କିଛି ସମୟ ପୂର୍ବରୁ ଆମେ କେଦାରନାଥ ପହଞ୍ଚିଲୁ । ସ୍ଥାନଟିର ମୁଖ୍ୟ ଆକର୍ଷଣ କେଦାର ନାଥ ଶୈବ ମନ୍ଦିର । ଦେଶର ପ୍ରସିଦ୍ଧ ବାରଟି ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ଅନ୍ୟତମ । ମନ୍ଦିରକୁ କେନ୍ଦ୍ରକରି ଗଢ଼ିଉଠିଛି ଛୋଟ ବସତିଟିଏ, ଯାହା ବର୍ଷକରେ ଛଅମାସ ବରଫରେ ଢାଙ୍କି ହୋଇଯିବା ଫଳରେ ପରିତ୍ୟକ୍ତ ରୁହେ ।

ସାମ୍ନାରେ କି ସୁନ୍ଦର ମନୋରମ ଦୃଶ୍ୟ । କବି, ଭାବୁକ ତଥା ଯେ କୌଣସି ପର୍ଯ୍ୟଟକକୁ ଆଧ୍ୟାତ୍ମିକ ଭାବନାରେ ବିଭୋର କରିଦେବାର ଯଥେଷ୍ଟ ଖୋରାକ୍ ରହିଛି ଏ ଦୃଶ୍ୟରେ । ପାହାଡ଼ର ମଝାମଝି ରହିଥିବା ମୁଖ୍ୟ ମନ୍ଦିରର ପଶ୍ଚାତ୍ ଭାଗରୁ ପ୍ରାୟ ଦୁଇଶହ ମିଟର ଦୂରତାରୁ ଆରମ୍ଭ ହୋଇଯାଇଛି 'ସ୍ନୋ ଲାଇନ୍' ବା ବରଫରେଖା । ସେଇଠାରୁ ସର୍ବୋଚ୍ଚ ଶିଖର ପର୍ଯ୍ୟନ୍ତ ସମଗ୍ର ପାହାଡ଼ଟି ବରଫାବୃତ । ସତେ ଯେପରି ପ୍ରବଳ ଶୀତରୁ ରକ୍ଷା ପାଇବା ପାଇଁ ଧୋବ ଫରଫର ଧଳା ରେଜେଇଟିଏ ଘୋଡ଼େଇ ହୋଇଛି । ବାଁ ପଟରୁ ଅସ୍ତଗାମୀ ସୂର୍ଯ୍ୟର ଲୋହିତ କିରଣ ପାହାଡ଼ ଚୂଡାରେ ପ୍ରତିଫଳିତ ହୋଇ ଚିକ୍‌ଚିକ୍ କରୁଥାଏ । ବୃକ୍ଷଲତା ଶୂନ୍ୟ ଏହି ଇଲାକାରେ ସଂଧ୍ୟାର ଆଗମନ ସହିତ ତାଳଦେଇ, ସୂର୍ଯ୍ୟକିରଣ ଯେତିକି ନିଷ୍ପ୍ରଭ ଓ ନିମୀଳିତ ହୋଇ ଆସୁଥାଏ, ପାଖରେ ଛୋଟ ବସତିଟି ସେତିକି ନୀରବ ଓ ନିସ୍ତେଜ ହୋଇ ପଡୁଥାଏ । ତା ସାଙ୍ଗକୁ ଶୀତର ପ୍ରାବଲ୍ୟ ସେତିକି ଅଧିକରୁ ଅଧିକ ଅନୁଭୂତ ହେଉଥାଏ । ଗରମ ପୋଷାକରେ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଆଚ୍ଛାଦିତ ହୋଇ ଆମେ କେତେ ଜଣ ବଂଧୁ ପାହାଡ଼ର ଧବଳ ଶୃଙ୍ଗ ଉପରେ ସୂର୍ଯ୍ୟାସ୍ତର ରଂଗବେରଂଗ ପ୍ରତିଫଳନକୁ ଉପଭୋଗ କରିଥିଲୁ ।

ମନ୍ଦିର ନିକଟସ୍ଥ ବସତି ବେଶ୍ ଛୋଟ । ହାତ ଗଣତି କେତୋଟି ଦୋକାନ ଓ ରହିବା ଘର । ସେଠି ନୂଆ କରି ଗଢ଼ି ଉଠିଥିବା ଗୋଟିଏ ଧର୍ମଶାଳାରେ ଆମମାନଙ୍କର ରାତ୍ରୀଯାପନ ବନ୍ଦୋବସ୍ତ କରାଯାଇଥାଏ । କେତେକ ଆଇ.ଏ.ଏସ୍. ପ୍ରୋବେସନାରୀ ଅଫିସର୍ ମଧ୍ୟ ଆମ ଗ୍ରୁପ୍‌ରେ ଥିବାରୁ, ସେଠିକାର ଜିଲ୍ଲାପାଳଙ୍କ ନିର୍ଦ୍ଦେଶମତେ, ସ୍ଥାନୀୟ ରାଜସ୍ୱ ବିଭାଗର ପ୍ରଭାରୀ, ପ୍ରତ୍ୟେକଙ୍କ ପାଇଁ ଚାରୋଟି କରି ନୂଆ ରେଜେଇ ତିଆରି କରିଥିଲେ । ଧର୍ମଶାଳାରେ ଖଟ ନଥାଏ । ତେଣୁ ଦୁଇଟି ରେଜେଇ ତଳେ ପାରିବା ଓ ଅନ୍ୟ ଦୁଇଟି ଘୋଡ଼େଇ ହେବା ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ରାତିରେ ଥଣ୍ଡା ଏତେ ପ୍ରବଳ ହେଲା ଯେ, ଆମେ ଦୁଇଜଣ ଅଫିସର ମିଶି, ଚାରୋଟି ରେଜେଇ ତଳଉପର ବିଛେଇଲୁ ଓ ଅନ୍ୟଚାରୋଟି ଯୋଡ଼ିକରି ଘୋଡ଼ିହୋଇ ଶୋଇଲୁ ।

'ଭୋର', ପ୍ରଭାତ ଆଗମନର ସଂକେତ । ଉଠି ଆସୁଥିବା ସୂର୍ଯ୍ୟଙ୍କର ତୀର୍ଯ୍ୟକ କିରଣ ପାହାଡ଼ ଚୂଡ଼ାରେ ପଡ଼ି ସମଗ୍ର ଅଂଚଳକୁ ଉଦ୍‌ଭାସିତ କରି ଦେଉଥାଏ । ଏହାର ପ୍ରତିଫଳନରେ ଧୀରେ ଧୀରେ ଆଲୋକିତ ହୋଇ ଆସୁଥାଏ ସମଗ୍ର ପରିବେଶ । ନିତ୍ୟକର୍ମ ସାରିବା ପୂର୍ବରୁ ଆପାଦମସ୍ତକ ଶୀତବସ୍ତ୍ର ଆଚ୍ଛାଦିତ ହୋଇ, ମୁଁ ବାହାରକୁ ବାହାରି ଆସିଲି,

ସଜ ସକାଳର ଆବହାଓ୍ୱାରେ କିଛି ଆଧ୍ୟାତ୍ମିକ ଉଷ୍ମତା ଅନୁଭବ କରିବା ଲକ୍ଷ୍ୟ ନେଇ । ମନ୍ଦିର ପ୍ରଚ୍ଛଦପଟରେ ତୁଷାରାଚ୍ଛାଦିତ ପର୍ବତର ବ୍ୟକ୍ତିତ୍ୱ କ୍ରମଶଃ ଅଧିକରୁ ଅଧିକ ଦେଦୀପ୍ୟମାନ ହୋଇ ଉଠୁଥାଏ । ଏହି ପର୍ବତମାଳା ରୁଦ୍ର ହିମାଳୟ ନାମରେ ନାମିତ । ଲୋକମୁଖରେ ଏହା 'ସୁମେରୁ' ପର୍ବତ ନାମରେ ମଧ୍ୟ ପରିଚିତ । ନିକଟରେ ଆଦି ଶଙ୍କରାଚାର୍ଯ୍ୟଙ୍କ ସମାଧି ମଧ୍ୟ ରହିଛି । ଶୀତଋତୁ ଛଅମାସ ମନ୍ଦିରକୁ ବନ୍ଦ କରିଦିଆଯାଏ । ସେତେବେଳେ ମନ୍ଦିର ଓ ତତ୍‌ସଂଲଗ୍ନ ବସତି ତୁଷାରାଚ୍ଛନ୍ନ ହୋଇପଡ଼େ । କେଦାରନାଥଙ୍କ ଚଳନ୍ତି ପ୍ରତିମାକୁ ବିମାନରେ ନିଆଯାଇ ତଳେ କୌଣସି ଏକ ମନ୍ଦିରରେ ପୂଜା କରାଯାଏ ।

ହିମ ଶୀତଳ ପାଣିକୁ ସ୍ପର୍ଶ କରିବା ମାତ୍ରେ ଶରୀରର ଉକ୍ତ ଅଂଶଟି ଚେତନା ରହିତ, ଜଡ଼ ପାଲଟି ଯାଉଥାଏ । ତଥାପି କୌଣସିମତେ ନିତ୍ୟକର୍ମ ସମାପନାନ୍ତେ, ମନ୍ଦିରରେ ଶିବଙ୍କର ଦର୍ଶନ କଲା ଉତ୍ତାରୁ 'ଗୌରୀକୁଣ୍ଡ' ଉଦ୍ଦେଶ୍ୟରେ ପ୍ରସ୍ଥାନ ପଦଯାତ୍ରା ଆରମ୍ଭ ହେଲ । ରାସ୍ତାରେ ଆଧ୍ୟାତ୍ମିକ ମାହାତ୍ମ୍ୟର ପରିପୂର୍ଣ୍ଣ 'ଗରୁଡ଼ଚଟି'ରେ ସାମାନ୍ୟ ବିଶ୍ରାମ ନେଇ ଗୌରୀକୁଣ୍ଡଠାରେ ପହଞ୍ଚିଲାବେଳକୁ ଦିନ ବାରଟା । ଆମକୁ ନେଇ ଯାଇଥିବା ବସ୍ ଦୁଇଟି ସେଇଠି ରହିଥିଲା । ସେଠୁ ବସ୍‌ରେ ଆସି 'ସୋନପ୍ରୟାଗ'ଠାରେ ମଧ୍ୟାହ୍ନଭୋଜନ କଲୁ ଏବଂ ପୁନର୍ବାର ରୁଦ୍ରପ୍ରୟାଗ ଫେରି ଆସିଲୁ । ସେଠୁ ବଦ୍ରୀନାଥ ଅଭିମୁଖେ ଯାଇଥିବା ଅନ୍ୟ ଘାଟି ରାସ୍ତାରେ ବସ୍ ଆଗେଇ ଚାଲିଲା । ତିରିଶ କିଲୋମିଟର ଗଲାପରେ ପଡ଼ିଲା 'କର୍ଣ୍ଣ ପ୍ରୟାଗ' । ପିଣ୍ଡାର ହିମସ୍ତୂପରୁ ବାହାରିଥିବା ପିଣ୍ଡାର ନଦୀ ଏହି ପ୍ରୟାଗରେ ଅଳକାନନ୍ଦା ସହିତ ମିଳିତ ହୋଇଛି । ସେଠାରୁ ୨୨ କିଲୋମିଟର ଉପରେ 'ନନ୍ଦପ୍ରୟାଗ' । ଯାତ୍ରା ସରୁ ନଥାଏ । ବସ୍ ଆଗକୁ ଚାଲିଥାଏ । ପ୍ରାୟ ୫୫ କିଲୋମିଟର ପରେ ଆସିଲା 'ଯୋଶୀମଠ' । ସେଦିନ ପାଇଁ ଆମର ରାତ୍ରୀ ରହଣିର ବନ୍ଦୋବସ୍ତ ଯୋଶୀମଠରେ ହିଁ ହୋଇଥାଏ ।

ଯୋଶୀମଠ । ଉତ୍ତର ପ୍ରଦେଶ ରାଜ୍ୟ (ସଂପ୍ରତି ଉତ୍ତରାଖଣ୍ଡ) ବନବିଭାଗର ଏକ ପ୍ରମୁଖ ମହକୁମା । ଏଠି କଞ୍ଜରଭେଟର ଅଫିସ୍, ଡି.ଏଫ୍.ଓ. ଅଫିସ୍, ବିଭାଗୀୟ ଡାକବଂଗଳା ଏବଂ କେତେକ ରିସର୍ଚ୍ଚ ଷ୍ଟେସନ ମଧ୍ୟ ରହିଛି । ଏହା ବ୍ୟତୀତ ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଜ୍ୟୋର୍ତିମଠ ଏଠାରେ ରହିଛି । ବଦ୍ରୀନାଥ ଧାମ ବରଫାବୃତ୍ତ ହୋଇ, ଶୀତଋତୁର ଛଅମାସ ଯେତେବେଳେ ବନ୍ଦ ହୋଇଯାଏ, ସେତେବେଳେ ବଦ୍ରି ବିଶାଳଙ୍କର ଚଳନ୍ତି ପ୍ରତିମା ଏଠାରେ ପୂଜିତ ହୁଅନ୍ତି ।

ଯୋଶୀମଠରେ ସକାଳ ଏକାନ୍ତ ଭାବେ ସ୍ନିଗ୍ଧ । ବନ ବିଭାଗ ବିଶ୍ରାମାଗାର ବାହାରେ ଗୋଟିଏ ଆରାମ ଚୌକିରେ ବସି ଶୀତର ପ୍ରାବଲ୍ୟକୁ ଉପଭୋଗ କରିବା ଅବସରରେ ମୁଁ ଚାରିପଟେ ଘେରି ରହିଥିବା ଉତ୍ତୁଙ୍ଗ ପର୍ବତମାନଙ୍କର ଭୀମକାନ୍ତ ରୂପକୁ ନିରୀକ୍ଷଣ କରୁଥିଲି । ପ୍ରକୃତିର ଏ ବିଶାଳ ବ୍ୟକ୍ତିତ୍ୱ ନିକଟରେ କେଡ଼େ କ୍ଷୁଦ୍ର ଏ ମଣିଷ ? ଯୋଶୀମଠ ହିଁ ବଦ୍ରିଶାଳ ବା ବଦ୍ରୀନାଥ ଧାମକୁ ଯିବାର ପ୍ରବେଶ ଦ୍ୱାର । ଏଠାର ଯାତ୍ରାପଥ ସାମରିକ ବାହିନୀଦ୍ୱାରା ନିୟନ୍ତ୍ରିତ । ରାସ୍ତାର ସଂକୀର୍ଣ୍ଣତା ଦୃଷ୍ଟିରୁ ଏକ ସମୟରେ କେବଳ ଗୋଟିଏ ପଟୁ ଗାଡ଼ି ଗୁଡ଼ିକ ନିୟନ୍ତ୍ରଣରେ ଛଡା ଯାଇଥାଏ । ପୁନଶ୍ଚ ଏକ ଘଣ୍ଟା ବ୍ୟବଧାନରେ ଆରପଟୁ ଯାତ୍ରା କରିବାକୁ ଅନୁମତି ମିଳେ ।

ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ଆମେ ସିଧାସଳଖ ବଦ୍ରୀନାଥ ନଯାଇ, ରାସ୍ତାରେ ବିଷ୍ଣୁ ପ୍ରୟାଗ ନିକଟସ୍ଥ ଗୋବିନ୍ଦଘାଟଠାରେ ବସ୍‌ରୁ ଓହ୍ଲାଇଗଲୁ । ଯୋଶୀମଠଠାରୁ ଦଶ କିଲୋମିଟର ଗଲେ ପଡ଼ିଥାଏ ବିଷ୍ଣୁପ୍ରୟାଗ, ଯେଉଁଠି 'ଧଉଳିଗଙ୍ଗା' ଅଳକାନନ୍ଦା ସହିତ ମିଳିତ ହୋଇଛି । ଅନତିଦୂରରେ ଗୋବିନ୍ଦଘାଟ । ଏଇଠୁ ଆଉଥରେ ଆରମ୍ଭ ହେଲା ଟ୍ରେକିଙ୍ଗ ବା ପଦଯାତ୍ରା । ଲକ୍ଷ୍ୟ 'ଭ୍ୟାଲି ଅଫ୍ ଫ୍ଲାଓ୍ୱାର୍‌ସ' ଅର୍ଥାତ୍ 'ଫୁଲର ଉପତ୍ୟକା' ଏବଂ 'ହେମକୁଣ୍ଡ' । ଦୁଇବର୍ଷ ଅବଧି ପ୍ରଶିକ୍ଷଣ ସମୟରେ ବନ ବିଭାଗର ଅଫିସର୍‌ମାନେ ଦୀର୍ଘପଥ ପାହାଡ଼ୀ ରାସ୍ତାରେ ଚାଲିବାରେ ପୂରା ଓସ୍ତାଦ୍ ବନିଯାଇଥାନ୍ତି । ତେଣୁ ଆମେ କେତେଜଣ ଫରେଷ୍ଟ ଅଫିସର୍, ଦଳର ଅନ୍ୟ ସମସ୍ତଙ୍କୁ ପଛରେ ପକାଇ କ୍ଷିପ୍ର ଗତିରେ କଙ୍କରିଳ ପାହାଡ଼ୀ ରାସ୍ତାରେ ବା ଶୁଷ୍କ ପାହାଡ଼ିଆ ନଈ ଭିତର ଦେଇ ଯାଇଥିବା ଶିଳାବନ୍ଧୁର ରାସ୍ତାରେ ବେଶ୍ ଆଗକୁ ଚାଲିଯାଇଥିଲୁ । ଆମ ଦଳରେ ମୋ ବ୍ୟତୀତ ଥିଲେ ବନବିଭାଗର ଅନ୍ୟତମ ଓଡ଼ିଆ ଅଫିସର ଶ୍ରୀଯୁକ୍ତ ପ୍ରଧାନ, ତାମିଲନାଡୁର ଶ୍ରୀଧରନ୍, ଓ୍ୱେଷ୍ଟବେଙ୍ଗଲର ଗାଙ୍ଗୁଲି, ହରିୟାନା କ୍ୟାଡରର ଶ୍ରୀ ଜକାତି ଓ ଗୋରଖପୁରର ଶ୍ରୀ ଦେବେନ୍ଦ୍ର ପାଣ୍ଡେ । ଏହା ବ୍ୟତୀତ ନେପାଳର ଦୁଇଜଣ ଅଫିସର ମଧ୍ୟ ଥିଲେ । ଓଡିଶାର ଅନ୍ୟ ଜଣେ ପୋଲିସ୍ ଅଫିସର୍ ଶ୍ରୀ ଅଜିତ୍ ମହାନ୍ତି (ଆନ୍ଧ୍ର ପ୍ରଦେଶ କ୍ୟାଡର) ମଧ୍ୟ ଆମ ସହିତ ଆଗ ଦଳରେ ଚାଲିଥିଲେ ।

ରାତ୍ରୀ ରହଣିର ବନ୍ଦୋବସ୍ତ ହୋଇଥାଏ 'ଘାଙ୍ଗାରିଆ' ଠାରେ ଥିବା ଏକ ଗୁରୁଦ୍ୱାରରେ । ଗୋବିନ୍ଦପାଟରୁ 'ଘାଙ୍ଗାରିଆ' ର ଦୂରତା ୧୪ କିଲୋମିଟର । ସମୁଦ୍ରପତ୍ତନଠାରୁ ଗୋବିନ୍ଦଘାଟର ଉଚ୍ଚତା ୬, ୧୦୦ଫୁଟ୍ ହୋଇଥିବାବେଳେ ଘାଙ୍ଗାରିଆର

ଅବସ୍ଥିତି ପ୍ରାୟ ୧୦,୦୦୦ଫୁଟ୍ ଉପରେ । ଦଳର ଅନ୍ୟମାନେ ସେଠାରେ ପହଞ୍ଚିବାର ଯଥେଷ୍ଟ ପୂର୍ବରୁ ଆମେ ପହଞ୍ଚି ଯାଇଥିଲୁ । ପଶୁ ପଶୁ ଦେଖିବାକୁ ମିଳିଲା ରାସ୍ତାକଡ଼ରେ ବନ ବିଭାଗର ବିଶ୍ରାମଗାରଟିଏ ରହିଛି । ଚୌକିଦାର ମଧ୍ୟ ସେହି ଗାଁର ବାସିନ୍ଦା । ତା' ସହିତ ଯୋଗାଯୋଗ କରି ଗେଷ୍ଟ ହାଉସ୍‌କୁ ଗଲୁ ଏବଂ ଗାଁର ଅପର ପ୍ରାନ୍ତରେ ଥିବା ଗୁରୁଦ୍ୱାରକୁ ନଯାଇ, ଆଠଜଣଯାକ ସେଠି ରାତ୍ରିଯାପନ କଲୁ । ଚୌକିଦାର ପାଣି ଗରମ କରି ନେଇ ଆସିଲା ଏବଂ ଚା' ମଧ୍ୟ ପରଷି ଦେଲା । ଗରମ ପାଣିରେ ମୁହଁ ଧୋଇ ଗରମ ଚା' କପେ ପିଇ ଦେଲାରୁ ପଦଯାତ୍ରା ଜନିତ କ୍ଲାନ୍ତି ଅପସରି ଗଲା । ଏବେ ରାତ୍ରି ଭୋଜନ ଚିନ୍ତା ।

ବଂଗଳା ଚୌକିଦାର ସହିତ କଥାବାର୍ତ୍ତା କରିବା ଅବସରରେ ଜାଣିଲୁ, ବର୍ଷକରେ ମାତ୍ର ଥରକ ପାଇଁ ଡି.ଏଫ୍.ଓ. ମହାଶୟ ଘୋଡ଼ାରେ ଚଢ଼ି ଏହି ଅଂଚଳକୁ ପରିଦର୍ଶନରେ ଆସନ୍ତି ଏବଂ ବଂଗଳାରେ ରାତ୍ରୀଯାପନ କରନ୍ତି । ଅନ୍ୟ ସମୟରେ କେତେବେଳେ କେମିତି ପର୍ଯ୍ୟଟନ ବା ଅନ୍ୟ ବିଭାଗର ସରକାରୀ ଅଫିସରମାନେ ଆସିଲେ ବଂଗଳାରେ ରାତ୍ରୀଯାପନ କରିଥାନ୍ତି । ଚୌକିଦାର କହିଲା, ପାଖରେ ଏକ ଛୋଟ ତେଜରାଜି ଦୋକାନରେ ଅଟା, ଚାଉଳ, ଡାଲି, ଆଳୁ, ପିଆଜ, ଆଦି ମିଳିବ । କୁକୁଡ଼ା ଅଣ୍ଡା ମଧ୍ୟ ମିଳିପାରେ । ତାକୁ ପଇସା ଦେଲେ ସେ ରାତ୍ରୀଭୋଜନର ସବୁ ସାମାନ ବନ୍ଦୋବସ୍ତ କରି ନେଇ ଆସିବ । ସଉଦାପତ୍ର ଆଣିବା ପାଇଁ ଚୌକିଦାରକୁ ପଇସା ଦେଇ, ବିଦାୟ କରି ବିଛଣାରେ ଗଡ଼ପଡ ହେଉଛୁ, ଆସ୍ତେ ଆସ୍ତେ ଗୋଟି ଗୋଟି ହୋଇ ଅନ୍ୟମାନେ ଆସି ପହଞ୍ଚିଗଲେ । ସେମାନଙ୍କ ପାଇଁ ଗୁରୁଦ୍ୱାରରେ ରହଣିର ବନ୍ଦୋବସ୍ତ ହୋଇଥାଏ । ରାତ୍ରୀଭୋଜନର ଚିନ୍ତାକରିବାର ଅବକାଶ ମଧ୍ୟ ସେମାନଙ୍କର ନଥାଏ । କାରଣ ଗୁରୁଦ୍ୱାରରେ ଅତିଥିମାନଙ୍କୁ ମାଗଣା ଭୋଜନ ମିଳିଥାଏ । ରାତ୍ରି ପ୍ରାୟ ନଅଟା ବେଳକୁ ଚୌକିଦାରର ହାତ ପରଷା ଗରମ ଗରମ ଭାତ, ଡାଲି, ଛୋଟ ଛୋଟ କଟା ଆଳୁ ଓ ଅଣ୍ଡା ତରକାରୀ ପରମ ତୃପ୍ତିରେ ଭୋଜନ କରି ବିଛଣା ଧରିଲୁ । କ୍ଲାନ୍ତି ବଶତଃ ନିଦ ସଂଗେ ସଂଗେ ଆସିଗଲା ।

ତହିଁ ପରଦିନ ସକାଳେ ଉଠି ଚା' ପର୍ବ ସମାପନାନ୍ତେ ଦିନର କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହୋଇଗଲୁ । ସେ ଦିନର କାର୍ଯ୍ୟକ୍ରମ ଥାଏ ଭ୍ୟାଲି ଅଫ୍ ଫ୍ଲାୱାର୍ସ ବା 'ଫୁଲର ଉପତ୍ୟକା'କୁ ଯାତ୍ରା । ସକାଳ ଜଳଖିଆରେ ଗରମ ଗରମ ପରଟା ଓ ଅଣ୍ଡା ଆମ୍‌ଲେଟ ପରଷି ଦେଲା ଆମ ଚୌକିଦାର । ଖାଇସାରି ନିକଟସ୍ଥ ଗୁରୁଦ୍ୱାରରେ ପହଞ୍ଚିଲୁ, ଯେଉଁଠି ଅନ୍ୟ ବନ୍ଧୁମାନେ ରହୁଥିଲେ । ସେମାନେ ମଧ୍ୟ ପ୍ରସ୍ତୁତ ହୋଇସାରି ପ୍ରାତଃ ଭୋଜନ ନେଉଥାନ୍ତି ରୁଟି, ଆଚାର ଏବଂ ଆଳୁ ସବ୍‌ଜି । ଆମେ ଅଣ୍ଡା ଆମ୍‌ଲେଟ୍ ଖାଇଛୁ ଶୁଣି ସେମାନେ ଈର୍ଷା କଲେ ।

'ଘାଙ୍ଗାରିଆ' ଠାରୁ 'ଭ୍ୟାଲି ଅଫ୍ ଫ୍ଲାଓାରସ୍'ର ଦୂରତା ମାତ୍ର ୬ କିଲୋମିଟର । କିନ୍ତୁ ଆରୋହଣର ରାସ୍ତା ବେଶ୍ ତୀକ୍ଷଣ ଓ ପିଚ୍ଛିଳ । ହିମାଳୟ କୋଳରେ ଏହି ରମଣୀୟ 'ଫୁଲର ଉପତ୍ୟକା' ଜଣେ ବ୍ରିଟିଶ୍ ପର୍ବତାରୋହଣକାରୀ ଫ୍ରାଙ୍କ୍ ସ୍ମିଥ୍‌ଙ୍କ ଦ୍ୱାରା ୧୯୮୨ ମସିହାରେ ଅଚାନକ ଆବିଷ୍କୃତ ହୋଇଥିଲା । ୮୭.୫ ବର୍ଗ କିଲୋମିଟର ପରିବ୍ୟାପ୍ତ ଏହି ଅଂଚଳଟି ଏବେ ଜାତୀୟ ଉଦ୍ୟାନ ମାନ୍ୟତା ପାଇଛି । ଜୁନ୍ ମାସର ମଧ୍ୟ ଭାଗରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଜାତି ଜାତିକା ଫୁଲରେ ସମଗ୍ର ଉପତ୍ୟକାଟି ଭରିଯାଏ । ଛୋଟ ଛୋଟ ଘାସଫୁଲରୁ  ଆରମ୍ଭ କର କ୍ୟାଲେଣ୍ଡୁଲା, ଡାଇଆନ୍ଥସ, ବ୍ଲୁ ପପି ଏବଂ ହିମାଳୟ ପ୍ରସିଦ୍ଧ 'ରୋଡୋଡେଣ୍ଡ୍ରନ' ଫୁଲ ଭଳି ପ୍ରାୟ ୩୦୦ରୁ ଊର୍ଦ୍ଧ୍ୱ ପ୍ରଜାତିର ଫୁଲମାନଙ୍କର ସମୀରଣରେ ଦୋଳାୟମାନ ହେଉଥିବାର ଦୃଶ୍ୟ ଭାବବିହ୍ୱଳ କରିଦିଏ ଦର୍ଶକଙ୍କୁ ।

ସମୁଦାୟ ଉପତ୍ୟକାଟି ଲମ୍ବାରେ ୧୦ କିଲୋମିଟର ଏବଂ ଓସାରରେ ଦୁଇ କିଲୋମିଟର ବିସ୍ତୃତ । ପ୍ରଚ୍ଛଦପଟରେ ଆଠ କିଲୋମିଟର ଲମ୍ବର ବରଫାବୃତ ଗିରିଶୃଙ୍ଗ । ଉପତ୍ୟକାର ମଝିରେ ବୋହିଯାଇଛି 'ପୁଷ୍ପବତୀ' ନାମ୍ନୀ ଛୋଟ ପାହାଡ଼ୀ ଝରଣାଟିଏ । ଏହା ବ୍ୟତୀତ ରହିଛି ଅନେକ ଛୋଟ ଛୋଟ ନାଳ ଓ ଜଳପ୍ରପାତ ।

'ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' । ୟୁନେସ୍କୋ ଦ୍ୱାରା ଉତ୍ତର ହିମାଳୟର ଏହି ସୁଉଚ୍ଚ ପର୍ଯ୍ୟଟନ ସ୍ଥଳୀକୁ ଏବେ ବିଶ୍ୱ ହେରିଟେଜ୍‌ର ମାନ୍ୟତା ମିଳିଛି । ବେଶ୍ କିଛି ସମୟ ଫୁଲର ଉପତ୍ୟକାରେ ସୁନ୍ଦର ଫୁଲମାନଙ୍କର ଗହଣରେ ବିତାଇ ଅପରାହ୍ଣରେ ଫେରିଆସିଲୁ ବେସ୍ କ୍ୟାମ୍ପ୍ ଘାଙ୍ଗାରିଆକୁ । ଦିନବେଳା ବଂଗଳା ଚୌକିଦାର କୁକୁଡ଼ାଟିଏ ଯୋଗାଡ଼ କରି ଆଣିଥିଲା ଏବଂ କିଛି ଦହି ମଧ୍ୟ ଆଣିଥିଲା । ରାତ୍ରୀ ଭୋଜନରେ ଗରମ ଭାତ, କୁକୁଡ଼ା ଝୋଳ ଓ ଦହିଆଳୁ ତରକାରୀ ହେଲା ତୃପ୍ତିକର ।

ତା'ପରଦିନ ଯାତ୍ରା ଥିଲା ଅତ୍ୟନ୍ତ କଠିନ । 'ଘାଙ୍ଗାରିଆ'ଠାରୁ 'ହେମକୁଣ୍ଡ' ପହଞ୍ଚିବାକୁ ହେଲେ ପ୍ରାୟ ଚାରିହଜାର ଫୁଟରୁ ଅଧିକ ଉଚ୍ଚତାକୁ ଆରୋହଣ କରିବାକୁ ପଡ଼ିବ । 'ହେମକୁଣ୍ଡ' ସମୁଦ୍ର ପତ୍ତନଠାରୁ ପ୍ରାୟ ୧୫,୦୦୦ଫୁଟ ଉଚ୍ଚତାରେ ଥିବାରୁ ସ୍ନୋ ଲାଇନ୍ ଅର୍ଥାତ୍ ୧୨,୦୦୦ ଫୁଟ ପରଠାରୁ ଏହି ସ୍ଥାନରେ ପହଞ୍ଚିବା ପର୍ଯ୍ୟନ୍ତ ବରଫ ଉପରେ ଚାଲିଚାଲି ଯିବାକୁ ପଡ଼ିବ । ଏଣିକି କେବଳ ବରଫ ହିଁ  ବରଫ । ପାଦରେ ସମସ୍ତେ ଗମ୍ ବୁଟ୍ ପିନ୍ଧିଥାଉ । ହାତରେ ମୋଜା, ମୁଣ୍ଡରେ ମଙ୍କି କ୍ୟାପ୍ । ହେଲେ ଥଣ୍ଡାରେ ଗୋଡ଼ ହାତ ଜଡ଼ ପାଲଟି ଯାଉଥାଏ । ହେମକୁଣ୍ଡ ଏକ ବିରାଟକାୟ ହ୍ରଦ, ଯାହାର ତିନି ଚତୁର୍ଥାଂଶରୁ ଊର୍ଦ୍ଧ୍ୱ ଇଲାକା ବର୍ଷସାରା ବରଫାବୃତ୍ତ ହୋଇ ରହିଥାଏ ।

କେବଳ ଗୋଟିଏ ପାଖରେ ହ୍ରଦର କିଛି ଅଂଶରେ ଜଳ ଦୃଶ୍ୟମାନ ହେଉଥାଏ ଏବଂ ସେହି ପଟେ ଉଛୁଳି ପଡୁଥିବା ପାଣି, ସରୁ ଜଳଧାରାଟିଏ ହୋଇ ବରଫ କାଟି ତଳକୁ ବୋହି ଚାଲିଥାଏ ।

ଶିଖ୍‌ମାନଙ୍କ ପବିତ୍ର ଧର୍ମଗ୍ରନ୍ଥ 'ଗୁରୁଗ୍ରନ୍ଥ ସାହେବ'ରେ ଉଲ୍ଲେଖ ଅଛି, ଗୁରୁ ଗୋବିନ୍ଦ ସିଂହ, ପୂର୍ବଜନ୍ମରେ ସାତଗୋଟି ବରଫାବୃତ ଗିରିଶୃଙ୍ଗ ମଧ୍ୟରେ ଥିବା ଏକ ହ୍ରଦ କୂଳରେ ବସି ତପସ୍ୟା କରୁଥିଲେ । ଶିଖ୍ ତୀର୍ଥଯାତ୍ରୀମାନଙ୍କ ମତରେ 'ହେମକୁଣ୍ଡ' ହିଁ ସେହି ଗ୍ରନ୍ଥ ବର୍ଣ୍ଣିତ ହ୍ରଦ । ତେଣୁ ଏହି ପବିତ୍ର ହ୍ରଦ କୂଳରେ, ସମୁଦ୍ରପତ୍ତନଠାରୁ ୧୫,୦୦୦ଫୁଟ ଉଚ୍ଚ, ବର୍ଷସାରା ତୁଷାରାଚ୍ଛନ୍ନ ଅଂଚଳରେ ମଧ୍ୟ ସେମାନେ ଗୁରୁଦ୍ୱାରଟିଏ ସ୍ଥାପନ କରିବାକୁ ପଛାଇ ନାହାନ୍ତି । ଗୁରୁଦ୍ୱାରର ନାମ 'ହେମକୁଣ୍ଡ ସାହେବ' । ହ୍ରଦ କୂଳରେ ଲକ୍ଷ୍ମଣଙ୍କର ଛୋଟ ମନ୍ଦିରଟିଏ ମଧ୍ୟ ଅଛି । 'ହେମକୁଣ୍ଡ ସାହେବ'ରେ ଆମକୁ ପେଟପୂରା ପ୍ରସାଦ ସେବନ କରିବାର ସୁଯୋଗ ମଧ୍ୟ ମିଳିଲା । ବେସ୍ କ୍ୟାମ୍ପ୍‌କୁ ଫେରିଲା ବେଳକୁ ସଂଧ୍ୟା ଆଗତ ପ୍ରାୟ । ଉତ୍ତୀର୍ଣ୍ଣ ସଂଧ୍ୟାରେ ଆମ ମନ ବୁଝିଲା ଭଳି ଚା' ସାଂଗକୁ ଗରମ ଆଳୁପକୋଡ଼ା ପରଷି ଦେଇଥିଲା ବଂଗଳା ଚୌକିଦାର । ଗୁରୁଦ୍ୱାରରେ ଥିବା ଅନ୍ୟ ସହକର୍ମୀଙ୍କୁ ମଧ୍ୟ ଚା' ପକୋଡ଼ା ଖୁଆଇଲୁ । ସତରେ ଏହି ପାହାଡ଼ୀ ଲୋକମାନେ କେତେ ବିଶ୍ୱସ୍ତ, ସମ୍ବେଦନଶୀଳ ଏବଂ ସେମାନଙ୍କର କର୍ତ୍ତବ୍ୟ ପ୍ରତି କେତେ ସଚେତନ ଭାବିଲେ ଆଶଚର୍ଯ୍ୟ ଲାଗେ !

ତହିଁ ପରଦିନ ଫେରିବାର ଥିଲା । ସକାଳୁ ସକାଳୁ 'ଘାଙ୍ଗାରିଆ'ରୁ ଗୋବିନ୍ଦଘାଟ ଯାଏ ଟ୍ରେକିଙ୍ଗ୍ ବା ପଦଯାତ୍ରା । ସେଠୁ ଅପରାହ୍ନରେ ୨୮ କିଲୋମିଟର ବସ୍‌ଯାତ୍ରା କରି ଆମେ ସଂଧ୍ୟା ସୁଦ୍ଧା ପହଞ୍ଚିଲୁ ପୁରାଣପ୍ରସିଦ୍ଧ ବଦ୍ରୀନାଥ ବା ବଦ୍ରିବିଶାଳଙ୍କ ଧାମରେ । ଚତୁର୍ଦ୍ଧାମ ଭିତରେ ଏହି ସ୍ଥାନ ଅନ୍ୟତମ । ବଦ୍ରୀନାଥ ହିମାଳୟର ଏକ ଅନନ୍ୟ ତୀର୍ଥସ୍ଥଳ ହେଲେ ମଧ୍ୟ ମନ୍ଦିରକୁ କେନ୍ଦ୍ରକରି ପର୍ଯ୍ୟଟକମାନଙ୍କ ପାଇଁ ବେଶ୍ ସୁନ୍ଦର ସହରଟିଏ ଏଠି ଗଢ଼ି ଉଠିଛି । ଦୋକାନ ବଜାର, ହୋଟେଲ୍ ବ୍ୟତୀତ ଏଠି ରହିଛି ଅନେକ ଧର୍ମଶାଳା, ଯାତ୍ରୀ ବିଶ୍ରାମଗାର, ବନବିଭାଗ ଏବଂ ରାଜସ୍ୱ ବିଭାଗର ଡାକବଂଗଳା । ଉକ୍ତ ବଙ୍ଗଳାରେ ଆମ୍ଭମାନଙ୍କ ପାଇଁ ରହିବାର ସୁବନ୍ଦୋବସ୍ତ କରାଯାଇଥାଏ ।

ସମୁଦ୍ରପତ୍ତନଠାରୁ ବଦ୍ରିନାଥର ଉଚ୍ଚତା୩୧୧୦ମିଟରେ, ଅର୍ଥାତ୍ ପ୍ରାୟ ୧୦,୧୫୦ ଫୁଟ୍ । ବସ୍ ସିଧା ବଦ୍ରୀନାଥ ଯାଇଥିଲା । ଏବେ ଠିକ୍ ଭାବେ ମନେପକେଇ ପାରୁନି, ୧୯୭୭ ମସିହାରେ ସେଠି ବିଜୁଳି ଆଲୋକ ବ୍ୟବସ୍ଥା ଥିଲା କି ନାହିଁ । ରାତ୍ରିଭୋଜନ

ପରେ ପରେ ନିଦ୍ରାଦେବୀଙ୍କର ସଅଳ ସମ୍ଭାଷଣକୁ ଏଡ଼ାଇ ଦେଇ ହେଲା ନାହିଁ । ବିଗତ ଚାରିଦିନ କ୍ରମାଗତ ଟ୍ରେକିଙ୍ଗ୍ କରି ଆମେ ସମସ୍ତେ କାୟିକ ଓ ମାନସିକ ସ୍ତରରେ କ୍ଳାନ୍ତ ହୋଇ ପଡ଼ିଥିଲୁ । ପରଦିନ ପ୍ରତ୍ୟୁଷରୁ ନିଦ ଭାଙ୍ଗିଗଲା । ସକାଳର କୁଣ୍ଠିତ ସୂର୍ଯ୍ୟକିରଣ, ଅଦୂରରେ ତୁଷାରାବୃତ୍ତ ସୁଉଚ୍ଚ ଗିରିଶୃଙ୍ଗରୁ ସତେ ଯେମିତି ସୁବର୍ଣ୍ଣ ରଥରେ ଧୀରେ ଧୀର ତଳକୁ ଓହ୍ଲାଇ ଆସୁଥିଲେ । ଅବର୍ଣ୍ଣନୀୟ ସେ ଅନୁଭୂତି ! ସମୁଜ୍ଜ୍ୱଳ ସୂର୍ଯ୍ୟାଲୋକ ସହିତ ମିଶି ରହିଥିଲା ଅତି-ଭୌତିକ, ଆଧ୍ୟାତ୍ମିକ ଦ୍ୟୁତିଟି,-ଯାହା ବିମୋହିତ କରୁଥିଲା ପ୍ରାଣସତ୍ତାକୁ । ସାମଗ୍ରିକ ବାତାବରଣର କୋମଳ ସ୍ପର୍ଶରେ ସ୍ପନ୍ଦିତ ହେଉଥିଲା ଆତ୍ମା ।

ଅଳକାନନ୍ଦା ନଦୀର ବାମପଟେ ସହରଟିଏ ରହିଥିବା ବେଳେ ଡାହାଣପଟେ ବଦ୍ରି ବିଶାଳଙ୍କର ମନ୍ଦିର । ମନ୍ଦିରର ପ୍ରଚ୍ଛଦପଟରେ ନର-ନାରାୟଣ ଦୁଇ ପର୍ବତ । କିମ୍ବଦନ୍ତୀ କହେ ନର-ନାରାୟଣ ନାମରେ ଦୁଇଜଣ ତପସ୍ୱୀ ଏହି ଉପତ୍ୟକାରେ ତପସ୍ୟାଧୀନ ହୋଇ ବରପ୍ରାପ୍ତି ହୋଇଥିଲେ । ସେମାନଙ୍କର ପ୍ରତୀକ ସ୍ୱରୂପ ଦଣ୍ଡାୟମାନ ଏହି ପର୍ବତ ଦ୍ୱୟର ନାମକରଣ କରାଯାଇଛି । ସହର ପଟୁ ମନ୍ଦିରକୁ ଯିବାକୁ ହେଲେ ଅଳକାନନ୍ଦା ଉପରେ ନିର୍ମିତ ପୋଲ ପାରି ହୋଇ ଯିବାକୁ ହୁଏ । ପୋଲ ଉପରୁ ବଦ୍ରି ବିଶାଳଙ୍କର ମନ୍ଦିର ଅଳକାନନ୍ଦାର ସର୍ପିଳ ଗତିପଥ, ପୃଷ୍ଠଦେଶରେ ଥିବା ନର-ନାରାୟଣ ପର୍ବତ ଶିଖରର ଦୃଶ୍ୟ ଉପଭୋଗ୍ୟ । ଏଠାକୁ ଆସୁଥିବା ପର୍ଯ୍ୟଟକ ଧର୍ମବିଶ୍ୱାସୀ ହୋଇ ନଥିଲେ କିଛି ଯାଏ ଆସେ ନାହିଁ । କାରଣ ସମଗ୍ର ପରିବେଶ ତଥା ବାତାବରଣ ପ୍ରକଟିତ ହୋଇ ଆପେ ଆପେ ପର୍ଯ୍ୟଟକ ମନରେ ଧର୍ମବିଶ୍ୱାସ ଜାଗ୍ରତ କରିଦିଏ ।

ମନ୍ଦିର ସମ୍ମୁଖରେ ସାମାନ୍ୟ ତଳକୁ 'ଅଳକାନନ୍ଦା' ନଦୀକୂଳରେ ରହିଛି ଏକ ତପ୍ତ କୁଣ୍ଡ । ବ୍ରଦିନାଥ ଧାମର ଥଣ୍ଡା ପରିବେଶରେ ତପ୍ତକୁଣ୍ଡର ଉଷୁମ ଜଳ ବୋଧହୁଏ ବଦ୍ରିବିଶାଳଙ୍କର ଏକ ଅପୂର୍ବ ସୃଷ୍ଟି । ବାହାରେ ପ୍ରଚଣ୍ଡ ଥଣ୍ଡା । ଆମେ ସବୁ ତପ୍ତ କୁଣ୍ଡର ଉଷୁମ ଜଳରେ ଆରାମଦାୟକ ସ୍ନାନ ସମାପନ କରି ଦେବ ଦର୍ଶନ ପାଇଁ ମନ୍ଦିରରେ ପହଞ୍ଚିଲୁ । ବଦ୍ରିବିଶାଳଙ୍କର ମନ୍ଦିର ଗଠନ ଓ ପରିପାଟୀ ଦେଖିଲେ, ତାହା ଅତି ପୁରାତନ ପରି ମନେହୁଏ ନାହିଁ । ମାତ୍ର ପନ୍ଦର ମିଟର ଉଚ୍ଚତା ବିଶିଷ୍ଟ ଏହି ମନ୍ଦିରଟି, ଗୋଟିଏ ସୁନ୍ଦର ଉପତ୍ୟକା ମଧ୍ୟରେ ଠିଆ ହୋଇଥିବା ପାହାଡ଼ର ନିମ୍ନ ଢାଲୁରେ ଦଣ୍ଡାୟମାନ । ମନ୍ଦିରରେ ପୂଜା ପାଆନ୍ତି ଭଗବାନ ବିଷ୍ଣୁ । କଥିତ ଅଛି, ଅଷ୍ଟମ ଶତାବ୍ଦୀରେ ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଏହି ମନ୍ଦିର ନିର୍ମିତ ହୋଇଛି । ଦେଖିବାକୁ ଛୋଟ ମନ୍ଦିରଟି ହେଲେ ମଧ୍ୟ ସିଂହଦ୍ୱାରଟି ଖୁବ୍ ଆକର୍ଷଣୀୟ ଏବଂ ବିଭିନ୍ନ ରଂଗରେ ରଂଗାୟିତ । ମନ୍ଦିର ମଧ୍ୟରେ ରହିଛି କଳା

ମୁଗୁନି ପଥରରେ ନିର୍ମିତ ପଦ୍ମାସନରେ ଧ୍ୟାନମୁଦ୍ରାରେ ବସିଥିବା ପ୍ରାୟ ତିନିଫୁଟ ଉଚ୍ଚ ବଦ୍ରି ବିଶାଳଙ୍କର ପ୍ରତିମୂର୍ତ୍ତି । ଫୁଲ, ତୁଳସୀପତ୍ରରେ ସର୍ବଦା ଆଚ୍ଛାଦିତ ହୋଇ ରହିଥିବା ବଦ୍ରିନାଥଙ୍କର ରୂପଦର୍ଶନ ସାଧାରଣତଃ ସମ୍ଭବ ହୋଇ ନଥାଏ । ପୁରୀ ଶ୍ରୀମନ୍ଦିରରେ ଆଳତି ଓ ଗୀତଗୋବିନ୍ଦ ଗାନପରେ ରାତିରେ ପହୁଡ଼ ପଡ଼ିଲା ପରି ଏଠି ମଧ୍ୟ ରାତି ଆଠଟାରେ ଗୀତଗୋବିନ୍ଦ ଗାନ ସରିବା ପରେ ମନ୍ଦିର ବନ୍ଦ ହୋଇଯାଇଥାଏ । ଆଉ ଗୋଟିଏ କଥା ଏବେ ବି ମୋର ସ୍ପଷ୍ଟ ମନେ ରହିଛି; ଉତ୍ତର ହିମାଳୟର ବିଭିନ୍ନ ଦେବସ୍ଥଳୀ ଦର୍ଶନ ଅବକାଶରେ ପ୍ରଥମ ଥର ପାଇଁ ବଦ୍ରିନାଥରେ ଓଡ଼ିଆ ଭାଷା କାନରେ ପଡ଼ିଲା । ସବୁ ପର୍ଯ୍ୟଟନ ସ୍ଥଳୀରେ ବଂଗଳା ଭାଷା କିନ୍ତୁ ନିଶ୍ଚିତ ଶୁଣିବାକୁ ମିଳିବ । ମନକୁ ବୋଧଦେଲି, ଯାହାହେଉ ଏଇ ସୁଦୂର ଧାମକୁ ମଧ୍ୟ ଓଡ଼ିଆ ଯାତ୍ରୀଙ୍କର ସମାଗମ ଅଛି ।

ଅପରାହ୍ନରେ ସୁଉଚ୍ଚ ପର୍ବତମାଳାକୁ ଚାହିଁଚାହିଁ ଏବଂ ବଦ୍ରି ବିଶାଳଙ୍କୁ ଭକ୍ତିପୂତ ପ୍ରଣାମ ଜଣେଇ ଯୋଶୀମଠ ଉଦ୍ଦେଶ୍ୟରେ ପ୍ରତ୍ୟାବର୍ତ୍ତନ କଲୁ । ସଂଧ୍ୟା ଛଅଟା ସୁଦ୍ଧା ପହଞ୍ଚି ଗଲୁ ଯୋଶୀମଠରେ । ସେଦିନ ରାତ୍ରୀଯାପନ ପରେ ତହିଁ ପରଦିନ ସିଧା ସଳଖ ଫେରିଗଲୁ କର୍ମସ୍ଥଳୀ ମସୌରୀ-ଲାଲ ବାହାଦୁର ଶାସ୍ତ୍ରୀ ଜାତୀୟ ପ୍ରଶାସନ ଏକାଡ଼େମୀ । ଭାରତ ଦର୍ଶନ ପର୍ଯ୍ୟାୟରେ ଆୟୋଜିତ ଦୀର୍ଘ ଦଶଦିନ ବ୍ୟାପୃ 'ଉତ୍ତର ହିମାଳୟ ଦର୍ଶନ' କାର୍ଯ୍ୟକ୍ରମର ପରିସମାପ୍ତି ଘଟିଲା । କିନ୍ତୁ ସତରେ କ'ଣ ମନ ଭିତରୁ ସମାପ୍ତ କରିହେଲା ନଗାଧିରାଜ ହିମାଳୟର ସେ ଅନିର୍ବଚନୀୟ ସୌନ୍ଦର୍ଯ୍ୟ । ସତରେ କ'ଣ ଭୁଲି ହେଲା ଚିର ବରଫାବୃତ୍ତ ସୁଉଚ୍ଚ ଗିରିଶୃଙ୍ଗର ଭୀମକାନ୍ତ ରୂପ ! ପ୍ରଖ୍ୟାତ ଦାର୍ଶନିକ, ସାରସ୍ୱତ ସାଧକ ମନୋଜ ଦାସଙ୍କ ଭାଷାରେ, 'ହିମାଳୟର ଭୌଗୋଳିକ ସଂଜ୍ଞା ଯାହା ହେଉନା କାହିଁକି, ଏହା ଏକ ବିସ୍ମୟ । କିନ୍ତୁ ସେ ମହତ୍ ବିସ୍ମୟ ମିଣଷକୁ ବିମୂଢ଼ କରେନା, ଅଭୀପ୍ସା ଶିଖାଏ । ହିମାଳୟ ଏତେ ବଡ଼ ଯେ ସେ ଅନ୍ଧ ମଣିଷର ବଡ଼ପଣିଆକୁ ବିଦ୍ରୂପ କରେନା, ତାକୁ ଉତ୍ତରଣର ଇଂଗିତ ଦିଏ ।

ସୌନ୍ଦର୍ଯ୍ୟ ଦୃଷ୍ଟିରୁ ମଧ୍ୟ ହିମାଳୟ ସହ ତୁଳନୀୟ ଦ୍ୱିତୀୟ ସ୍ଥାନ ଦେଖିବାର ସୁଯୋଗ ଏଯାବତ୍ ମୋତେ ମିଳିନାହିଁ । ମହାକବି କାଳିଦାସ ଯଥାର୍ଥରେ ଲେଖିଥିଲେ;

*'ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା*
*ହିମାଳୟୋ ନାମ ନଗାଧିରାଜଃ'*

❑❑❑

# ଫୁଲ ଫୁଟିଥିଲା ଫୁଲବାଗିରେ



**ଫୁ**ଲ କଢ଼ିଟିଏ ଫୁଟିବ ଫୁଟିବ ହେଉଥିବ, ଅଥଚ ପ୍ରସ୍ଫୁଟିତ ହେଉ ନ ଥିବ; ପାଚିଲା ଆମ୍ବଟିଏ ପବନରେ ଗଛ ଡାଳରେ ଦୋହଲି ଦୋହଲି ଖସିପଡ଼ିଲା ପରି ମନେ ହେଉଥିବ, ଅଥଚ ଖସୁ ନ ଥିବ ! କି ବିକଳ ଅନୁଭୂତି । ଠିକ୍ ସେମିତି ଅନୁଭୂତି ଓ ଉତ୍କଣ୍ଠା ଆମ ମନରେ ମଧ୍ୟ ଭରି ରହିଥିଲା । ଡେରାଡୁନ୍ ବନ ମହାବିଦ୍ୟାଳୟରେ ଦୁଇବର୍ଷର ପ୍ରଶିକ୍ଷଣ ସମାପ୍ତ କରି ଆମେ ମସୌରୀସ୍ଥିତ ଲାଲ୍ ବାହାଦୁର ଶାସ୍ତ୍ରୀ ଜାତୀୟ ଏକାଡେମୀରେ ଯୋଗଦାନ ନିମନ୍ତେ ପ୍ରସ୍ତୁତ ହେଲୁଣି ଅଥଚ ଆମର କ୍ୟାଡର ଆଲଟ୍‌ମେଣ୍ଟ ସେ ପର୍ଯ୍ୟନ୍ତ ଆସି ନ ଥାଏ । ସେ ସମୟରେ ସର୍ବଭାରତୀୟ ସେବାରେ ଅଫିସରମାନଙ୍କର କ୍ୟାଡର୍ କିପରି ନିର୍ଦ୍ଧାରିତ ହେଉଥାଏ, ତାହା ମଧ୍ୟ ଆମକୁ ଠିକ୍ ଭାବେ ଜଣା ନ ଥାଏ । ଏହା ପୂର୍ବରୁ ୧୯୬୯ ମସିହାର ସର୍ବଭାରତୀୟ ବନସେବା ପରୀକ୍ଷାରେ ଓଡ଼ିଶାର ଶ୍ରୀଯୁକ୍ତ ପ୍ରେମାନନ୍ଦ ପଟ୍ଟନାୟକ ଭାରତରେ ପ୍ରଥମ ହେବାର କୃତିତ୍ୱ ଅର୍ଜନ କରିଥିଲେ । ଅଥଚ ତାଙ୍କୁ ନିଜ ରାଜ୍ୟ ଓଡ଼ିଶା କ୍ୟାଡ଼ର ନ ମିଳି, ଜାମ୍ମୁ-କାଶ୍ମୀର କ୍ୟାଡର ମିଳିଥିଲା । ଏହି

କାରଣରୁ କ୍ୟାଡର କଥା ଭାବି ଭାବି ଉଚ୍ଚାଟ ଥାଏ ମନ । ଠିକ୍ ପରୀକ୍ଷା ଫଳ ବାହାରିବା ଆଗରୁ ଛାତି ଯେପରି ଦୁରୁଦୁରୁ ହେଉଥାଏ ।

ଏଇ ଅବସରରେ ଦିନେ ହଠାତ୍ ଓଡ଼ିଶାରୁ ଇନ୍‌କମ୍ ଟ୍ୟାକ୍ସ ଅଫିସର ବଂଧୁ କୈଳାସ ଚନ୍ଦ୍ର ଷଡଙ୍ଗୀଙ୍କଠାରୁ ମୋର ଓଡ଼ିଶା କ୍ୟାଡ଼ର ହୋଇଛି ବୋଲି ଫୋନ୍‌ରେ ସମ୍ବାଦ ପାଇଲି । କିପରି ଜାଣିଲ ବୋଲି ପଚାରିଲାରୁ ସେ କହିଲେ, ଆଜି ଓଡ଼ିଶାର ଚିଫ୍ ସେକ୍ରେଟେରୀ ତାଙ୍କୁ ଇନ୍‌କମ୍ ଟ୍ୟାକ୍ସ ରିଟର୍ଣ୍ଣ ଦେବାପାଇଁ ଡକାଇଥିଲେ, ଫରେଷ୍ଟ ସର୍ଭିସ୍‌ରେ ଓଡ଼ିଶା କିଏ ଆସୁଛି ପଚାରିବାରେ ସେ ମହାଶୟ ମୋ ନାଁ କହିଥିଲେ । ଫୋନ୍‌ରେ ଶୁଭ ଖବରଟା ଶୁଣି ମନ ହାଲ୍‌କା ହୋଇଗଲା । କିନ୍ତୁ ଏକଥା କାହା ଆଗରେ ପ୍ରଘଟ ନ କରି ଚୁପ୍ ରହିଲି । କାଗଜକଲମରେ ଲିଖିତ ନିର୍ଦ୍ଦେଶ ନ ଆସିଲା ପର୍ଯ୍ୟନ୍ତ, କିଏ କହିବ ପରେ ଯଦି ନ ହୋଇଥାଏ, ପୁନଶ୍ଚ ସମସ୍ତଙ୍କ ଆଗରେ ଅପଦସ୍ଥ ହେବାକୁ ପଡ଼ିବ । ଏଠି କହିରଖେ ବଂଧୁ କୈଳାସ ଚନ୍ଦ୍ର ଷଡଙ୍ଗୀ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ହାସଲ କଲା ପରେ ପ୍ରଥମେ ୧୯୭୪ ମସିହାରେ ଭାରତୀୟ ବନ ସେବାରେ ଯୋଗଦାନ କରିଥିଲେ । ଡେରାଡୁନ୍‌ଠାରେ ପ୍ରାୟ ସାତ, ଆଠ ମାସ ଟ୍ରେନିଂ ନେଲାପରେ ସିଭିଲ ସର୍ଭିସ୍ ପରୀକ୍ଷାରେ କୃତିତ୍ୱ ହାସଲ କରି ଭାରତୀୟ ରେଭେନ୍ୟୁ ସର୍ଭିସ୍ (ଇନକମ୍ ଟ୍ୟାକ୍ସ) ରେ ଯୋଗ ଦେଇଥିଲେ । ଟ୍ରେନିଂ ପରେ ତାଙ୍କର ପ୍ରଥମ ପୋଷ୍ଟିଙ୍ଗ୍ ଓଡ଼ିଶାରେ ହୋଇଥିଲା ।

ଏହାର ଠିକ୍ ଦୁଇଦିନ ପରେ କ୍ୟାଡର ଆଲଟ୍‌ମେଣ୍ଟ ଲିଷ୍ଟ୍ ଆସି ପହଞ୍ଚିଗଲା । ଡେରାଡୁନ୍‌ଠାରେ ପ୍ରଶିକ୍ଷଣ ଶେଷକରି ଆମେ ସେତେବେଳକୁ ମସୌରୀ ଯିବାକୁ ପ୍ରସ୍ତୁତ ହେଉଥାଉ । ମୋ ବ୍ୟତୀତ ରାଜସ୍ଥାନର ଶ୍ରୀଯୁକ୍ତ ଅରୁଣ କୁମାର ବନ୍‌ସଲ୍‌ଙ୍କୁ ମଧ୍ୟ ଓଡ଼ିଶା କ୍ୟାଡର ମିଳିଥାଏ । ୧୯୭୫ ବ୍ୟାଚ୍‌ରେ ଆମେ ଦୁଇଜଣ ଓଡ଼ିଆ ପିଲା ୟୁନିୟନ୍ ପବ୍ଲିକ୍ ସର୍ଭିସ୍ କମିଶନ ଦ୍ୱାରା ସିଲେକ୍ଟ ହୋଇ ଭାରତୀୟ ବନସେବାରେ ଯୋଗଦାନ କରିଥିଲୁ । ଅନ୍ୟ ଜଣକ ହେଲେ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପ୍ରଧାନ । ରେଭେନ୍ସା ମହାବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ ସିଏ । ଉଦ୍ଭିଦ ବିଜ୍ଞାନର ଛାତ୍ର ହୋଇଥିବାରୁ ବନ ବିଭାଗରେ କାର୍ଯ୍ୟ କରିବାକୁ ତାଙ୍କର ପ୍ରବଳ ଆଗ୍ରହ ଥିଲା । ତେଣୁ ସର୍ବଭାରତୀୟ ଆଲାଏଡ୍ ସର୍ଭିସ୍‌ରେ ଥରେ ଯୋଗ୍ୟ ବିବେଚିତ ହୋଇ ମଧ୍ୟ ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ତାଙ୍କୁ ଓଡ଼ିଶା କ୍ୟାଡର ନ ମିଳି ମଧ୍ୟପ୍ରଦେଶ କ୍ୟାଡର ମିଳିଲା । ଦୁଃଖରେ ମ୍ରିୟମାଣ ହୋଇ ସେହିଦିନଠାରୁ ପୂରାଦମ୍‌ରେ ଭାରତୀୟ ପ୍ରଶାସନିକ

ସେବା ପରୀକ୍ଷା ପାଇଁ ପ୍ରସ୍ତୁତିରେ ଲାଗିପଡ଼ିଲେ । ପରିଶେଷରେ ଆଇ.ଏ.ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଏବେ ସେ ଓ୍ୱେଷ୍ଟବେଙ୍ଗଲ ସରକାରଙ୍କ ଅଧୀନରେ ଜଣେ ବରିଷ୍ଠ ଅଫିସର ରୂପେ କାର୍ଯ୍ୟରତ ।

ମସୌରୀ ଲାଲ ବାହାଦୁର ଶାସ୍ତ୍ରୀ ଏକାଡେମୀରେ ଚାରିମାସର ଟ୍ରେନିଂ ପରେ ୧୯୭୭ ମସିହା ଜୁଲାଇ ମାସରେ ମୁଁ ଭୁବନେଶ୍ୱର ଫେରିଲି । ସେଠି ରାଜ୍ୟ ସରକାରଙ୍କର ଗୋପବଂଧୁ ପ୍ରଶାସନ ଏକାଡେମୀରେ ଏକମାସ ପ୍ରଶାସନିକ ଟ୍ରେନିଂ ନେବାପାଇଁ ବନ୍ଦୋବସ୍ତ କରାଯାଇଥାଏ । ଏହି ସମୟରେ ଆମକୁ ଭୁବନେଶ୍ୱର ବନ୍ୟଜନ୍ତୁ ସଂରକ୍ଷଣ ଅଫିସ୍‌ରେ ସଂଲଗ୍ନ ଅଧିକାରୀ ଭାବେ ନିଯୁକ୍ତି ଦିଆଗଲା । ଫଳରେ ଟ୍ରେନିଂ ଅବସରରେ ଆମେ ସେଠାରୁ ଦରମା ପାଇପାରିବୁ । ସେ ସମୟରେ ସମଗ୍ର ଓଡ଼ିଶା ପାଇଁ ଭୁବନେଶ୍ୱର ବନ୍ୟଜନ୍ତୁ ସଂରକ୍ଷଣ ଅଫିସ୍ ହିଁ ଏକମାତ୍ର ଏକକ ସଂସ୍ଥା ଥାଏ । ଭାରତୀୟ ବନସେବାର ଡି.ଏଫ୍.ଓ. ପାହ୍ୟାର ଜଣେ ସିନିୟର ଅଫିସର୍ ଶ୍ରୀ ସୁଧାକର ମହାପାତ୍ର ସେହି ଅଫିସ୍‌ର ମୁଖ୍ୟ ଥାଆନ୍ତି ଏବଂ ସାରା ଓଡ଼ିଶାର ବନ୍ୟଜନ୍ତୁ ସଂରକ୍ଷଣ କାର୍ଯ୍ୟକ୍ରମ ତାଙ୍କ ଦାୟିତ୍ୱରେ ଥାଏ । ଏବେ ପ୍ରମୁଖ ମୁଖ୍ୟ ବନ ସଂରକ୍ଷକ (ପି.ସି.ସି.ଏଫ୍.) ପାହ୍ୟାର ଜଣେ ଅଫିସର୍ ରାଜ୍ୟ ବନ୍ୟଜନ୍ତୁ ବିଭାଗର ମୁଖ୍ୟ ଅଛନ୍ତି । ମୋର ମନେ ଅଛି, ମୁଁ ଏବଂ ମୋର ସହକର୍ମୀ ଶ୍ରୀ ବନ୍‌ସଲ୍‌ଙ୍କୁ ଚିଲିକା, ଚନ୍ଦକା, ଭିତରକନିକା ଓ ନନ୍ଦନକାନନ ଇତ୍ୟାଦି ଦେଖାଇବା ସଂଗେ ସଂଗେ ରାଜ୍ୟର ବନ୍ୟ ଜୀବନ ଉପରେ ସମ୍ୟକ୍ ସୂଚନା ଦେବାପାଇଁ ସୁଧାକର ବାବୁଙ୍କୁ ସରକାରୀ ନିର୍ଦ୍ଦେଶ ମିଳିଥିଲା ।

ଗୋପବନ୍ଧୁ ପ୍ରଶାସନ ଏକାଡେମୀରେ ଚାରି ସପ୍ତାହର ଟ୍ରେନିଂ ସରିବା ପରେ ମଧ୍ୟ କିଛିଦିନ ପାଇଁ ଆମେ ବନ୍ୟଜନ୍ତୁ ସଂରକ୍ଷଣ ସଂସ୍ଥାରେ ସଂଲଗ୍ନ ଅଧିକାରୀ ବା ଆଟାଚ୍‌ଡ ଅଫିସର୍ ଭାବରେ ରହିଲୁ । ଏହି ସମୟ ଅବଧି ଭିତରେ ଏକଦା ତତ୍କାଳୀନ ବନମନ୍ତ୍ରୀ ନନ୍ଦନକାନନ ପରିଦର୍ଶନରେ ବାହାରିଲେ । ସେତେବେଳେ ବନ ବିଭାଗର ମନ୍ତ୍ରୀ ଥିଲେ ଶାସକ ଦଳର ଜନୈକ ବରିଷ୍ଠ ଟାଣୁଆ ନେତା ଶ୍ରୀ ନଟବର ପ୍ରଧାନ । ବନ ବିଭାଗ ସାଙ୍ଗକୁ ପୂର୍ତ୍ତ ବିଭାଗ ଦାୟିତ୍ୱରେ ମଧ୍ୟ ସେ ଥିଲେ । ବୌଦ୍ଧ-କନ୍ଧମାଳ ଜିଲ୍ଲାରୁ ଆସିଥିବା ଏହି ମନ୍ତ୍ରୀ ଜଣକ ଏବେ ଆଉ ଇହଜଗତରେ ନାହାନ୍ତି । ସେ ସମୟରେ ନୂଆ ନୂଆ ଶ୍ରୀଯୁକ୍ତ ନୀଳମଣି ରାଉତରାୟ (ବର୍ତ୍ତମାନ ସ୍ୱଗତ) ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥାନ୍ତି ।

ନନ୍ଦନକାନନରେ ପହଞ୍ଚିବା ପରେ ମନ୍ତ୍ରୀ ମହୋଦୟ ସିଧାସଳଖ ଗାଡ଼ିରେ ବସି ଚିଡ଼ିଆଖାନାରେ ଥିବା ବିଭିନ୍ନ ଜୀବଜନ୍ତୁ ଏବଂ ପଶୁପକ୍ଷୀଙ୍କ ଖୁଆଡ଼ ଦେଖିବାକୁ ବାହାରିଲେ । ଦିନ ପ୍ରାୟ ବାରଟା ଭିତରେ କ୍ଷେତ୍ର ପରିଦର୍ଶନରୁ ଫେରିଆସି କାଞ୍ଜିଆ ହ୍ରଦ ସନ୍ନିକଟ ଫରେଷ୍ଟ ରେଷ୍ଟ ହାଉସ୍‌ରେ ବିଭାଗୀୟ କାର୍ଯ୍ୟକର୍ତ୍ତାମାନଙ୍କ ସହ ନନ୍ଦନକାନନର ବିଭିନ୍ନ କାର୍ଯ୍ୟକଳାପ ସଂବନ୍ଧରେ ଆଲୋଚନା କଲେ । ଆଲୋଚନା ସମୟରେ ବନବିଭାଗ ତରଫରୁ ବନ୍ୟଜନ୍ତୁ ସଂରକ୍ଷଣ ଅଫିସରଙ୍କ ବ୍ୟତୀତ, ବନ ବିଭାଗ ମୁଖ୍ୟ ସି.ସି.ଏଫ୍. ଶ୍ରୀଯୁକ୍ତ ଶ୍ରୀପାଳ ଜୀ, ଶ୍ରୀ ଏସ୍.ଏନ୍.ଦାସ ଅତିରିକ୍ତ ସି.ସି.ଏଫ୍., ଡେପୁଟି ସେକ୍ରେଟାରୀ ଶ୍ରୀ ଡି.ଏନ୍.ପାଢ଼ୀ. ଆଇ.ଏ.ଏସ୍. ଉପସ୍ଥିତ ଥିଲେ । ଆମେ ଦୁଇଜଣ ଆଇ.ଏଫ୍.ଏସ୍. ପ୍ରୋବେସନର ମଧ୍ୟ ଆଲୋଚନାରେ ଅଂଶ ଗ୍ରହଣ କଲୁ । ମନ୍ତ୍ରୀ ମହୋଦୟ ଅପେକ୍ଷାକୃତ ପୃଥୁଳକାୟ ଥିବାରୁ ପାର୍କ ପରିଦର୍ଶନରୁ ଫେରି ଆସିଲା ବେଳକୁ ବେଶ୍ ଶାନ୍ତ, କ୍ଳାନ୍ତ ଜଣାପଡୁଥାନ୍ତି । ସେ ସମୟରେ ଗେଷ୍ଟ ହାଉସ୍‌ରେ ଏୟାର କଣ୍ଡିସନର୍ ବ୍ୟବସ୍ଥା ନ ଥାଏ । ତେଣୁ ଯଥାଶୀଘ୍ର ରିଭ୍ୟୁ ବା ଆଲୋଚନା ଶେଷ କରି ମଧ୍ୟାହ୍ନଭୋଜନର ବନ୍ଦୋବସ୍ତ କରିବାକୁ ମନ୍ତ୍ରୀ ନିର୍ଦ୍ଦେଶ ଦେଲେ ।

ମଧ୍ୟାହ୍ନଭୋଜନ ପରେ ମନ୍ତ୍ରୀ ମହୋଦୟ ବିଶ୍ରାମ ନେବାକୁ ଚାହୁଁଥିଲେ । କିନ୍ତୁ ନନ୍ଦନକାନନର ନିର୍ଦ୍ଦେଶକ ଶ୍ରୀ ସୁଧାକର ମହାପାତ୍ର ମନ୍ତ୍ରୀଙ୍କୁ 'ଆକ୍ୱାରିୟମ୍' ବୁଲି ଆସିବା ପାଇଁ ଅନୁରୋଧ ଜଣାଇଲେ । ସେତେବେଳେ ମତ୍ସ୍ୟ ବିଭାଗ ଅଧୀନରେ, ନନ୍ଦନକାନନରେ ଗୋଟିଏ ଆକ୍ୱାରିୟମ୍ ଦର୍ଶକଙ୍କ ପାଇଁ ଖୋଲାଯାଇଥିଲା । ଏଥିରେ ବିଭିନ୍ନ କିସମର ମାଛଙ୍କୁ ସଂରକ୍ଷିତ କରି ରଖାଯାଇଥିଲା ଦର୍ଶକମାନଙ୍କ ମନୋରଞ୍ଜନ ଉଦ୍ଦେଶ୍ୟରେ । ବିଶ୍ରାମାଗାରର ଠିକ୍ ଅପର ପାର୍ଶ୍ୱରେ ଏହାର ଅବସ୍ଥିତି । ବଡ଼ କୁଣ୍ଠିତ ହୃଦୟରେ ମନ୍ତ୍ରୀ ସେଠାକୁ ଯିବାକୁ ସମ୍ମତ ହେଲେ । ମନ୍ତ୍ରୀଙ୍କ କାର୍ ପଛେ ପଛେ ଆମେମାନେ ମଧ୍ୟ ଜିପ୍‌ରେ ବାହାରିଲୁ । କିନ୍ତୁ ସେଠି ପହଞ୍ଚି ଦେଖିଲା ବେଳକୁ ଆକ୍ୱାରିୟମ୍‌ର ଫାଟକ ବନ୍ଦ । ମନ୍ତ୍ରୀ ରାଗରେ ନିଆଁବାଣ ହୋଇଗଲେ । ଏକେତ ତାଙ୍କ ଅନିଚ୍ଛା ସତ୍ତ୍ୱେ ତାଙ୍କୁ ସେଠାକୁ ନିଆଯାଇଥିଲା । ଦ୍ୱିତୀୟରେ ପହଞ୍ଚିଲା ବେଳକୁ ଗେଟ୍ ବନ୍ଦ । କାହିଁକି ଆଗରୁ ଖବର ନ ଦେଇ ତାଙ୍କୁ ସେଠିକି ନେଇଗଲେ ବୋଲି ନନ୍ଦନକାନନର ନିର୍ଦ୍ଦେଶକଙ୍କ ଉପରେ ମନ୍ତ୍ରୀଙ୍କ ଗାଳି ବର୍ଷଣ ଚାଲିଲା ।

ନନ୍ଦନକାନନର ନିର୍ଦ୍ଦେଶକ ସୁଧାକର ମହାପାତ୍ର ବନବିଭାଗର ଜଣେ ବରିଷ୍ଠ ଆଇ.ଏଫ୍.ଏସ୍. ଅଫିସର । ମନ୍ତ୍ରୀଙ୍କର ରାଗ ଦେଖି ସେ ସଂପୂର୍ଣ୍ଣ ନର୍ଭସ ହୋଇଯାଇଥିଲେ ।

ତଥାପି ସେ ବାରଂବାର ବୁଝାଇବାକୁ ଚେଷ୍ଟା କରୁଥାନ୍ତି, ଆକ୍ୱାରିୟମଟି ନନ୍ଦନକାନରେ ଥିଲେ ମଧ୍ୟ ତାହା ଥିଲା ମତ୍ସ୍ୟ ବିଭାଗ ନିର୍ଦ୍ଦେଶକଙ୍କ ଅଧୀନରେ । ଏହାର ପ୍ରଶାସନ ଓ ପରିଚାଳନା ଉପରେ ତାଙ୍କର କୌଣସି କର୍ତ୍ତୃତ୍ୱ ନାହିଁ । ମାନ୍ୟବର ମନ୍ତ୍ରୀଙ୍କର ଗସ୍ତ କାର୍ଯ୍ୟକ୍ରମ ସେ ମତ୍ସ୍ୟବିଭାଗ ନିର୍ଦ୍ଦେଶକଙ୍କୁ ଜଣାଇଥିଲେ ଏବଂ ତାଙ୍କୁ ମଧ୍ୟ ସେଦିନ ଆସିବା ପାଇଁ ଅନୁରୋଧ କରିଥିଲେ । ସବୁଠାରୁ ଉଲ୍ଲେଖନୀୟ କଥା ହେଲା, ଆକ୍ୱାରିୟମ୍ ଅଧିକାଂଶ ଦିନ ପ୍ରାୟ  ବନ୍ଦ ହୋଇ ରହୁଛି । ପରିଦର୍ଶକମାନେ ହତାଶ ହୋଇ ଫେରୁଛନ୍ତି । ନନ୍ଦନକାନନ କର୍ତ୍ତୃପକ୍ଷ ବାରମ୍ବାର ଏକଥା ଲେଖି ଜଣାଇଲେ ମଧ୍ୟ ମତ୍ସ୍ୟ ବିଭାଗରେ କେହି ଏହା ଶୁଣୁନାହାନ୍ତି କିମ୍ବା କିଛି ପ୍ରତିକାର କରୁନାହାନ୍ତି ।

ମତ୍ସ୍ୟବିଭାଗ ନିର୍ଦ୍ଦେଶକ ଭାବରେ ଜଣେ ଯୁବ ଆଇ.ଏ.ଏସ୍. ଅଫିସର ଅବସ୍ଥାପିତ ହୋଇଥିଲେ । ତେଣୁ ବନ ବିଭାଗର ଡେପୁଟି ସେକ୍ରେଟାରୀ, ବିରାଦରୀ ଭିତ୍ତିରେ କଥାଟାକୁ ଆଉ ଆଗକୁ ବଢ଼ିବାକୁ ନ ଦେଇ ସବୁତକ ଦୋଷ ନନ୍ଦନକାନନ କର୍ତ୍ତୃପକ୍ଷଙ୍କ ଉପରେ ଲଦିଦେଲେ । ତାଙ୍କ ମତରେ ଆକ୍ୱାରିୟମ୍ ଖୋଲା ଅଛି କି ନାହିଁ ସେ ବିଷୟରେ ସଠିକ୍ ତଥ୍ୟ ସଂଗ୍ରହ ନ କରି, ନନ୍ଦନକାନନର ନିର୍ଦ୍ଦେଶକ ମନ୍ତ୍ରୀ ମହୋଦୟଙ୍କୁ ସେଠାକୁ ପରିଦର୍ଶନରେ ଯିବା ପାଇଁ  ଡାକିବାର ନଥିଲା । ସେ ଯାହାହେଉ, ସେଠାରେ ଉପସ୍ଥିତ ଥିବା ଆମେ ଦୁଇଜଣ  ଆଇ.ଏଫ୍.ଏସ୍. ପ୍ରୋବେସନରଙ୍କୁ ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ସରକାରଙ୍କୁ ପନ୍ଦରଦିନ ମଧ୍ୟରେ ରିପୋର୍ଟ ପ୍ରଦାନ କରିବାର ଦାୟିତ୍ୱ ଦିଆଗଲା । ମନ୍ତ୍ରୀ ମହୋଦୟ ମଧ୍ୟ ଡେପୁଟି ସେକ୍ରେଟାରୀଙ୍କ କଥାରେ ସହମତି ପ୍ରକାଶ କଲେ ।

ସରକାରୀ ଚାକିରିର ପ୍ରଥମ ପାହାଚରେ, ସରକାରୀ ନିର୍ଦ୍ଦେଶ ମୁତାବକ, ଏହା ଆମପାଇଁ ଥିଲା ପ୍ରଥମ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ତହିଁ ପରଦିନ ଯଥାରୀତି ସରକାରୀ ଆଦେଶ ମଧ୍ୟ ଆସି ପହଞ୍ଚିଗଲା । ଅନୁସନ୍ଧାନରୁ ଏବଂ ନନ୍ଦନକାନନ ନିର୍ଦ୍ଦେଶକଙ୍କ ସହିତ କଥାବାର୍ତ୍ତାରୁ ଯେଉଁ ଲୁକ୍‌କାୟିତ ତଥ୍ୟଟି ଉଦ୍‌ଘାଟିତ ହେଲା, ତାହା ଏହିପରି ବର୍ଣ୍ଣନା କରାଯାଇପାରେ । ନନ୍ଦନକାନନ ପ୍ରାଣୀ ଉଦ୍ୟାନର ମଧ୍ୟଭାଗରେ ରହିଥିବା 'ଆକ୍ୱାରିୟମ୍'ଟି ଚିଡ଼ିଆଖାନା କର୍ତ୍ତୃପକ୍ଷଙ୍କ ଅଧୀନରେ ରହିବା ପରିବର୍ତ୍ତେ ମତ୍ସ୍ୟ ବିଭାଗ ନିର୍ଦ୍ଦେଶକଙ୍କ ଅଧୀନରେ ଥିଲା । ସେଠିକାର ଷ୍ଟାଫ୍ ନନ୍ଦନକାନନ ନିର୍ଦ୍ଦେଶକଙ୍କ କୌଣସି ଆଦେଶ ମାନୁ ନ ଥିଲେ । ଆକ୍ୱାରିୟମ୍ କେବେ ଖୋଲିବ, କେତେବେଳେ ଖୋଲିବ ଅବା

କେତେବେଳେ ବନ୍ଦହେବ; ସେ ବିଷୟ ସେମାନେ ସ୍ଥିର କରୁଥିଲେ । ଅନେକ ସମୟରେ ପର୍ଯ୍ୟଟକମାନେ ସେଠାକୁ ଯାଇ ଗେଟ୍‌ରେ ତାଲା ପଡ଼ିଥିବାର ଦେଖି ଫେରୁଥିଲେ । କେତେକ ପର୍ଯ୍ୟଟକ ଏଥିପାଇଁ ପ୍ରତିକ୍ରିୟାଶୀଳ ଆଚରଣ ମଧ୍ୟ ଦେଖାଇବାକୁ ପଛଉ ନ ଥିଲେ । ଘଟଣା ଦିନ ନନ୍ଦନକାନନ ନିର୍ଦ୍ଦେଶକଙ୍କ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା, ମନ୍ତ୍ରୀ ମହୋଦୟଙ୍କୁ ଆକ୍ୱାରିୟମ୍ ଦେଖାଇବା ଅବସରରେ ଏହି ତଥ୍ୟ ଉଦ୍‌ଘାଟନ କରିଥାନ୍ତେ ଏବଂ ଏହି ୟୁନିଟ୍‌ର ପରିଚାଳନା ଦାୟିତ୍ୱ ନନ୍ଦନକାନନ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତର କରିବାକୁ ଅନୁରୋଧ କରିଥାନ୍ତେ ।

କିନ୍ତୁ ଦୁର୍ଭାଗ୍ୟକୁ ତୂଣୀରରୁ ନିକ୍ଷେପିତ ଶର ବୁମେରାଂ ହେଲାପରି ଆକ୍ୱାରିୟମ ବନ୍ଦଥିବାରୁ ମନ୍ତ୍ରୀ ମହୋଦୟଙ୍କ ସମଗ୍ର ରାଗ ନନ୍ଦନକାନନ ନିର୍ଦ୍ଦେଶକଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲା । ଏହିସବୁ ବିଷୟରେ ବିଶେଷ ଅନୁଶୀଳନ କରି ମୁଁ ଓ ମୋର ସହକର୍ମୀ ଅରୁଣ ବନ୍‌ସଲ୍ ଏକ ତଥ୍ୟଭିତ୍ତିକ ରିପୋର୍ଟ ରାଜ୍ୟ ସରକାରଙ୍କ ନିକଟରେ ଉପସ୍ଥାପନ କଲୁ । ରିପୋର୍ଟରେ ଆକ୍ୱାରିୟମ୍‌ର ପରିଚାଳନା ଦାୟିତ୍ୱ ନନ୍ଦନକାନନ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତର କରିବାକୁ ସୁପାରିସ କରିଥିଲୁ । କିଛିଦିନ ଭିତରେ ଏହି ସୁପାରିସ କାର୍ଯ୍ୟକାରୀ ହୋଇଥିଲା ଏବଂ ଆକ୍ୱାରିୟମର ପରିଚାଳନା ଦାୟିତ୍ୱ ମତ୍ସ୍ୟବିଭାଗଠାରୁ କାଢ଼ି ଆଣି ବନ ବିଭାଗକୁ ଅର୍ପଣ କରାଯାଇଥିଲା । ଏହା ବ୍ୟତୀତ ନନ୍ଦନକାନନ ସନ୍ନିକଟ କାଞ୍ଜିଆ ହ୍ରଦର ଅପର ପାର୍ଶ୍ୱରେ ଥିବା 'ବଟାନିକାଲ୍ ଗାର୍ଡନ'କୁ ମଧ୍ୟ ରାଜ୍ୟ ଉଦ୍ୟାନ ବିଭାଗ ହାତରୁ ଆଣି ନନ୍ଦନକାନନ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତର କରିବାକୁ ସୁପାରିସ କରିଥିଲୁ । ଏ ପ୍ରସ୍ତାବଟି ଅଦ୍ୟାବଧି କାର୍ଯ୍ୟକାରୀ ହୋଇପାରିନାହିଁ । ଏହା ହୋଇଥିଲେ ପ୍ରାଣୀ ଉଦ୍ୟାନ, କାଞ୍ଜିଆ ହ୍ରଦ ଏବଂ ଉଦ୍ଭିଦ ଉଦ୍ୟାନ ଆଦି ସମ୍ମିଶ୍ରଣରେ ଏକ ବିଶାଳ ନନ୍ଦନକାନନ ଟୁରିଷ୍ଟ କଂପ୍ଲେକ୍ସ ସୃଷ୍ଟି ହୋଇପାରିଥାନ୍ତା, ଯାହାକି ଅଧିକରୁ ଅଧିକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାକୁ କ୍ଷମ ହୋଇଥାନ୍ତା । (ଏବେ ରାଜ୍ୟ ବଟାନିକାଲ୍ ଗାର୍ଡନ ମଧ ନନ୍ଦନ କାନନ କର୍ତ୍ତୃପକ୍ଷଙ୍କ ଅଧୀନକୁ ହସ୍ତାନ୍ତରିତ ହୋଇସାରଛି ।)

ସେତେବେଳେ ଭୁବନେଶ୍ୱର ଶହୀଦ ନଗରରେ ଗୋଟିଏ ଭଡାଘରେ ନନ୍ଦନକାନନ ଅଫିସ୍ ଚାଲୁଥାଏ । ସେଠି ଦୁଇମାସର ଆଟାଚ୍‌ମେଣ୍ଟ ଟ୍ରେନିଂ ସରିଲା ପରେ ମୋତେ ଫୁଲବାଣୀ ଫରେଷ୍ଟ ଡିଭିଜନ୍‌ରେ ସଂଲଗ୍ନ କରିଦିଆଗଲା । ସେତେବେଳେ ଫୁଲବାଣୀ ଡିଭିଜନ୍‌ର ଡି.ଏଫ.ଓ. ଥିଲେ ଶ୍ରୀଯୁକ୍ତ ନୃସିଂହ ଚରଣ ପଟ୍ଟନାୟକ । ଆମ ଖୋର୍ଦ୍ଧା ଅଂଚଳର ଅଧିବାସୀ । ଖୋର୍ଦ୍ଧା ବରୁଣେଇ ସାହିର ବାସିନ୍ଦା । ସେ ସମୟରେ ଅବିଭକ୍ତ ପୁରୀ ଜିଲ୍ଲାର,

ବିଶେଷକରି ଖୋର୍ଦ୍ଧା ଅଂଚଳର ଅନେକ ଅଫିସର୍ ବନବିଭାଗରେ କାର୍ଯ୍ୟରତ ଥିଲେ । ତନ୍ମଧ୍ୟରୁ ଜଣେ ଶ୍ରୀଯୁକ୍ତ ମହମ୍ମଦ ଫୈଜୁଦ୍ଦିନ ଅହମ୍ମଦ ସମଗ୍ର ଦେଶରେ ଭାରତୀୟ ବନ ବିଭାଗର ସର୍ବୋଚ୍ଚ କର୍ତ୍ତା, ଇନ୍ସପେକ୍ଟର ଜେନେରାଲ ଅଫ୍ ଫରେଷ୍ଟ ପଦବୀ ଅଳଂକୃତ କରିଥିଲେ । ଭାରତୀୟ ବନସେବା କ୍ୟାଡର୍‌ରେ ଏହା ହେଉଛି ଏକମାତ୍ର ସର୍ବୋଚ୍ଚ ପଦବୀ । ଖୋର୍ଦ୍ଧାର ଅନ୍ୟ ଜଣେ ସୁପୁତ୍ର ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ପଟ୍ଟନାୟକ ମଧ୍ୟ ରାଜ୍ୟର ପ୍ରଧାନ ମୁଖ୍ୟ ବନସଂରକ୍ଷକ ପଦବୀରୁ ଅବସର ଗ୍ରହଣ କରିଛନ୍ତି । ମୋର ତତ୍‌କାଳୀନ ଫୁଲବାଣୀ ଡିଭିଜନ୍‌ର ଡି.ଏଫ.ଓ. ଶ୍ରୀଯୁକ୍ତ ନୃସିଂହ ଚରଣ ପଟ୍ଟନାୟକ ମଧ୍ୟ ରାଜ୍ୟର ପ୍ରଧାନ ମୁଖ୍ୟ ବନ ସଂରକ୍ଷକ, ସର୍ବୋଚ୍ଚ ପଦବୀରୁ ଅବସର ନେଇଥିଲେ । ଏମାନଙ୍କ ବ୍ୟତୀତ ଖୋର୍ଦ୍ଧା ଓ ଆଖପାଖ ଅଂଚଳର ଏକାଧିକ ଅଫିସ୍‌ର ଶ୍ରୀଯୁକ୍ତ ସୁଧାକର ମହାପାତ୍ର, ନୃସିଂହ ଚରଣ ପ୍ରଧାନ ଓ ଶ୍ରୀ ଲକ୍ଷ୍ମୀକାନ୍ତ ଜଗଦ୍ଦେବ ମଧ୍ୟ ବିଭିନ୍ନ ସମୟରେ ବନ ବିଭାଗର ମୁଖ୍ୟ ବନ ସଂରକ୍ଷକ ପଦବୀ ଅଳଙ୍କୃତ କରିଛନ୍ତି ।

ଟ୍ରେନି ଏ.ସି.ଏଫ୍ ଭାବରେ ମୁଁ ସେପ୍ଟେମ୍ବର ୧୯୭୭ ମସିହାରେ ରାଜ୍ୟର ତତ୍‌କାଳୀନ ତେର ନମ୍ବର ଜିଲ୍ଲା, କିନ୍ତୁ ପ୍ରାକୃତିକ ଶୋଭା ସଂପଦରେ ଅନନ୍ୟ, ଜୈବ ବିବିଧତାରେ ପରିପୂର୍ଣ୍ଣ ଫୁଲବାଣୀ ଜିଲ୍ଲାର ସଦର ମହକୁମାରେ ଅବସ୍ଥିତ, ଫୁଲବାଣୀ ଟେରିଟୋରିଆଲ୍ ବନଖଣ୍ଡରେ ଜଏନ୍ କଲି । ସେ ସମୟରେ ବସ୍‌ରେ ଫୁଲବାଣୀ ଯିବାକୁ ପ୍ରାୟ ଆଠ ଘଣ୍ଟା ସମୟ ଲାଗୁଥିଲା । ଖୋର୍ଦ୍ଧାରୁ ସକାଳ ଦଶଟାରେ ଛାଡୁଥିବା ଓଡ଼ିଶା ରୋଡ ଟ୍ରାନ୍‌ସପୋର୍ଟ (ଓ.ଆର.ଟି) ବସ୍‌ରେ ବସି ଫୁଲବାଣୀ ବସ୍ ଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ । ସମୟ ସଂଧ୍ୟା ସାଢ଼େ ଛଅଟା ବା ସାତଟା ହେବ । ୧୯୭୭ ମସିହାରେ ଫୁଲବାଣୀ ଏକ ଛୋଟକାଟିଆ ଟାଉନ୍ କହିଲେ ଚଳେ । କାଁ, ଭାଁ କେତୋଟି ଦୋକାନ । ବସ୍‌ଷ୍ଟାଣ୍ଡ ଟାଉନ୍‌ର ଉପକଣ୍ଠରେ ଅବସ୍ଥିତ । ମୋର ରହିବାର ବନ୍ଦୋବସ୍ତ ହୋଇଥାଏ ଜିଲ୍ଲା ସର୍କିଟ୍ ହାଉସ୍‌ରେ । ବସ୍‌ଷ୍ଟାଣ୍ଡର ଠିକ୍ ବିପରୀତ ଦିଗରେ ଟାଉନ୍‌ର ଅପର ପ୍ରାନ୍ତରେ ଥିଲା ସର୍କିଟ୍‌ହାଉସ୍ । ବସ୍ ଷ୍ଟାଣ୍ଡକୁ ଡି.ଏଫ.ଓ ଜଣେ ଫରେଷ୍ଟରଙ୍କୁ ଗୋଟିଏ ଜିପ୍ ଦେଇ ପଠେଇଥିଲେ । ସମୟ ରାତ୍ରୀ ସାତଟା ହୋଇଥିଲେ ବି ଟାଉନ୍ ସେତେବେଳକୁ ଶୁନ୍‌ଶାନ୍ ହୋଇଗଲାଣି । ଚାରିଆଡ଼େ ଝାପ୍‌ସା ଝାପ୍‌ସା ଅନ୍ଧାର । ଛୋଟ ଛୋଟ ଦୋକାନ କେତୋଟିରେ ଗୋଟିଏ ଗୋଟିଏ ବିଜୁଳି ବଲ୍‌ବ ନିସ୍ତେଜ୍ ପ୍ରାୟ ଜଳୁଥାଏ ।

ଜିପ୍‌ରେ ବସି ଆମେ ସର୍କିଟ୍ ହାଉସ୍‌ରେ ପହଞ୍ଚିଲୁ । ଶାଳଗଛର ସିଲହୋଟ୍ ଭିତରେ ଠିଆ ହୋଇଥିଲା ଦୁଇମହଲା ବିଶିଷ୍ଟ ସର୍କିଟ୍ ହାଉସ୍ । ବୋଧହୁଏ ନୂଆ ନୂଆ ତିଆରି

ହୋଇଥାଏ । ଆମେ ପହଞ୍ଚିଲା ବେଳକୁ ଆକାଶରେ ଦ୍ୱିତୀୟା ତିଥିର ଜହ୍ନ ଉଠିସାରିଥାଏ । ଆକାଶରେ ଜହ୍ନ ଓ ମେଘର ଖେଳ ଏବଂ ତଳେ ଝାପ୍‌ସା ଚନ୍ଦ୍ରାଲୋକିତ ଛାଇ ଆଲୁଅ ଭିତରେ ଶାଳ ମହୀରୁହମାନଙ୍କ ଦ୍ୱାରା କୋଳାଗ୍ରତ ହୋଇ ଡାକବଙ୍ଗଳାଟି ବେଶ୍ ମନୋରମ ମନେ ହେଉଥାଏ । ଯଦିଓ ଚତୁଃପାର୍ଶ୍ୱରେ ନିର୍ଜନତା ସେତେବେଳକୁ ବେଶ୍ ଛାଇଯାଇଥାଏ । ବିଜନତା ତୁମ ରୂପ ମୋହନ !

କିଛି ସମୟ ପରେ ଫରେଷ୍ଟଗାର୍ଡଟିଏ ଡି.ଏଫ.ଓ. ଙ୍କ ଘରୁ ରାତ୍ରିଭୋଜନ ଆଣି ଦେଇଗଲା । ଧୂଆଧୋଇ ହୋଇ, ସାମାନ୍ୟ କିଛି ଖାଇ ନେଇ ବିଛଣାକୁ ଗଲି । ଦିନସାରା ବସ୍‌ରେ ବସି କ୍ଳାନ୍ତ ହୋଇଥିବାରୁ ତତ୍‌କ୍ଷଣାତ୍ ନିଦ୍ରାଭିଭୂତ ହୋଇ ଶୋଇପଡ଼ିଲି ।

ତହିଁ ପରଦିନ ନିଦରୁ ଉଠିଲାବେଳକୁ ବେଳ ଘଡ଼ିଏ ହୋଇ ସାରିଥାଏ । ପ୍ରାଚୀ ଦିଗ୍‌ବଳୟରୁ ବେଶ୍ କିଛି ଉପରକୁ ଉଠି ଆସିଥିବା ସୂର୍ଯ୍ୟଙ୍କର କିରଣ ଶାଳଗଛର ପତ୍ର ଫାଙ୍କ ଦେଇ ସର୍କିଟ୍ ହାଉସ୍‌ର ଉପର ମହଲାରେ ଲୁଚକାଳି ଖେଳୁଥାଏ । ବାଥ୍‌ରୁମ୍‌ରୁ ନିତ୍ୟକର୍ମ ସାରି ବାହାରିଲା ବେଳକୁ ଡି.ଏଫ୍.ଓ ଙ୍କ ଘରୁ ଜଳଖିଆ ପହଞ୍ଚିଯାଇଥାଏ । ପ୍ରାତଃ ଭୋଜନ ସାରି ଡି.ଏଫ୍.ଓ. ଙ୍କୁ ଦେଖାକରିବାକୁ ବାହାରି ପଡ଼ିଲି । ଫୁଲବାଣୀ ସହରର ମଧ୍ୟଭାଗରୁ ଅଣଓସାରିଆ ରାସ୍ତାଟିଏ ବାଁ ପଟକୁ ଲମ୍ବିଯାଇ ଗୋଟିଏ ବିସ୍ତୃତ କୁଦ ଉପରେ ଶେଷ ହୋଇଛି । ସେହି କୁଦର ମଧ୍ୟଭାଗରେ ଡି.ଏଫ୍.ଓ.ଙ୍କର ସରକାରୀ ବାସଭବନ ଓ ଠିକ୍ ପାଖକୁ ଲାଗି ଅଫିସ୍ । ବାସଭବନ ପଟୁ ଅଫିସ୍ ଭିତରକୁ ପ୍ରବେଶ ଦ୍ୱାରଟିଏ ମଧ୍ୟ ରହିଛି । ମୁଁ ଯେ ଡି.ଏଫ୍.ଓ. ଙ୍କ ଗାଁ (ଖୋର୍ଦ୍ଧା) ପାଖ ମୁକୁନ୍ଦପ୍ରସାଦ ଗ୍ରାମର ବାସିନ୍ଦା, ଏ ଖବର ସେ ପାଇସାରିଥିଲେ । ତାଙ୍କ ତରଫରୁ ନିଜ ସାନଭାଇ ପରି ସେ ମୋତେ ପ୍ରଥମରୁ ବ୍ୟବହାର କରିବାକୁ ଲାଗିଲେ । ଚା' ପାନ ଉପରାନ୍ତେ ତାଙ୍କ ପତ୍ନୀ ମଧ୍ୟ ଆସି ଆମ ସହିତ ଗପସପରେ ଯୋଗଦେଲେ । ସ୍ନେହମୟୀ ସେ । ଦେଖୁ ଦେଖୁ ତାଙ୍କ ସ୍ୱଭାବସୁଲଭ ଉଦାର ଓ ସ୍ନେହୀ ବ୍ୟବହାରରେ ମୋତେ ଆପଣାର କରିନେଲେ । ମୁଁ ମଧ୍ୟ ତାଙ୍କୁ ଅପା ଡାକିବା ପାଇଁ ଅନୁମତି ପାଇଗଲି । ସେଦିନ ମୋ ପାଇଁ ମଧ୍ୟାହ୍ନଭୋଜନର ଆୟୋଜନ ତାଙ୍କ ବାସଭବନରେ ହିଁ ହୋଇଗଲା ।

ଫୁଲବାଣୀରେ ମୋର ଦୈନନ୍ଦିନ ରୁଟିନ୍ ଥିଲା, ସକାଳର ନିତ୍ୟକର୍ମ ସାରି ସର୍କିଟ୍ ହାଉସ୍‌ରୁ ବାହାରି ଦିନ ନଅଟା ସୁଦ୍ଧା ଡି.ଏଫ୍.ଓ.ଙ୍କ ରେସିଡେନ୍‌ସରେ ପହଞ୍ଚିବା । ପ୍ରାତଃଭୋଜନ ପରେ ତାଙ୍କ ସହିତ ଅଫିସ୍ ଯାଇ ବିଭିନ୍ନ ସେକ୍‌ସନର କାର୍ଯ୍ୟ ଅନୁଧ୍ୟାନ

କରିବା ଏବଂ ଜଙ୍ଗଲ ଓ ବନ୍ୟଜନ୍ତୁ ସଂପର୍କିତ ପ୍ରଚଳିତ ବିଭିନ୍ନ ଆଇନ୍ କାନୁନ୍ ସଂପର୍କରେ ଅବଗତ ହେବା । ଦିନରେ ସେଠି ମଧ୍ୟାହ୍ନଭୋଜନ ଏବଂ ଅପରାହ୍ଣରେ ଚା' ପାନ ସାରି ସନ୍ଧ୍ୟାବେଳକୁ ସର୍କିଟ୍ ହାଉସ୍ ପ୍ରତ୍ୟାବର୍ତ୍ତନ । କେବଳ ସର୍କିଟ୍ ହାଉସ୍‌ରେ ମୁଁ ରାତ୍ରିଭୋଜନ କରୁଥାଏ । ସକାଳର ବ୍ରେକ୍‌ଫାଷ୍ଟ, ମଧ୍ୟାହ୍ନଭୋଜନ, ଅପରାହ୍ଣର ଚା' ପାନ ସବୁ ଡି.ଏଫ୍.ଓ. ଙ୍କ ଘରେ । ଟୁର୍‌ରେ ସେ ବାହାରକୁ ଯାଇଥିଲେ ମଧ୍ୟ ମୋର ଏହି କାର୍ଯ୍ୟଶୈଳୀରେ କୌଣସି ପରିବର୍ତ୍ତନ ନ ଥାଏ । ଅବଶ୍ୟ ଅନେକ ସମୟରେ ଫିଲ୍ଡ ଟୁର୍‌ରେ ଗଲେ ଡି.ଏଫ୍.ଓ. ମୋତେ ସାଙ୍ଗରେ ନେଇଥାନ୍ତି ।

ଏହିପରି ଗୋଟିଏ ସପ୍ତାହ କଟିଗଲା । ଦିନେ ହଠାତ୍ ଡି.ଏଫ୍.ଓ. କହିଲେ, କେତେ ଆଉ ସର୍କିଟ୍ ହାଉସ୍‌ରୁ ଯିବା ଆସିବା କରିବ । ଏଇଠି ତୁମପାଇଁ ଗୋଟିଏ ଛୋଟ ଘର ତିଆରି କରିଦେବା । କୁଦ ଉପରେ ଥିବା ଡି.ଏଫ୍.ଓ. ଙ୍କ କ୍ୱାର୍ଟର୍ସ ସାମ୍ନାରେ ବିସ୍ତୃତ ଖୋଲା ପଡ଼ିଆ ପଡ଼ିଥାଏ । ତାଙ୍କ ବରାଦ ମୁତାବକ ସଂଲଗ୍ନ ବାଥରୁମ୍ ଓ ସାମନାରେ ବାରଣ୍ଡା ଥାଇ, ଗୋଟିଏ ଆଜବେଷ୍ଟସ ଘର ପନ୍ଦର ଦିନ ଭିତରେ ଛିଡ଼ା ହୋଇଗଲା । ଜୀବନରେ ପ୍ରଥମଥର ପାଇଁ ଲକ୍ଷ୍ୟ କଲି ଟେରିଟୋରିଆଲ୍ ଡି.ଏଫ.ଓ. ମାନେ କିପରି ପ୍ରଭାବଶାଳୀ । ତାଙ୍କ ମୁହଁରୁ କଥା ବାହାରିଛି କି ନାହିଁ ରେଞ୍ଜର, ଫରେଷ୍ଟର, ଗାର୍ଡ ସମସ୍ତେ ଲାଗି ପଡ଼ିଲେ, କିପରି ଗୃହ ନିର୍ମାଣ ସାମଗ୍ରୀ ସଂଗ୍ରହ କରି ଏ.ସି.ଏଫ୍. ଅର୍ଥାତ୍ ମୋ ପାଇଁ ଛୋଟ କ୍ୱାର୍ଟର୍ସଟିଏ ଗଢ଼ି ତୋଳିବେ । ଦୁଇ ସପ୍ତାହ ମଧ୍ୟରେ ଘର ତୋଳି ଦେଖେଇ ଦେଲେ ମଧ୍ୟ । ଫଳତଃ ବେଡିଙ୍ଗ୍ ଓ ସାମାନ୍ ଉଠାଇ ମୋତେ ସର୍କିଟ୍ ହାଉସ୍‌ରୁ ଉକ୍ତ କ୍ୱାର୍ଟରକୁ ଗୋଟିଏ ଭଲଦିନ ଦେଖି ସିଫ୍‌ଟ୍ କରିବାକୁ ପଡ଼ିଲା । ଏଣିକି ରାତ୍ରିଭୋଜନ ଡି.ଏଫ୍.ଓ.ଙ୍କ ଘରେ ହେଲା । ମୋଟାମୋଟି ଭାବରେ କହିଲେ ଫୁଲବାଣୀରେ ରହଣି ସମୟରେ ମୁଁ ତାଙ୍କ ପରିବାରର ଜଣେ ଅନ୍ୟତମ ସଦସ୍ୟ ପାଲଟି ଯାଇଥିଲି ।

ଫୁଲବାଣୀରେ ମୋର ରହଣି ଥିଲା ପାଖାପାଖି ଛଅମାସ । ଡିଭିଜନ୍‌ର କାର୍ଯ୍ୟପଦ୍ଧତି ସଂପର୍କରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବା ବ୍ୟତୀତ ଅନ୍ୟ ଯେଉଁସବୁ ଟ୍ରେନିଂ ନେବାପାଇଁ ମୋତେ ସରକାରୀ ନିର୍ଦ୍ଦେଶ ମିଳିଥିଲା, ତାହା ଜିଲ୍ଲା ମୁଖ୍ୟଙ୍କ କାର୍ଯ୍ୟାଳୟରେ ସାତଦିନ ଏବଂ ଏସ.ଡି.ଜେ.ଏମ୍.ଙ୍କ କୋର୍ଟରେ ସାତଦିନର ଆଟାଚମେଣ୍ଟ ଟ୍ରେନିଂ କାର୍ଯ୍ୟକ୍ରମ । ଜିଲ୍ଲାପାଳ ଓ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟ ଅଫିସରେ ପ୍ରଶିକ୍ଷଣ ଏକ ଔପଚାରିକତା ଥିଲା କହିଲେ ଚଳେ । ପ୍ରତ୍ୟେକଦିନ ଭିନ୍ନ ଭିନ୍ନ ସେକ୍‌ସନ୍‌ରେ ମୁଁ ବସୁଥିଲି ଏବଂ ସେକ୍‌ସନ୍

ଅଧିକାରୀଙ୍କ କାର୍ଯ୍ୟପ୍ରଣାଳୀକୁ ଅନୁଶୀଳନ କରୁଥିଲି । ଜମି ଜମା ସଂକ୍ରାନ୍ତୀୟ ପ୍ରଚଳିତ ଆଇନ୍ କାନୁନ ଏବଂ ଇଣ୍ଡିଆନ୍ ପେନାଲ୍ କୋଡ୍‌ର ବିଭିନ୍ନ ଧାରା, ଉପଧାରା ସଂବନ୍ଧରେ ଜାଣିବାର ସୁଯୋଗ ଏହି ଅବକାଶରେ ମିଳିଥିଲା । ଆବଶ୍ୟକ ହେଲେ ସେହି ଆଇନ୍ ବହିଗୁଡ଼ିକ ଆଣି ଘରେ ଅଧ୍ୟୟନ କରୁଥିଲି । କିନ୍ତୁ ଏସ୍.ଡି.ଜେ.ଏମ୍. କୋର୍ଟରେ ସାତ ଦିନର ଟ୍ରେନିଂ ଅନୁଭୂତି ନିଆରା । କୋର୍ଟରେ ଶୁଣାଣି ସମୟରେ ମୁଁ ପ୍ରାୟତଃ ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍‌ଙ୍କ ଡାହାଣ ପଟେ ଗୋଟିଏ ଚୌକିରେ ବସିରହି ଦୁଇପଟର ଓକିଲମାନଙ୍କ ଜବାବ ସୁଆଲ ଏବଂ ସାକ୍ଷୀମାନଙ୍କ ବୟାନ  ଶୁଣୁଥାଏ । ଶୁଣାଣି ଶେଷରେ ନିଷ୍ପତ୍ତି ଅର୍ଡର ଦେଲାବେଳେ ମଧ୍ୟ ମାଜିଷ୍ଟ୍ରେଟ ମହୋଦୟ ମୋ ସହିତ ଆଇନ୍‌ର ବିଭିନ୍ନ ଧାରା ଉପରେ ତର୍ଜମା କରି ଆଲୋଚନା କରୁଥିଲେ । ନିଶ୍ଚିତ ଭାବରେ ଏହା ଏକ ବିଶେଷ ଅନୁଭୂତି ।

ଏ ସମସ୍ତ ଟ୍ରେନିଂ ଉପରାନ୍ତେ ମୋର ଏକମାସ ପାଇଁ ସେଟ୍‌ଲମେଣ୍ଟ ଟ୍ରେନିଂ ପଡ଼ିଲା । ପୋଷ୍ଟିଙ୍ଗ୍ ହୋଇଥାଏ ସୁଦୂର ସମ୍ବଲପୁର ବନ୍ଦୋବସ୍ତ ଡିଭିଜନ ଅଧୀନରେ । ଆଇ.ଏଫ.ଏସ୍. ପ୍ରୋବେସନରମାନଙ୍କ ପାଇଁ ଯେଉଁ ପ୍ରଶିକ୍ଷଣ ଖସଡା ପ୍ରସ୍ତୁତି କରାଯାଇଥିଲା, ସେଟଲ୍‌ମେଣ୍ଟ ଟ୍ରେନିଂ ମଧ୍ୟ ତା'ର ଏକ ଅଂଶବିଶେଷ । ଏଥି ନିମନ୍ତେ 'ଆସିଷ୍ଟାଣ୍ଟ ସେଟ୍‌ଲମେଣ୍ଟ ଅଫିସର୍' ଭାବରେ ମୋର ନିଯୁକ୍ତି ପତ୍ର ମଧ୍ୟ ଆସିଥାଏ । ୧୪ ଡିସେମ୍ବର ୧୯୭୭ ମସିହାର ଉତ୍ତୀର୍ଣ୍ଣ ଅପରାହ୍ନରେ ମୁଁ ଫୁଲବାଣୀରୁ ସମ୍ବଲପୁର ଅଭିମୁଖେ ବସ୍ ଧରିଲି । ଷ୍ଟେଟ୍ ରୋଡ୍ ଟ୍ରାନ୍‌ସପୋର୍ଟ କର୍ପୋରେସନ୍‌ର ନିହାତି ପୁରୁଣାକାଳିଆ ବସ୍ । ଝର୍କା କାଚ ଗୁଡ଼ିକ ଠିକ୍ ଭାବେ ବନ୍ଦ ହେଉ ନ ଥାଏ । ବସ୍ ଚାଲିଲା ବେଳେ ଶୀତ ରାତିର କାଲୁଆ ଥଣ୍ଡା ପବନ ବସ୍ ଭିତରକୁ ଧସେଇ ପଶି ଆସୁଥାଏ ।  ରାତି ପ୍ରାୟ ନଅଟା ବେଳକୁ ବସ୍ ବୌଦ ଚାରିଛକରେ ପହଞ୍ଚିଲା ।  ଗୋଟିଏ ଅପ୍ରଶସ୍ତ ଢାବା ଆଗରେ ବସ୍ ଅଟକି ଗଲା । ଯେଉଁମାନେ ଇଚ୍ଛାକଲେ, ରାତ୍ରିଭୋଜନ ସେହି ଢାବାରେ ହିଁ ସମାପ୍ତ କରିନେଲେ । ରାତି ଦଶଟା ବେଳକୁ ହର୍ଣ୍ଣ ବଜେଇ ଡ୍ରାଇଭର ବସ୍ ଛାଡ଼ିବାର ସଂକେତ ଦେଲା । ରାତ୍ରିକାଳୀନ ଯାତ୍ରା ପଥରେ ଆଗେଇ ଚାଲିଲା ବସ୍ । ଗନ୍ତବ୍ୟ ସ୍ଥଳ ସମ୍ବଲପୁର ।

ରାତି ଯେତିକି ଯେତିକି ଗଭୀର ହେଉଥାଏ, ଶୀତର ପ୍ରକୋପ ସେତିକି ବଢୁଥାଏ । ବିଶେଷକରି ଘଞ୍ଚ ଜଙ୍ଗଲିଆ ରାସ୍ତାଦେଇ ବସ୍‌ଟି ଗଲାବେଳେ ଶୀତର ପ୍ରକୋପ ଅସହ୍ୟ ହୋଇ ପଡୁଥାଏ । ଝର୍କାକାଚର ବାହାର ପଟେ ଟୋପା ଟୋପା କାକର ଜମି ଯାଇଥାଏ । ମୁଁ ସାଙ୍ଗରେ ନେଇଥିବା ଚାଦର ଓ କମ୍ବଳକୁ କାଢ଼ି ଗୋଡ଼ଠୁଁ ମୁଣ୍ଡ ପର୍ଯ୍ୟନ୍ତ ଢାଙ୍କି ହୋଇ,

ପାଦ ଦୁଇଟି ସିଟ୍ ଉପରକୁ ଉଠାଇ ଆଣି ଜାକିଜୁକି ହୋଇ ବସି ରହିଲି । ଝର୍କା ବାଟଦେଇ ବସ୍ ଭିତରକୁ ପଶି ଆସୁଥିବା ପ୍ରବଳ ଶୀତକୁ ମୋ ପାଖରେ ଥିବା ସୀମିତ ସମ୍ବଳ ଜରିଆରେ ପ୍ରତିହତ କରିବା ଥିଲା ମୋର ଉଦ୍ଦେଶ୍ୟ । ତଥାପି ଗୋଡ଼ ହାତ କାଲ ମାରି ଯାଉଥାଏ । ସାରା ଶରୀର ଯେପରି ଅସାଡ଼ ହୋଇ ଯାଉଥାଏ । ପାହାନ୍ତା ବେଳକୁ ସାମାନ୍ୟ ନିଦ ଆସିଯାଇଥିଲା । ଠିକ୍ ଭୋର୍ ଛଅଟା ବେଳକୁ ବସ୍ ସମ୍ବଲପୁର ବସ୍‌ଷ୍ଟାଣ୍ଡରେ ଅଟକିଲା । ସେଠୁ ରିକ୍‌ସା ଖଣ୍ଡେ କରି 'ବୃକ୍‌ସ ହିଲ୍' ପାହାଡ଼ ଉପରେ ଥିବା ବନ ବିଶ୍ରାମ ଭବନରେ ପହଞ୍ଚିଲା ବେଳକୁ ସମୟ ପ୍ରାୟ ସାତଟା । ସକାଳର କଅଁଳ ସୂର୍ଯ୍ୟକିରଣ ବିଛାଡ଼ି ହୋଇ ପଡ଼ିବା ସଂଗେ ସଂଗେ ଶୀତର ପ୍ରକୋପ ଧୀରେ ଧୀରେ ହାଲ୍‌କା ହୋଇ ଆସୁଥାଏ । ବଙ୍ଗଳା ଚୌକିଦାର ବୁଢ଼ାଟିଏ-ନାଁ ତା'ର 'ବିକ' । ଚା' ବନେଇବାର ସାଜ ସରଞ୍ଜାମ ସବୁ ତା' ପାଖରେ ଥିଲା । ତା' ହାତରୁ ଗରମ ଗରମ ଚା' କପେ ପିଇ ରାତିର ଶାନ୍ତ, କ୍ଲାନ୍ତ ଅବସନ୍ନ ଶରୀର କିଛିଟା ତାଜା ହୋଇଗଲା । ଏବେ ସେଦିନର ସେ ଗରମ ଚା' କପର ସ୍ୱାଦ ମୋ ସ୍ମୃତିରେ ଉଜ୍ଜୀବିତ ରହିଛି । ନିତ୍ୟକର୍ମ ସାରିବା ପାଇଁ ଗାଧୁଆ ଘରେ ପଶିଲି । 'ବିକ' ଗରମ ପାଣି ବାଲ୍‌ଟିଏ ଆଣି ଗାଧୁଆ ଘରେ ରଖିଦେଇଥିଲା ।

ସେଟଲ୍‌ମେଣ୍ଟ ବା ବନ୍ଦୋବସ୍ତ ଟ୍ରେନିଂର ଅବଧି ଥିଲା ଚାରି ସପ୍ତାହ ଏବଂ ଏହାକୁ ଚାରୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥିଲା । ଯଥା; 'ଖାନାପୁରି' 'କିସ୍ତିଓ୍ୱାରୀ', ଅଭିଯୋଗ ଶୁଣାଣି ଓ ପରିଶେଷରେ 'ଫୈସଲା' ବା ଜଜ୍‌ମେଣ୍ଟ । ପ୍ରତ୍ୟେକ ବିଭାଗରେ ଟ୍ରେନିଂ ଥାଏ ଏକ ସପ୍ତାହ । ସେ ସମୟରେ ସମ୍ବଲପୁର ଜୋନ୍‌ର ସେଟ୍‌ଲମେଣ୍ଟ ଅଫିସର୍ ଥିଲେ ଶ୍ରୀ ଲିଭନସ୍ କିଣ୍ଡୋ, ଆଇ.ଏ.ଏସ୍. ଏବଂ ଚାର୍ଜ ଅଫିସର ଶ୍ରୀ ରାମଚନ୍ଦ୍ର ବେହେରା, ଆଇ.ଏ.ଏସ୍. । ଉଭୟ ଅଫିସର ଏ ଭିତରେ ଚାକିରିରୁ ଅବସର ଗ୍ରହଣ କରି ସାରିଲେଣି । ଟ୍ରେନିଂ କ୍ୟାମ୍ପର ବନ୍ଦୋବସ୍ତ ମଧ୍ୟ ଚାରୋଟି ଜାଗାରେ କରାଯାଇଥିଲା, ସମ୍ବଲପୁର, ବଡ଼ରମା, ଜମନକିରା ଓ ଶେଷ କ୍ୟାମ୍ପ ଦେଓଗଡ଼ରେ ।

ସମ୍ବଲପୁରରେ ଅନୁଷ୍ଠିତ ହେଉଥିବା ପ୍ରଥମ ସାତଦିନିଆ କ୍ୟାମ୍ପ 'ଖାନାପୁରି' ସୁରୁଖୁରରେ ସମାପ୍ତ ହୋଇଗଲା । ମୁଁ ଫରେଷ୍ଟ ରେଷ୍ଟ ହାଉସ୍‌ରେ ରହୁଥାଏ ଏବଂ ପ୍ରତିଦିନ ୧୦ରୁ ୫ଟା ଚକବନ୍ଦୀ ଅଫିସ୍ ଯାଇ କାମ ଶିଖୁଥାଏ । ସକାଳର ପ୍ରାତଃଭୋଜନ ଏବଂ ରାତ୍ରିଭୋଜନ ବଙ୍ଗଳା ଚୌକିଦାର 'ବିକ', ଫରେଷ୍ଟ ଡାକବଙ୍ଗଳାରେ ହିଁ ପ୍ରସ୍ତୁତ କରୁଥିଲା । ଅବଶ୍ୟ ଆବଶ୍ୟକ ସାମାନ ପତ୍ର ବଜାରରୁ କିଣି ଆଣିବା ପାଇଁ ମୁଁ ତାକୁ ପ୍ରଥମରୁ କିଛି ଅର୍ଥ ଦେଇ ଦେଇଥିଲି । ଦିନର ମଧ୍ୟାହ୍ନ ଭୋଜନ ବାହାରେ କରିନିଏ ।

ଏହି କ୍ୟାମ୍ପରେ ବିଶେଷକରି ଭୂରାଜସ୍ୱ ବନ୍ଦୋବସ୍ତରେ ସାମିଲ୍ କରାଯାଉଥିବା ଜମିଗୁଡ଼ିକର କିତା ଓ୍ୱାରି ମାପ କରାଯାଇ ନକ୍ସାରେ ତାହା ଯଥା ସ୍ଥାନରେ ପୂରଣ କରାଯାଏ । ପରବର୍ତ୍ତୀ କ୍ୟାମ୍ପ ବଡ଼ରମା ଠାରେ ଥାଏ । ଜଂଗଲ ଭିତରେ ସେ ସମୟରେ ବଡ଼ରମା ମାତ୍ର ଗୋଟିଏ ଛୋଟିଆ ଗାଁ ହୋଇଥିବାରୁ ବନ୍ଦୋବସ୍ତ କର୍ମଚାରୀମାନେ ରାସ୍ତାକଡରେ ଥିବା ଖୋଲା ପଡ଼ିଆରେ ତମ୍ବୁ ପକାଇ କ୍ୟାମ୍ପ କରୁଥାନ୍ତି । ଅଦୂରରେ ଥିବା ଛୋଟ ବୁଦା ଆଢୁଆଳରେ ନିତ୍ୟକର୍ମ ସମାପନ କରି ପାଖ ନାଳରେ ଗାଧୁଆ ପାଧୁଆ କରନ୍ତି । ଆଇ.ଏଫ.ଏସ୍. ପ୍ରାବେସନର ଏହି ପ୍ରକାର ତମ୍ବୁରେ ସାତଦିନ କଟାଇବା ସୁବିଧାଜନକ ମନେ ନ ହେବାରୁ, ଚାର୍ଜ ଅଫିସର୍ ଶ୍ରୀ ବେହେରା ନିକଟରେ ଥିବା 'ବଡ଼ରମା' ଫରେଷ୍ଟ ବଙ୍ଗଳା ଆରକ୍ଷଣ ନିମନ୍ତେ ଡି.ଏଫ.ଓ.ଙ୍କୁ ଆବେଦନ କରିଥିଲେ ।

ସମ୍ବଲପୁରରୁ ଦେଓଗଡ଼ ଯାଇଥିବା ଜାତୀୟ ରାଜପଥ କଡ଼ରେ ସୁନ୍ଦର ପ୍ରାକୃତିକ ପରିବେଷ୍ଟନୀ ଭିତରେ 'ବଡ଼ରମା' ବନ ବିଶ୍ରାମାଗାର ଜୈବ ବିବିଧତାରେ ପରିପୂର୍ଣ୍ଣ । ପାଖ ଆଖରେ ଆଉ କୌଣସି ସରକାରୀ ଅଫିସ୍ ବା ବଙ୍ଗଳା ନାହିଁ । ତେଣୁ ଏହି ସ୍ଥାନରେ ରାତ୍ରୀ ଯାପନ ପାଇଁ 'ବଡ଼ରମା' ବନ ବିଭାଗ ଡାକବଙ୍ଗଳା ହିଁ ଏକମାତ୍ର ପାଥେୟ । ବାମରା ଡିଭିଜନ୍‌ର ଡି.ଏଫ.ଓ. ଙ୍କ ଅଧୀନରେ ଥାଏ ଏହି ବଙ୍ଗଳା । ସେ ସମୟରେ ବାମଡ଼ା ଡିଭିଜନ୍‌ର ବନ ବିଭାଗୀୟ ଅଧିକାରୀ ଥିଲେ ଶ୍ରୀଯୁକ୍ତ ଅଭିନବ ପ୍ରଧାନ । ବଡରମା କ୍ୟାମ୍ପକୁ ଯିବାର ଅବ୍ୟବହିତ ପୂର୍ବରୁ ଆଶ୍ଚର୍ଯ୍ୟଜନକ ଭାବେ 'ରିଜର୍ଭେସନ ମିଳିବ ନାହିଁ' ଟିପ୍ପଣୀ ସହ ଆମ ଦରଖାସ୍ତଟି ବାମରା ଡି.ଏଫ୍.ଓ.ଙ୍କ ଠାରୁ ପ୍ରତ୍ୟାଖ୍ୟାତ ହୋଇ ଫେରି ଆସିଲା । ବନ୍ଦୋବସ୍ତ ଅଧିକାରୀ ଶ୍ରୀ କିଣ୍ଡୋ ଓ ଚାର୍ଜ ଅଫିସର ରାମ ବେହେରା ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ, କିପରି ଓ କେଉଁଠି ନେଇ ମୋତେ ବଡ଼ରମାରେ ସାତଦିନ ରଖିବେ । ଶେଷରେ ବିଚାର ଆଲୋଚନା କରାଯାଇ ନିଷ୍ପତ୍ତି ନିଆଗଲା, ଶ୍ରୀଯୁକ୍ତ ବେହେରା ଓ ମୁଁ ଦୁହେଁ ପ୍ରଥମେ ପହଞ୍ଚି ବଡ଼ରମା ଡାକବଙ୍ଗଳାରେ ଆଶ୍ରୟ ମିଳିବା ପାଇଁ ଚେଷ୍ଟା କରିବୁ । ନ ମିଳିଲେ ଅନ୍ୟ ବ୍ୟବସ୍ଥା କରାଯିବ ।

ସକାଳ ପ୍ରାୟ ସାଢେ ଆଠଟା ବେଳକୁ ମୁଁ ଓ ଚାର୍ଯ୍ୟ ଅଫିସର ଶ୍ରୀ ବେହେରା ବଡ଼ରମା ବନ ବିଭାଗ ଡାକବଂଗଳାରେ ପହଞ୍ଚିଲୁ । ବନ୍ଦୋବସ୍ତ ଅଫିସର ଜିପ୍‌ରେ ଆମେ ଯାଇଥାଉ । ରେଂଜ ଅଫିସ୍‌ର, ବଙ୍ଗଳା ପଛପଟ କ୍ୱାର୍ଟର୍ସରେ ରହୁଥାନ୍ତି । ଜିପ୍ ଶବ୍ଦ ଶୁଣି ଘରୁ ବାହାରି ଆମ ପାଖକୁ ଆସିଲେ । ଚାର୍ଜ ଅଫିସର ଶ୍ରୀ ବେହେରା ମୋର ପରିଚୟ

କରେଇ ଦେଇ କହିଲେ, ମୁଁ ଜଣେ ଆଇ.ଏଫ୍.ଏସ୍. ପ୍ରୋବେସନର । ବନ ବିଭାଗର ଅଫିସର୍‌ଭାବେ ନୂଆ ନୂଆ ଜଏନ୍ କରିଛନ୍ତି । ସାତଦିନ ପାଇଁ ବଡ଼ରମା ବନ୍ଦୋବସ୍ତ କ୍ୟାମ୍ପରେ ଟ୍ରେନିଂ ନେବାପାଇଁ ଆସିଛନ୍ତି । ଏହି ସାତଦିନ ସେ ଫରେଷ୍ଟ ବଂଗଳାରେ ରହିବେ, କାରଣ ପାଖାପାଖି ଆଉ କୌଣସି ସୁବିଧାଜନକ ବ୍ୟବସ୍ଥା ନାହିଁ । ସାମାନ୍ୟ ଦୋ ଦୋ ପାଞ୍ଚ ହୋଇ ରେଞ୍ଜ ଅଫିସର୍ କହିଲେ, ଡି.ଏଫ୍.ଓ.ଙ୍କ ଠାରୁ ବଙ୍ଗଳା ଆରକ୍ଷଣ ପ୍ରସ୍ତାବ ରିଜେକ୍ଟ ହୋଇ ଆସିଛି । କିନ୍ତୁ ବଙ୍ଗଳା ସଂପୂର୍ଣ୍ଣ ଖାଲି ଥାଉ ଥାଉ ମୁଁ କିପରି ଆମ ଜଂଗଲ ବିଭାଗର ଜଣେ ନୂଆ ଅଫିସରଙ୍କୁ ମନା କରିପାରିବି ? ତେଣୁ ସେ ଡି.ଏଫ୍.ଓ.ଙ୍କ ବାରଣ ସତ୍ତ୍ୱେ ଦୁଇ ନମ୍ବର କୋଠରିଟି ମୁଁ ରହିବା ପାଇଁ ଖୋଲିଦେଲେ ।

ବଂଗଳା ଚୌକିଦାର ସକାଳେ ଓ ସଂଧ୍ୟାରେ ଚା' ଯୋଗାଇଦିଏ । ଗାଧୋଇବା ପାଇଁ ଗରମ ପାଣି ଆଣିଦିଏ । ସକାଳ ଜଳଖିଆ ଓ ମଧ୍ୟାହ୍ନଭୋଜନ ମୁଁ କ୍ୟାମ୍ପରେ ଅନ୍ୟ ସହକର୍ମୀମାନଙ୍କ ଗହଣରେ କରେ । ରାତ୍ରିଭୋଜନ ମଧ୍ୟ କ୍ୟାମ୍ପରୁ ଆଣି ସେଠିକାର ଷ୍ଟାଫ୍‌ମାନେ ବଙ୍ଗଳାରେ ପହଞ୍ଚାଇ ଦିଅନ୍ତି । ଏହିପରି ଦୁଇଦିନ ସୁରୁଖୁରୁରେ ବିତିଗଲା । ତୃତୀୟ ଦିନ ସକାଳ ସମୟ ସାଢେ ସାତଟା ବା ଆଠଟା ହେବ । ବଂଗଳାର ବାରଣ୍ଡାରେ ବସି ଚା' ପିଉଛି ଏବଂ ଗତଦିନର ଖବରକାଗଜ ଉପରେ ଆଖି ବୁଲାଉଛି । ଏହି ସମୟରେ ବନବିଭାଗ ଲେଖାଥିବା ଜିପ୍‌ଟିଏ ବଂଗଳାରେ ପଶିଲା । ସାମ୍ନାରେ ଜଣୈକ ମଧ୍ୟବୟସ୍କ ଭଦ୍ରବ୍ୟକ୍ତି ବସିଥିଲେ । ମୁଁ ଅନୁମାନ କରିନେଲି, ଏ ମହାଶୟ ନିଶ୍ଚୟ ଡି.ଏଫ୍.ଓ. ହୋଇଥିବେ । ଚିହ୍ନା ପରିଚୟ ହେବା ଆଶାରେ ମୁଁ ବସିବା ସ୍ଥାନରୁ ଉଠି ପଡ଼ିଲି । କିନ୍ତୁ ଦେଖିଲି ଜିପ୍‌ଟି ନ ଅଟକି ବାଁ ପଟ ଗେଟ୍‌ରେ ଯେମିତି ପଶିଥିଲା, ଡାହାଣପଟ ଗେଟ୍‌ରେ ଠିକ୍ ସେମିତି ଦ୍ରୁତଗତିରେ ବାହାରିଗଲା । ପାଞ୍ଚ ମିନିଟ୍ ଭିତରେ ରେଞ୍ଜ ଅଫିସର ପଛପଟ କ୍ୱାର୍ଟର୍ସରୁ ଦୌଡ଼ି କରି ଆସି ପହଞ୍ଚିଲେ । ତାଙ୍କଠାରୁ ଯାହା ଜାଣିବାକୁ ପାଇଲି, ବାମରା ଡି.ଏଫ୍. ଓ. ଆସିଥିଲେ । କିନ୍ତୁ ସେ ରିଜର୍ଭେସନ ଦେଇନଥିବା ସତ୍ତ୍ୱେ ମୁଁ ବଂଗଳାରେ ବସିଥିବା ଦେଖି ଆଉ ସେଠାରେ ନ ଅଟକି ସିଧାସଳଖ ଜିପ୍ ବୁଲାଇ ଫେରି ଯାଇଥିଲେ । ଡି.ଏଫ୍.ଓ.ଙ୍କର କୋପଦୃଷ୍ଟି ନିଶ୍ଚୟ ତା' ଉପରେ ପଡ଼ିବ । ଏହି ଭୟରେ ରେଞ୍ଜର ଆତଙ୍କିତ ଜଣାପଡୁଥିଲା ।

ତାଙ୍କୁ ପାଖରେ ବସାଇ ଆଉ କପେ କପେ ଚା' ମଗାଇଲି ଏବଂ ସାନ୍ତ୍ୱନା ମଧ୍ୟ ଦେଲି । ଫୁଲବାଣୀ ଡିଭିଜନ୍‌ରେ ଟ୍ରେନିଂ ନେବା ଅବସରରେ ଯେଉଁ କେତେକ ଜଂଗଲ

ସଂପର୍କୀୟ ଆଇନ୍ କାନୁନ୍ ତର୍ଜମା କରିବାର ସୁଯୋଗ ମୋତେ ମିଳିଥିଲା, ତନ୍ମଧ୍ୟରୁ ଫରେଷ୍ଟ ଗେଷ୍ଟ ହାଉସ୍ ଅକୁପେସନ ରୁଲ୍ ଥିଲା ଅନ୍ୟତମ । ଏହି ରୁଲ୍ ମୁତାବକ କୌଣସି ବନ ବିଭାଗ ଅଫିସର୍ ଟୁର୍‌ରେ ଥିଲେ ଅଗ୍ରାଧିକାର ଭିତ୍ତିରେ ଫରେଷ୍ଟ ଗେଷ୍ଟ ହାଉସ୍‌ରେ ଆରକ୍ଷଣ ପାଇବାକୁ ହକ୍‌ଦାର । ଏହି ଆଇନ୍ ଅନୁଯାୟୀ ମୋତେ ବଂଗଳାରେ ରହିବା ପାଇଁ ସ୍ଥାନ ଦେଇ ସେ କିଛି ବେନିୟମ କାର୍ଯ୍ୟ କରି ନାହାନ୍ତି । ଏହି ଆଶ୍ୱାସନା ପରେ ରେଂଜରବାବୁ ସାମାନ୍ୟ ଶାନ୍ତ ହେଲେ ।

ପରବର୍ତ୍ତୀ କ୍ୟାମ୍ପ 'ଜମନକିରା' ଠାରେ ଅନୁଷ୍ଠିତ ହୋଇଥିଲା ଏବଂ ସେଠି ମୋର ରହିବାର ବନ୍ଦୋବସ୍ତ ରେଭେନ୍ୟୁ ଡାକବଂଗଳାରେ କରାଯାଇଥିଲା । ବନ୍ଦୋବସ୍ତ ଟ୍ରେନିଂର ସର୍ବଶେଷ କ୍ୟାମ୍ପ ଥିଲା 'ଦେଓଗଡ଼'ରେ । ଏହି କ୍ୟାମ୍ପର ଉଦ୍ଦେଶ୍ୟ ଥିଲା, ପୂର୍ବବର୍ତ୍ତୀ କ୍ୟାମ୍ପମାନଙ୍କରେ ଲିପିବଦ୍ଧ କରାଯାଇଥିବା ପକ୍‌କା ରୋକଡ଼ ମୁତାବକ ପୂର୍ଣ୍ଣ ଶୁଣାଣି କରି ବନ୍ଦୋବସ୍ତ ଦଲିଲ୍ ପ୍ରସ୍ତୁତ କରିବା । ସରକାରୀ ବନ୍ଦୋବସ୍ତ ଅଧିକାରୀ ଭାବେ ସମସ୍ତ ବିଷୟ ଅନୁଶୀଳନ କରି ଫାଇନାଲ୍ ଦଲିଲ୍ ପ୍ରସ୍ତୁତ ହେବା ଆଗରୁ ନିଷ୍ପତ୍ତି ଶୁଣାଇବା ନିମନ୍ତେ ମୋତେ ଦାୟିତ୍ୱ ଦିଆଯାଇଥିଲା । ଟ୍ରେନିଂ ଦାୟିତ୍ୱରେ ଥିବା ବନ୍ଦୋବସ୍ତ ଅଧିକାରୀ ମୋତେ ଚୂଡ଼ାନ୍ତ ଆଦେଶ ବା ଜଜ୍‌ମେଣ୍ଟ ଲେଖିବା ପାଇଁ ସମସ୍ତ ପ୍ରକାର ସହଯୋଗ କରିଥିଲେ ।

ଦେଓଗଡ଼ରେ ମୁଁ ରହୁଥିଲି 'ଲଳିତବସନ୍ତ' ରାଜ ପ୍ରାସାଦରେ । ଏଠିକାର ପ୍ରସିଦ୍ଧ 'ପ୍ରଧାନପାଟ' ଜଳପ୍ରପାତ ସମ୍ମୁଖରେ ଅବସ୍ଥିତ । ଯୁଗଳ ରାଜପ୍ରସାଦ 'ଲଳିତ ବସନ୍ତ' ଓ 'ବସନ୍ତ ନିବାସ' । ତତ୍‌କାଳୀନ ରାଜାସାହେବ ସ୍ୱଗତ ତ୍ରିଭୁବନ ଦେବଙ୍କ ବିଳାସ ବିନୋଦନ ପାଇଁ ନିର୍ମିତ ହୋଇଥିବା ଏହି ପ୍ରାସାଦ ଦୁଇଟି ଏବେ ଜାତୀୟ ରାଜପଥ ସଂସ୍ଥାର ବିଶ୍ରାମ ଗୃହରେ ପରିଣତ ହୋଇଛି । ପରିବେଶଟି ଅତ୍ୟନ୍ତ ମନୋରମ ଓ ମନୋମୁଗ୍ଧକର । ଏହି ବିଶ୍ରାମାଗାରର ଦୁଇ ନମ୍ବର ପ୍ରକୋଷ୍ଠ ସଂଲଗ୍ନ ବାରଣ୍ଡାରେ ବା ନିକଟବର୍ତ୍ତୀ ଘାସ ଲନ୍‌ରୁ ପରିଷ୍କାର ଉପଭୋଗ କରିହୁଏ 'ପ୍ରଧାନପାଟ' ଜଳ ପ୍ରପାତର ନୈସର୍ଗିକ ଶୋଭାରାଶି । ଉତ୍ତୀର୍ଣ୍ଣ ଅପରାହ୍ଣରେ କ୍ୟାମ୍ପରୁ ଫେରି ମୁଁ ବିଶ୍ରାମଗୃହ ସମ୍ମୁଖସ୍ଥ ବାଟିକାର ଲନ୍‌ରେ ଥିବା ପଥର ବେଞ୍ଚରେ ବସି ଯାଇଥିଲି । ଯେଉଁଠି ଲନ୍ ଚାରିକଡ଼ରେ ଥିବା ପ୍ରସ୍ତର ସ୍ତମ୍ଭମାନଙ୍କରେ ମାର୍ବଲ ଫଳକରେ ଖୋଦିତ ହୋଇଥିଲା, ପ୍ରାଚୀନ କବିମାନଙ୍କର ଅମର କାବ୍ୟକୃତିର ବିଶେଷାଂଶ । ଗୋଟିଏ ଫଳକରେ କବିବର ୰ରାଧାନାଥ ରାୟଙ୍କର ସୁଯୋଗ୍ୟ ସନ୍ତାନ ୰ ଶଶିଭୂଷଣ ରାୟଙ୍କ ଲିଖିତ କବିତାର କେତୋଟି ପଂକ୍ତି ମୁଁ ସେଦିନ ଟିପି ଆଣିଥିଲି ।

*'ଚାନ୍ଦିନୀ ଉପରେ ଚାନ୍ଦିନୀ ରାତିରେ*
*ସୁଧା ବିମଣ୍ଡିତ ଚନ୍ଦ୍ରରେ,*
*ଚମ୍ପାଚୂତ ବାସ, ଚନ୍ଦ୍ରିକା ଆକାଶ*
*ଚିତ୍ତକୁ ମୋହିବ ସତ୍ୱରେ ।*
*'ବସନ୍ତ ନିବାସ' କ୍ଷଣେ କଲେ ଭୋଗ*
*ତ୍ରିଭୁବନ ଦେବ କଳ୍ପନା ଚାତୁରୀ*
*ଜାଣିବ ପ୍ରଶଂସାଯୋଗ୍ୟ ।*

ସତରେ ପ୍ରକୃତିର ଭାବ ବିହ୍ୱଳତାକୁ କବି ଯେମିତି ମାର୍ବଲ ଫଳକରେ, ନିହାଣ ମୁନରେ ବାନ୍ଧି ରଖିଛନ୍ତି ।

ଦେଓଗଡ଼ରେ ଥିଲା ବନ୍ଦୋବସ୍ତ ଟ୍ରେନିଂର ଅନ୍ତିମ କ୍ୟାମ୍ପ । ଏହାର ପରିସମାପ୍ତି ପରେ ସମ୍ବଲପୁର ଦେଇ ପୁନଶ୍ଚ ଫେରିଆସିଲି ଫୁଲବାଣୀକୁ ।

ଏହାପରେ ଫୁଲବାଣୀରେ ମୋର ରହଣିକାଳ ଥିଲା ଖୁବ୍ ସ୍ୱଳ୍ପ ସମୟ ପାଇଁ । ବେଶ୍ ସୀମିତ । ଅଫିସ୍ ସରିଲା ପରେ ମଝିରେ ମଝିରେ ନିକଟସ୍ଥ ଫୁଲବାଣୀ ମହାବିଦ୍ୟାଳୟକୁ ଚାଲିଯାଏ । ଜିଲାର ଏକମାତ୍ର ସରକାରୀ କଲେଜ । ସେଠି କେତେକ ଅଧ୍ୟାପକ ବନ୍ଧୁଙ୍କ ସହ ଆଲୋଚନାରେ ସମୟ ବିତିଯାଏ । ଆଲୋଚନା ଥାଏ ମୁଖ୍ୟତଃ ସାହିତ୍ୟ ସମ୍ବନ୍ଧୀୟ । ରାତ୍ରିର ପ୍ରଥମ ବା ଦ୍ୱିତୀୟ ପ୍ରହରରେ ଫେରିଆସେ । ମୋ' ପାଇଁ ଡି.ଏଫ୍.ଓ.ଙ୍କ ଆଦେଶରେ ନିର୍ମାଣ ହୋଇ ପାରିଥିବା ସେହି ଛୋଟ ବସାଘରକୁ ।

ଦିନେ କଥା ପ୍ରସଙ୍ଗରେ ମୁଁ ଫୁଲବାଣୀ ଡି.ଏଫ୍.ଓ.ଙ୍କୁ 'ବଡ଼ରମା'ରେ ଘଟିଥିବା ଘଟଣା ବିଷୟ ଜଣେଇ ଦେଇଥିଲି । ମୋର ବଙ୍ଗଳା ଆରକ୍ଷଣ ଦରଖାସ୍ତକୁ କିପରି ବାମରା ଡି.ଏଫ୍.ଓ ଶ୍ରୀ ପ୍ରଧାନ ନାମଞ୍ଜୁର କରିଦେଇଥିଲେ ଏବଂ ଏହି ବାରଣ ସତ୍ତ୍ୱେ ମୁଁ ଜବରଦସ୍ତ ବଂଗଳାରେ ରହିଥିବା ହେତୁ, ଦିନେ ସେ ସେଠାକୁ ଆସି ବଂଗଳା ଭିତରେ ପଶିଥିଲେ ମଧ୍ୟ କିପରି ନ ଅଟକି ଜିପ୍‌ରୁ ନ ଓହ୍ଲେଇ ବାହାରୁ ଫେରିଯାଇଥିଲେ । ଦୁର୍ଯୋଗ ହେଉ ବା ସୁଯୋଗ ହେଉ, ଫୁଲବାଣୀରେ ମୋର ଅଳ୍ପଦିନର ରହଣି ଭିତରେ ଦିନେ ବାମରା ଡି.ଏଫ୍.ଓ. ଶ୍ରୀ ଅଭିନବ ପ୍ରଧାନ ସେଠାକୁ ଆସିଥିଲେ । ଫୁଲବାଣୀ ଡି.ଏଫ୍.ଓ.ଙ୍କ ବାସଭବନରେ ମୋର ତାଙ୍କ ସହିତ ଭେଟ ହୋଇଗଲା । ମୋତେ ଦେଖି ଆମ ବସ୍‌ଙ୍କର ମନେ ପଡ଼ିଗଲାକି କ'ଣ, ସେ ସିଧାସଳଖ ଅଭିନବ ବାବୁଙ୍କୁ ମୋତେ କାହିଁକି ବାମରା

ବଂଗଳାରେ ଆରକ୍ଷଣ ଦେଲେ ନାହିଁ; ପଚାରିଦେଲେ । ଏମିତି ଖୋଲା ଖୋଲି ପ୍ରଶ୍ନରେ ଅଭିନବବାବୁ ପ୍ରଥମେ ହଡ଼ବଡ଼େଇ ଗଲେ । ତା' ପରେ କହିଲେ, ମୁଁ ଆଇ.ଏଫ୍.ଏସ୍. ଅର୍ଥ ଇଣ୍ଡିଆନ୍ ଫରେନ୍ ସର୍ଭିସ୍ ବୋଲି ଭାବିଲି । ଫୁଲବାଣୀ ଡି.ଏଫ୍.ଓ. କିନ୍ତୁ ଛାଡ଼ିବା ଲୋକ ନୁହନ୍ତି, ସେ ବକ୍ରୋକ୍ତି କରି କହିଲେ ଇଣ୍ଡିଆନ୍ ଫରେନ୍ ସର୍ଭିସ୍‌ର ଅଫିସରମାନେ କ'ଣ ଫରେଷ୍ଟ ଡାକବଂଗଳାରେ ରହିବା ପାଇଁ ଯୋଗ୍ୟ ନୁହନ୍ତି ?

ଏଠି ଏ ପ୍ରସଙ୍ଗ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି, ସେତେବେଳକୁ ନୂଆକରି ଭାରତୀୟ ବନ ସେବା କ୍ୟାଡର ଗଠନ କରାଯାଇଥାଏ । ଯଦିଓ ୧୯୬୯ ମସିହାରେ ପ୍ରଥମ କରି ରାଜ୍ୟ ବନସେବାର କିଛି ଅଫିସର୍ ସ୍ୱତନ୍ତ୍ର ଭାବେ ବିଭାଗୀୟ ପରୀକ୍ଷା ଦେଇ ଭାରତୀୟ ବନସେବାରେ ଯୋଗଦାନ କରିଥିଲେ; କିନ୍ତୁ ୧୯୭୧ ମସିହାରେ ହିଁ ଭାରତୀୟ ବନସେବାର ଜଣେ ଅଫିସର୍ ଶ୍ରୀଯୁକ୍ତ ଶ୍ରୀରାମ ସାଗର ସିଧାସଳଖ ଓଡ଼ିଶାରେ ନିଯୁକ୍ତି ପାଇଲେ । ୧୯୭୨ ଓ ୧୯୭୪ ମସିହାରେ ଜଣେ ଜଣେ ଏବଂ ୧୯୭୫ ମସିହାରେ ଆମେ ଦୁଇଜଣ ଅଫିସର୍ ଓଡ଼ିଶା କ୍ୟାଡରକୁ ଆସିଥାଉ । ତେଣୁ ସେ ସମୟରେ ରାଜ୍ୟ ବନସେବାର କେତେକ ବରିଷ୍ଠ ଅଫିସରଙ୍କ ମନରେ ନୂଆକରି ଏଠାକୁ ଆସିଥିବା ଭାରତୀୟ ବନସେବାର ଯୁବ ଅଫିସରଙ୍କ ପ୍ରତି ସଂଶୟାତ୍ମକ ମନୋଭାବ ରହିବା ସ୍ୱାଭାବିକ । ସନ୍ଦେହରୁ ଘୃଣାର ଉତ୍ପତ୍ତି । ଏହି କାରଣରୁ ସେତେବେଳେ ଓଡ଼ିଶା କ୍ୟାଡରରେ ଯୋଗ ଦେଇଥିବା ତିନି-ଚାରିଜଣ ଯୁବ ଆଇ.ଏଫ.ଏସ୍. ଅଫିସରଙ୍କୁ ଅନେକ ସମୟରେ ଏମିତି କିଛି ଅହେତୁକ ପରିସ୍ଥିତିର ସାମ୍ନା କରିବାକୁ ପଡୁଥିଲା ।

ଫୁଲବାଣୀରୁ ବିଦାୟ ନେବାର ସମୟ ପାଖେଇ ଆସୁଥାଏ । ପରବର୍ତ୍ତୀ ଛଅମାସ ଅନୁଗୁଳ ଡିଭିଜନ୍ ଦୁର୍ଗାପୁର ରେଂଜରେ ଟ୍ରେନିଂ ନେବା ପାଇଁ ସରକାରୀ ନିର୍ଦ୍ଦେଶନାମା ଆସି ପହଞ୍ଚି ସାରିଥାଏ ।

ଫୁଲବାଣୀର ନାମକରଣ ଏପରି କାହିଁକି ହୋଇଛି ମୁଁ ଜାଣେନା । କେତେକ କହନ୍ତି ଫୁଲବାଣୀ ଫୁଲର ରାଇଜ । ଶାଳ ଫୁଲ, କୁରେଇ ଫୁଲ ଏବଂ ଜାତି ଜାତିକା ବଣୁଆ ଫୁଲରେ ଭରା ଏ ରାଇଜ । ବଣଫୁଲର ସମାରୋହ ଭିତରେ ସରଳ, ନିଷ୍ପାପ ଓ ନିରୀହ ଆଦିବାସୀ ଶିଶୁମାନଙ୍କର ମୁହଁ ମଧ୍ୟ ସଜଫୁଲ ପରି ଝଟକୁଥାଏ । ରାଜ୍ୟ ବନ ବିଭାଗରେ ଚାକିରିର ଯେଉଁ ଶିଡି ଚଢ଼ି ମୋତେ ଦିନେ ଉପରକୁ ଉପର ଉଠିବାକୁ ହେବ, ସେହି ଶିଡିର ପ୍ରଥମ ପାହାଚ ଥିଲା 'ଫୁଲବାଣୀ' । ବିଭାଗୀୟ ନୀତି ନିୟମ, କାଇଦା କଟକଣା,

ଆଇନ୍ କାନୁନ୍, ଚାଲି ଚଳଣ ଏବଂ ଅନେକ ଜଣା ଅଜଣା କାହାଣୀର 'ଅ', 'ଆ' ଓ 'କ' 'ଖ' ମୁଁ ଏଇଠି ପ୍ରଥମେ ଶିଖିଲି । ଭାବିଥିଲି, ଚାକିରିର ପ୍ରଥମ ସୋପାନରେ ଫୁଲବାଣୀର ଅନୁକୂଳ, ଆବେଗମୟ ବାତାବରଣରେ ମୋ ଜୀବନ ବଗିଚାର ଯେଉଁ ସଦ୍ୟତମ କଢ଼ିଟି ପ୍ରସ୍ଫୁଟିତ ହୋଇ ସଜଫୁଟନ୍ତା ଫୁଲର ରୂପ ନେଇଛି, ଭବିଷ୍ୟତରେ ଯଦି ଏହି ମାଟିରେ କେବେ ଡି.ଏଫ୍.ଓ. ପୋଷ୍ଟିଂ ପାଇ ଅବସ୍ଥାପିତ ହୁଏ, ତେବେ ଏଇଂ ସରଳ କୁନିକୁନି ଆଦିବାସୀ ଚୂନାଫୁଲକୁ ନେଇ ମୋ' ଆଗାମୀ ସୃଷ୍ଟିର ମାଳା ଗୁନ୍ଥିବାକୁ ପ୍ରୟାସ କରିବି । କିନ୍ତୁ ଚାକିରି ଜୀବନରେ ସେ ସୁଯୋଗ ଆଉ ଆସିଲା ନାହିଁ ।

ଶୀତଋତୁ ତଥାପି ଫୁଲବାଣୀରୁ ଅପସରି ଯାଇ ନ ଥାଏ । ୧୯୭୮ ମସିହା ମାର୍ଚ୍ଚମାସ ପ୍ରଥମ ସପ୍ତାହରେ ଫୁଲବାଣୀର ପବିତ୍ର ମାଟିକୁ ପ୍ରଣାମ ଜଣାଇ ଖୋର୍ଦ୍ଧା ଅଭିମୁଖେ ବସ୍ ଧରିଲି । କିନ୍ତୁ ସବୁଦିନ ପାଇଁ ମନେ ରହିଗଲା, ଡି.ଏଫ୍.ଓ. ଶ୍ରୀ ନୃସିଂହ ଚରଣ ପଟ୍ଟନାୟକ ଓ ତାଙ୍କ ପତ୍ନୀଙ୍କର ଅନାବିଳ ସ୍ନେହ, ମମତା ତଥା ନିଷ୍କପଟ ଆନ୍ତରିକତା । ତାଙ୍କ ଛୋଟ ପରିବାରର ମୁଁ ଜଣେ ଅନ୍ୟତମ ସଦସ୍ୟ ବନିଯାଇଥିଲି । ସେମାନଙ୍କର ଭଲମନ୍ଦ, ସୁଖଦୁଃଖର ସାଥୀ ପାଲଟି ଯାଇଥିଲି । ଚାକିରି କାଳ ଭିତରେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ପରିବାର ଓ ମୋ' ପରିବାର ଭିତରେ ଏକ ଅନ୍ତରଂଗ, ଘନିଷ୍ଠ ସଂପର୍କ ଗଢ଼ି ଉଠିଥିଲା । ଚାକିରିରୁ ଅବସର ଗ୍ରହଣ କଲାପରେ ଏବେ ବି ଶ୍ରୀ ପଟ୍ଟନାୟକ ମୋର ବଂଧୁ, ଦାର୍ଶନିକ ଓ ଦିଗ୍‌ଦର୍ଶକର ଭୂମିକା ତୁଲାଇ ଆସୁଛନ୍ତି ।



## ସାଧୁଦ୍ୱେଷୀ ଚ
## ପ୍ରମୋସନ ବନ୍ଦ



୧୯୭୮ ମସିହା, ମେ' ମାସ । ମାସର ଶେଷ ସପ୍ତାହ ହେବ ବୋଧହୁଏ । ଦିନ ଗୋଟାଏ ବେଳକୁ, ମୁଁ ରେଂଜ ଅଫିସ୍ ବାରଣ୍ଡାରେ ବସି ଅଫିସ୍ କାମ କରୁଥାଏ । ବିଜୁଳି ଲାଇଟ୍ ନଥିବାରୁ ଅଫିସ୍ ଘରେ ପଙ୍ଖା ବୁଲୁ ନଥାଏ । ଘର ବାହାର ପଟେ ଆଠଫୁଟ ଚଉଡ଼ାର ବାରଣ୍ଡା । ଫୁଟେ ମୋଟାର ପୁରୁଣାକାଳିଆ ଚାଳ । ବାରଣ୍ଡାକୁ ଲାଗି ପୁରୁଣା ଝଙ୍କାଳିଆ ଆମ୍ବ ଗଛଟିଏ । ବାହାରେ ବେଶ୍ ଟାଣ ଖରା । ଘର ଭିତରେ ଲାଇନ୍ ନଥିବାରୁ ଗରମ । ତେଣୁ ବାରଣ୍ଡାରେ ଖୋଲାରେ ବସି କାମକରିବାକୁ ବେଶ୍ ଭଲ ଲାଗୁଥାଏ ।

ଡେରାଡୁନ୍ ଓ ମସୌରୀରୁ ଟ୍ରେନିଂ ନେଇ ଫେରିଲା ପରେ ମୁଁ ପ୍ରଥମେ ଫୁଲବାଣୀ ଫରେଷ୍ଟ ଡିଭିଜନ୍‌ରେ କାର୍ଯ୍ୟରେ ଯୋଗଦେଲି-ଭାରତୀୟ ବନସେବାର ପ୍ରୋବେସନାରୀ ଅଫିସର ଭାବେ । ସେଠୁ ବଦଳି ହୋଇ, ମାର୍ଚ୍ଚ ମାସରେ ଅନୁଗୁଳ ଡିଭିଜନ୍ ଅଧୀନସ୍ଥ ଦୁର୍ଗାପୁର ରେଞ୍ଜରେ ଜଏନ୍ କରିଥାଏ, ଛଅମାସିଆ ରେଂଜ ଟ୍ରେନିଂ ନେବା ଉଦ୍ଦେଶ୍ୟରେ । ଦୁର୍ଗାପୁର ରେଂଜର କାର୍ଯ୍ୟାଳୟ ବା ରେଂଜ ଅଫିସ୍ ଥାଏ ଜରପଡ଼ାରେ । ଅନୁଗୁଳଠାରୁ

ସମ୍ବଲପୁର ଯିବା ରାସ୍ତାରେ ୨୦ କିଲୋମିଟର ଗଲେ ପଡିବ 'ଜରପଡ଼ା' । ଛୋଟିଆ ଗାଁଟିଏ କହିଲେ ଚଳିବ । ବାଁ ପଟେ ରେଂଜ୍ ଅଫିସ୍‌ର ବିରାଟ କମ୍ପାଉଣ୍ଡ । ଅଫିସ୍ କମ୍ ରେସିଡେନ୍‌ସ୍ । ଟିକିଏ ଦୂରକୁ ବନ ବିଭାଗର ବିଶ୍ରାମାଗାର । ଯେଉଁଠି ସରକାରୀ ଗସ୍ତରେ ସମ୍ବଲପୁର ଯିବାବେଳେ ବିଭାଗୀୟ ଅଫିସରମାନେ କିଛି ସମୟ ବିତାଇଥାନ୍ତି । ରେଂଜ୍ ଅଫିସ୍‌ଠାରୁ ଅନତିଦୂରରେ ରାସ୍ତାର ଡାହାଣ ପଟେ ଜରପଡ଼ା ଥାନା । ଥାନା କଡ଼େ କଡ଼େ ମାଟି ରାସ୍ତାଟି ଲମ୍ବି ଯାଇଛି ଗାଁ ଭିତରକୁ । ସେହି ରାସ୍ତାରେ କିଛି ବାଟ ଗଲେ ପଡ଼ିବ ପଶୁ ଡାକ୍ତରଖାନା ଓ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର । ଗାଁରେ ସପ୍ତାହକୁ ଥରେ ହାଟ ବସେ । ସେଇଠୁ ପରିବା ପତ୍ର ଏବଂ ଆବଶ୍ୟକୀୟ ସଉଦା ପତ୍ର ଆମେ କିଣିଥାଉ । ସେତେବେଳକୁ ଅନୁଗୁଳରେ ନାଲ୍‌କୋର ସ୍ମେଲଟର୍ ପ୍ଲାଣ୍ଟ ବସିନଥିବାରୁ ପରିବାପତ୍ର, ମାଛ ଇତ୍ୟାଦି ଶସ୍ତାରେ ମିଳୁଥାଏ । ମୋର ମନେଅଛି, ସେବେ ଜରପଡ଼ା ହାଟରେ ପିଆଜ କିଲୋ ଚାରଣାରେ ମିଳୁଥିଲା ।

ଜରପଡ଼ାରେ ଅଫିସର୍ ବୋଇଲେ, ହାତଗଣତି ଆମେ କେତେଜଣ । ମୁଁ ଓ ମୋ ଆଗରୁ ସେଠାରେ ଅବସ୍ଥାପିତ ରେଂଜ ଅଫିସ୍‌ର, ଥାନା ଇନ୍‌ସିପେକ୍ଟର, ପଶୁ ଡାକ୍ତର ଏବଂ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ମହାଶୟ ରେଂଜ କମ୍ପାଉଣ୍ଡ ବାହାରେ କ୍ୟାବିନ୍‌ରେ ପାନଦୋକାନଟିଏ ଏବଂ ବରା, ପକୁଡ଼ି ଛାଣୁଥିବା ଚାଳିଆ ଖଣ୍ଡେ । ବାସ୍ ସେ ସମୟରେ ଏତିକିଥିଲା ଜରପଡ଼ାର ପରିଚୟ । ମୁଖ୍ୟ ରାସ୍ତାରେ ଆଠ, ଦଶ କିଲୋମିଟର ଆଗକୁ ଗଲେ ପଡିବ ବଇଣ୍ଡା ଛକ । ସେଠି ଅବଶ୍ୟ ବେଶ୍ କିଛି ଦୋକାନ ବଜାର ଥାଏ ।

ସେଦିନ ରେଂଜ ଅଫସ୍ ବାରଣ୍ଡାରେ ବସି ଅଫିସ୍ କାମ କରୁଥାଏ । ଏଇ ସମୟରେ ଅନୁଗୁଳ ସମ୍ବଲପୁର ବସ୍‌ରୁ ଓହ୍ଲେଇ ବନରକ୍ଷୀଟିଏ ଅଫିସ୍ କମ୍ପାଉଣ୍ଡ ଭିତରେ ପଶିଲା ଓ ପାଖକୁ ଆସି ସାଲ୍ୟୁଟ୍ ଦେଇ ଚିଠି ଖଣ୍ଡିଏ ବଢ଼େଇ ଦେଲା । ଅନୁଗୁଳ ଡି.ଏଫ୍.ଓ.ଙ୍କ ଠାରୁ ଚିଠି ଆସିଥାଏ । ଚିଠିଟିର ସାରାଂଶ ହେଲା ଜନୈକ ଉଚ୍ଚପଦସ୍ଥ ବିଭାଗୀୟ ଅଧିକାରୀ ଅନୁଗୁଳ ଆସି ସର୍କିଟ୍ ହାଉସ୍‌ରେ ଅବସ୍ଥାନ କରୁଛନ୍ତି । ଅପରାହ୍ଣ ଚାରିଟା ସୁଦ୍ଧା ମୁଁ ତାଙ୍କୁ ସେଠାରେ ଦେଖା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ମନରେ କୌତୁହଳ ଜାତହେବା ସହିତ, ଆଶଙ୍କା ମଧ୍ୟ ବଢ଼ିଲା । ହଠାତ୍ ବନ ବିଭାଗର ସର୍ବୋଚ୍ଚ କର୍ତ୍ତା ମୋ ପରି ଜଣେ ଅଧମକୁ (ସର୍ବଭାରତୀୟ ସ୍ତରରେ ସର୍ବନିମ୍ନ ପାହ୍ୟାର ଅଫିସର) କାହିଁକି ସ୍ମରଣ କଲେ, ଏହି ଆଶା, ଆଶଙ୍କା ଭିତରେ ଶୀଘ୍ର ମଧ୍ୟାହ୍ନ

ଭୋଜନ ଶେଷ କରି, ସହକର୍ମୀ ରେଂଜରଙ୍କ ସ୍କୁଟରରେ ବସି, ସେହି ଉଦୁଉଦିଆ ଦିପହର ଟାଣ ଖରାରେ ଅନୁଗୁଳ ଆସିଲୁ । ଆମେ ପହଞ୍ଚିଲା ବେଳକୁ ଅପରାହ୍ନ ସାଢ଼େ ତିନିଟା । ସର୍କିଟ୍ ହାଉସ୍‌ଠାରେ ଟେରିଟୋରିଆଲ୍ ଡି.ଏଫ୍.ଓ., ସିଲ୍‌ଭିକଲ୍‌ଚରିଷ୍ଟ, ୱାର୍କିଙ୍ଗ ପ୍ଲାନ୍ ଅଫିସ୍‌ର ଏବଂ ଅନ୍ୟ କେତେଜଣ ବନ ବିଭାଗର ପଦସ୍ଥ ଅଫିସର୍ ଉପସ୍ଥିତ ଥାନ୍ତି । ଅଧିକାରୀ ମହୋଦୟ ଶୀତତାପ ନିୟନ୍ତିତ ରୁମ୍ ଭିତରେ ବିଶ୍ରାମ ନେଉଥାନ୍ତି ।

ପ୍ରାୟ ସାଢ଼େ ଚାରିଟା ବେଳକୁ ବିଶ୍ରାମ ଗୃହର ଦ୍ୱାର ଖୋଲିଲା ଏବଂ ସେ ମହୋଦୟ ବାହାରକୁ ଆସି ଲାଉଞ୍ଜରେ ବସିଲେ । ବିଭିନ୍ନ ଆନୁସଙ୍ଗିକ ବିଷୟରେ ଆଲୋଚନା ଚାଲିଲା । ଡି.ଏଫ୍.ଓ ମୋର ପରିଚୟ କରେଇ ଦେଲେ । ତା' ପରେ ଅତ୍ୟନ୍ତ ଆଗ୍ରହରେ ସେ ମୋ ଠାରୁ ଅନେକ ବିଷୟରେ ପଚାରି ବୁଝିଲେ । ରେଂଜ ଟ୍ରେନିଂ କିପରି ଚାଲିଛି ? ଏ ବର୍ଷ ରେଂଜରେ କ'ଣ ପ୍ଲାଣ୍ଟେସନ୍ ହେଉଛି ? କାଠ ମାଫିଆମାନେ ସକ୍ରିୟ ନା ନୁହନ୍ତି; ଇତ୍ୟାଦି ଇତ୍ୟାଦି । ତାଙ୍କ କଥାବାର୍ତ୍ତାରୁ ଜଣାପଡୁଥିଲା, ଯେମିତି ଅନ୍ୟାନ୍ୟ ଉପସ୍ଥିତ ବନବିଭାଗ ଅଫିସରଙ୍କ ତୁଳନାରେ ସେ ମୋତେ ଅଧିକ ଗୁରୁତ୍ୱ ଦେଉଛନ୍ତି । କିଛି ସମୟ ପରେ ମହାଶୟ ରୁମ୍ ଭିତରକୁ ଚାଲିଯାଇ ଆମ ଡି.ଏଫ୍.ଓ.ଙ୍କୁ ଡକେଇ ପଠେଇଲେ ଏବଂ ନିଭୃତରେ ତାଙ୍କ ସହିତ କିଛି ସମୟ କଥାବାର୍ତ୍ତା ହେଲେ । ଏହି ଅବସରରେ ଚା' ଓ ସ୍ନାକ୍‌ସ ପରଷା ଚାଲିଥାଏ । ଅପରାହ୍ନ ସାଢେ ପାଞ୍ଚଟା ବେଳକୁ ଅଧିକାରୀ ମହାଶୟ ବିଦାୟ ନେଇ ଭୁବନେଶ୍ୱର ଫେରିଗଲେ ।

ଏଥିଅନ୍ତେ ଡି.ଏଫ୍. ଓ. ମୋତେ ଡାକିନେଇ ଅସଲ କଥାଟି ଶୁଣାଇଲେ । ଶ୍ରୀଯୁକ୍ତ ବେଉରିଆଙ୍କର ସୁରୁଚି-ସଂପର୍ଣ୍ଣା ଝିଅଟିଏ ଅଛି । ଏଇ ବର୍ଷ ସୋସିଓଲଜିରେ ଏମ୍.ଏ. କରିଛି ଏବଂ ଭୁବନେଶ୍ୱରର କେଉଁ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନରେ କାମ ମଧ୍ୟ କରୁଛି । ସେଇ ଝିଅ ସହିତ ମୋର ବିଭାଘର ପ୍ରସ୍ତାବ ପକାଇବା ପାଇଁ ସେ ଡି.ଏଫ୍.ଓ.ଙ୍କୁ ଅନୁରୋଧ କରିଛନ୍ତି । ତାଙ୍କ କଥାରେ ବାଧାଦେଇ ମୁଁ କହିଲି, 'ସାର୍, ମୋର ତ ବାହାଘର ସ୍ଥିର ହୋଇ ସାରିଛି ଏବଂ ନିର୍ବନ୍ଧ ମଧ୍ୟ ହୋଇ ଯାଇଛି ।' ମୋ କଥା ଶୁଣି, ଡି.ଏଫ୍.ଓ.ଙ୍କ ମୁହଁ ଶୁଖିଗଲା । ତାଙ୍କର ଆଖି ଦୁଇଟିର ଚାହାଣୀ ବଡ଼ ବିକଳ ମନେ ହେଉଥିଲା । କିଛି ସମୟ ଚୁପ୍ ହୋଇ ବସିଲା ପରେ, ସେ ମୋତେ ପୁନର୍ବାର ବୁଝାଇବାକୁ ଲାଗିଲେ- 'ଦେଖନ୍ତୁ, ଏହା ଏକ ଭଲ ପ୍ରସ୍ତାବ । ଝିଅର ଦୁଇଭାଇ ଭାରତୀୟ ପ୍ରଶାସନିକ ସେବା ଏବଂ ଅନ୍ୟ ଜଣେ ଭାରତୀୟ ବିଦେଶ ସେବାରେ ଅଧିଷ୍ଠିତ ।'

ଡି.ଏଫ୍.ଓ.ଙ୍କ କଥାରେ ପୂର୍ଣ୍ଣଚ୍ଛେଦ ଟାଣି ମୁଁ କହିଥିଲି- 'ଝିଅର ଭାଇମାନଙ୍କୁ ମୁଁ ବେଶ୍ ଭଲ ଭାବରେ ଜାଣିଛି । ପ୍ରସ୍ତାବଟି ମଧ୍ୟ ଖୁବ୍ ଭଲ ପ୍ରସ୍ତାବ । କିନ୍ତୁ ମୁଁ ନାଚାର । ଘରେ ମୋର ବିଧବା ମା'ଟିଏ । ସେ ପୁରୁଣା କାଳିଆ ଲୋକ ! ଥରେ କେଉଁଠି ନିର୍ବନ୍ଧ ହୋଇ ସାରିଲା ପରେ, ସେଠି ପ୍ରସ୍ତାବ ଭାଙ୍ଗିଦେଇ ଅନ୍ୟ ପ୍ରସ୍ତାବରେ ଆଗେଇବାକୁ ସେ ଆଦୌ ସମ୍ମତ ହେବନାହିଁ ।'

ସଂଧ୍ୟା ଆଗରୁ ମୁଁ ମୋର କାର୍ଯ୍ୟସ୍ଥଳୀ ଜରପଡ଼ାକୁ ଫେରିଗଲି । ବିବାହ ପ୍ରସ୍ତାବ ସଂପର୍କରେ ପରେ ଅଧିକାରୀ ମହୋଦୟଙ୍କ ସହ ଡି.ଏଫ୍.ଓ. କଣ କଥାବାର୍ତ୍ତା ହେଲେ, ସେ ବିଷୟରେ ଅଧିକ ଜାଣିବାର ଅବକାଶ ମୋର ରହିଲା ନାହିଁ । ଏ ବିଷୟରେ ମୋତେ ମଧ୍ୟ ଡି.ଏଫ୍.ଓ.କେବେ କିଛି କହି ନାହାନ୍ତି । କିନ୍ତୁ ଏହା ପରଠାରୁ ମୁଁ ଲକ୍ଷ୍ୟ କରିଛି ମୋ' ସହିତ କଥାବାର୍ତ୍ତା ବେଳେ ସେ ସ୍ୱାଭାବିକତାଠାରୁ ଅଧିକ ଗାମ୍ଭୀର୍ଯ୍ୟ ରକ୍ଷା କରୁଥିଲେ ।

ସେପ୍ଟେମ୍ବର ମାସ ତୃତୀୟ ସପ୍ତାହରେ, ମୋର ଛଅମାସିଆ ରେଂଜ ଟ୍ରେନିଂ ସରିଗଲା ଏବଂ ଅନୁଗୁଳ ଡିଭିଜନ ସଦର ମହକୁମାକୁ ଏ.ସି.ଏଫ୍. ହିସାବରେ ବଦଳି ହେଲା । ଢେଙ୍କାନାଳରୁ ସମ୍ବଲପୁର ଯାଇଥିବା ୪୨ ନମ୍ବର ଜାତୀୟ ରାଜପଥ କଡ଼ରେ କ୍ୱାଟର୍ସଟିଏ ମଧ୍ୟ ମିଳିଗଲା । ସହର ଉପକଣ୍ଠରେ ଛୋଟ ଘରଟିଏ । ଅନତିଦୂରରେ କାଞ୍ଚନ ସିନେମାହଲ୍ । ପାଖରେ ବସ୍‌ଷ୍ଟାଣ୍ଡ ଓ ବହି ତଥା ପତ୍ରପତ୍ରିକାର ଦୋକାନଟିଏ । କ୍ୱାଟର୍ସଠାରୁ ଅଫିସ୍‌ର ଦୂରତା ପ୍ରାୟ ଦୁଇ ଫର୍ଲଙ୍ଗ ଭିତରେ ହେବ । ଦିନବେଳଟା ପ୍ରାୟ ଅଫିସ୍‌ରେ କଟିଯାଏ । ପ୍ରତିଦିନ ଅଫିସ୍ ଯିବା ଆଗରୁ ଅନୁଗୁଳର ପ୍ରତ୍ୟକ୍ଷ ଦେବୀ ମା' ବୁଢ଼ୀ ଠାକୁରାଣୀଙ୍କ ମନ୍ଦିରକୁ ଯାଇ ଦର୍ଶନ କରିବା ପ୍ରାୟ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଯାଇଥିଲା । ସଂଧ୍ୟାବେଳେ ଅଫିସ୍‌ରୁ ଫେରିଲେ ବେଳେ ବେଳେ ସିନେମା ଦେଖିବାକୁ ହଲ୍‌ରେ ପଶିଯାଏ । ବିଶେଷ କରି ଓଡ଼ିଆ ଚଳଚ୍ଚିତ୍ର ଚାଲୁଥିଲେ । ନଚେତ୍, ବସ୍‌ଷ୍ଟାଣ୍ଡ ବହି ଦୋକାନରେ ଓଡ଼ିଆ ପତ୍ରପତ୍ରିକା ପଢ଼ି ସମୟ କଟିଯାଏ ।

ସେ ସମୟରେ ଅନୁଗୁଳ ବନ ବିଭାଗର ପେଣ୍ଠସ୍ଥଳୀ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଟେରିଟୋରିଆଲ୍ କଞ୍ଜରଭେଟର ତଥା ଡିଭିଜନ୍ ଅଫିସ୍ ସାଙ୍ଗକୁ କେନ୍ଦୁପତ୍ର, ସିଲ୍‌ଭିକଲଚର୍, ୱାର୍କିଙ୍ଗ୍‌ପ୍ଲାନ୍, ରେଞ୍ଜରସ୍ କଲେଜ ଏବଂ ବନ ନିଗମର ଡିଭିଜନ୍ ଅଫିସ୍ ମଧ୍ୟ ସେଠାରେ ଥିଲା । ପୁରୁଣା ବାଉଁଶ କମ୍ପାନୀ ଅଫିସ୍ ମଧ୍ୟ ଥିଲା । ତେଣୁ ଅନେକ ଡି.ଏଫ୍.ଓ ଏବଂ ଏ.ସି.ଏଫ୍. ପଦବୀର ଅଫିସର୍ ଅନୁଗୁଳରେ ଅବସ୍ଥାନ କରୁଥିଲେ ।

କଦବା କ୍ୱଚିତ୍ ସମୟ ମିଳିଲେ, ମୁଁ ସେମାନଙ୍କ ଘରକୁ ଯାଉଥିଲି । ଅଥବା ବେଳେ ବେଳେ ସଂଧ୍ୟା ସମୟରେ ଜଣଙ୍କ ଘରେ ଏକତ୍ରିତ ହୋଇ ତାସ୍ ଖେଳର ଆସର ଜମୁଥିଲା ।

ସହକାରୀ ବନସଂରକ୍ଷକ ଥିବା ସମୟରେ ହିଁ ୧୯୭୯ ମସିହା ଜାନୁୟାରୀ ମାସ ୨୫ ତାରିଖରେ ମୋର ବିଭାଘର ସଂପନ୍ନ ହୋଇଥିଲା । ଟ୍ରେନିଂ ପିରିୟଡ୍ ଥିବାରୁ ମୋତେ ବେଶୀ ଦିନ ଛୁଟି ମିଳିନଥିଲା । ମାତ୍ର ଆଠଦିନ ଛୁଟି ନେଇ ବାହାହେବାକୁ ମୁଁ ଗାଁକୁ ଯାଇଥିଲି । ଯିବାବେଳେ ଡି.ଏଫ୍.ଓଙ୍କୁ ନିମନ୍ତ୍ରଣ କାର୍ଡ ଦେଇ ବାରମ୍ବାର ଅନୁରୋଧ ଜଣାଇଥିଲି, ସେ ଯେପରି ନିଶ୍ଚିତ ଭାବେ କଟକଠାରେ ବରଯାତ୍ରୀ ଭାବରେ ଯୋଗଦେବେ ଏବଂ ଚତୁର୍ଥୀ ଦିନ ଆମ ଗାଁରେ ଭୋଜିରେ ମଧ୍ୟ ସାମିଲ୍ ହେବେ । ଅନୁଗୁଳରେ ଥିବା ଚାରି ପାଞ୍ଚ ଜଣ ଏ.ସି.ଏଫ୍.ମଧ୍ୟ ବିବାହ ଉତ୍ସବରେ ଯୋଗଦେବା ପାଇଁ ଆମ ଗାଁରେ ପହଞ୍ଚିବେ ବୋଲି ସମ୍ମତି ପ୍ରଦାନ କରିଥିଲେ । ସେମାନେ ଚାହୁଁଥିଲେ ଡି.ଏଫ୍.ଓ ଦ୍ୱିତୀୟ ଜିପ୍‌ଟି ସେମାନଙ୍କୁ ଦେଇଦେଲେ, ସମସ୍ତେ ମିଶିକରି ଯିବେ ।

ପ୍ରକାଶ ଥାଉକି, ସେତେବେଳେ ଅନୁଗୁଳ ଡିଭିଜନ୍‌ରେ ଦୁଇଟି ଜିପ୍ ଥିଲା । ଗୋଟିଏ ଡି.ଏଫ୍.ଓ. ଚଢନ୍ତି । ଅନ୍ୟଟି ମୋବାଇଲ୍ ଡ୍ୟୁଟିରେ ଲାଗେ । ମୁଁ ଡି.ଏଫ୍.ଓଙ୍କୁ ଜିପ୍‌ଟି ଦେବାକୁ ଅନୁରୋଧ କରିବାରୁ ସେ ତତ୍‌କ୍ଷଣାତ୍ ରାଜି ହୋଇଯାଇଥିଲେ ।

ଘରେ ବିବାହ କାର୍ଯ୍ୟର ଦାୟିତ୍ୱ ତୁଲାଇବାକୁ ମୁଁ ଏକା କହିଲେ ଚଳେ । ୧୯୭୩ ମସିହାରୁ ବାପାଙ୍କର ଦେହାନ୍ତ ହୋଇସାରିଥାଏ । ଘରେ ବିଧବା ମା' । ମୋ ତଳକୁ ଦୁଇ ଭଉଣୀ ଏବଂ ସେମାନଙ୍କ ତଳକୁ ସାନ ଭାଇ ଦୁଇଜଣ । ସେତେବେଳେ ଭାଇମାନେ ସ୍କୁଲରେ ପଢୁଥାନ୍ତି । ବୟସରେ ମୋଠାରୁ ବହୁତ ଛୋଟ । ତେଣୁ ବିଭାଘର ସରଂଜାମ ଯୋଗାଡ କରିବାଠୁଁ ଆରମ୍ଭ କରି, ବରଯାତ୍ରୀମାନଙ୍କର ବ୍ୟବସ୍ଥା, ବାଜା, ଲାଇଟ୍, କାର ଯୋଗାଡ଼ ସବୁ ଦାୟିତ୍ୱ ମୋ ଉପରେ । ସ୍କୁଲ୍ ଓ କଲେଜ ପଢ଼ିଲା ବେଳର ଅନେକ ସାଙ୍ଗ, ସେ ସମୟରେ ମୋତେ ବହୁତ ସାହାଯ୍ୟ କରିଛନ୍ତି ।

ସେହିପରି ଭୋଜି ଦିନ ମାଛ କେଉଁଠୁ ଆସିବ, ପରିବାପତ୍ର କେଉଁଠୁ ଆସିବ, ରୋଷେୟା କିଏ, ହଣ୍ଡା, ହାଣ୍ଡି, ଡେକ୍‌ଚି, ବାଲ୍‌ଟି ଗାଁର କାହା କାହା ଘରୁ ମଗାହୋଇ ଆସିବ, କେଉଁଠୁ ସାମିଆନା ଆସି ଛାମୁଣ୍ଡିଆ ବନ୍ଧା ହେବ । କିପରି ଖୋର୍ଦ୍ଧା ପ୍ରାଣନାଥ କଲେଜରୁ ବେଞ୍ଚ, ଡେସ୍କ ଆସିବ, ଲୋକେ ବସିକରି ଖାଇବା ପାଇଁ ଏ ସମସ୍ତ ଯୋଗାଡ଼ରେ ବ୍ୟସ୍ତ ରହି ମୁଁ ଧନ୍ଦି ହୋଇଯାଉଥାଏ । ଆଜିକାଲି ପରି ସେତେବେଳେ

ଟେଷ୍ଟ ହାଉସ୍ ନଥାଏ, ଯେଉଁଠି ପଇସା ଦେଲେ ସବୁଜିନିଷ ମିଳିଯିବ । ଖୋର୍ଦ୍ଧାର ତତ୍‌କାଳୀନ ଡି.ଏଫ୍.ଓ ଶ୍ରୀଯୁକ୍ତ ଦାନୀ, ତାଙ୍କର ଷ୍ଟାଫ୍‌ମାନଙ୍କୁ ପଠାଇ ମୋତେ ସାହାଯ୍ୟ ସହଯୋଗ କରୁଥାନ୍ତି । ପ୍ରକାଶ ଥାଉକି ସାହାଯ୍ୟ ପାଇଁ ମୁଁ ଦାନୀ ସାହେବଙ୍କୁ ଅନୁରୋଧ ମଧ୍ୟ କରି ନଥିଲି । କିନ୍ତୁ ମୋର ଅସୁବିଧା ସମୟରେ, ତାଙ୍କର ଏ ଅଯାଚିତ ସାହାଯ୍ୟ, ଏବେ ବି ମୋ ମାନସପଟରେ ଉଜ୍ଜୀବିତ ରହିଛି । ଅଥଚ ମୋର ନିଜ ଡି.ଏଫ୍.ଓ. ବା ସହକର୍ମୀ ଏ.ସି.ଏଫ୍ କେହି ଭୋଜିକୁ ଆସିଲେ ନାହିଁ ।

ବିବାହ ପାଇଁ ମିଳିଥିବା ସ୍ୱଳ୍ପ ଦିନର ଛୁଟି ସରିଯିବାରୁ ମୁଁ ମୋର କର୍ମସ୍ଥଳୀ ଅନୁଗୁଳକୁ ଫେରି ଆସିଲି । ମନରେ ଅନେକ କ୍ଷୋଭ, କ'ଣ ଏପରି ବାଧ୍ୟ ବାଧକତା ଥାଇପାରେ, ଯାହା ମୋର ଡି.ଏଫ୍.ଓଙ୍କୁ ବିବାହ ଉତ୍ସବରେ ସାମିଲ୍ ହେବାରୁ ନିବର୍ତ୍ତାଇଲା, ଏହା ସ୍ୱାଭାବିକ ଈର୍ଷା, ଅସହିଷ୍ଣୁତା ନା ଅନ୍ୟ କିଛି । ଅନୁଗୁଳ ଫେରିଲା ପରେ ଶୁଣିଲି, କାଳେ ମୋର ବିବାହ ଉତ୍ସବରେ ଯୋଗଦେଲେ, ବନ ବିଭାଗର ସର୍ବୋଚ୍ଚ ଅଧିକାରୀ ମହୋଦୟ ଖପ୍‌ପା ହେବେ, ସେଥିପାଇଁ ଡି.ଏଫ୍.ଓ ମହାଶୟ, ପୁରୁଣା କଟକ ଦେଇ, ଟିକରପଡ଼ାଠାରେ ମହାନଦୀ ପାର ହୋଇ, ବୌଦ ବାଟରେ ସେଦିନ ବ୍ରହ୍ମପୁର ଚାଲିଯାଇଥିଲେ । କାରଣ ଏପଟେ ଭୁବନେଶ୍ୱର ଦେଇ ଗଲେ ଆମ ଗାଁ ମୁକୁନ୍ଦ ପ୍ରସାଦ ଓ ଖୋର୍ଦ୍ଧା ପଡିବ । ପ୍ରତିଶ୍ରୁତି ମୁତାବକ ଏ.ସି.ଏଫ୍.ମାନଙ୍କୁ ଅନ୍ୟ ଜିପ୍‌ଟି ମଧ୍ୟ ଦେଲେ ନାହିଁ । ଫଳରେ ସେମାନେ କେହି ମୋର ବିବାହ ଉତ୍ସବରେ ଯୋଗ ଦେଇ ପାରିଲେ ନାହିଁ ।

ଭାରତୀୟ ବନ ସେବାର ଅୟମାରମ୍ଭ ୧୯୬୮ ମସିହାରୁ ହୋଇଥିଲା । ପ୍ରାରମ୍ଭିକ ପର୍ଯ୍ୟାୟରେ ରାଜ୍ୟ ବନ ସେବାରେ କେତେକ ଅଧିକାରୀଙ୍କୁ ଭାରତୀୟ ବନ ସେବାରେ ନିଯୁକ୍ତି ମିଳିଥିଲା । କେତେକ ଅଫିସର୍ ଯଥାରୀତି ପ୍ରମୋଶନ୍ ପାଇଥିଲେ । କିନ୍ତୁ ସିଧାସଳଖ ନିଯୁକ୍ତି ପାଇ ଓଡ଼ିଶା କ୍ୟାଡର ବନସେବାକୁ ପ୍ରଥମେ ଜଣେ ଅଫିସର ଆସିଥିଲେ ୧୯୭୧ ମସିହାରେ ଏବଂ ୧୯୭୨ ରେ ଅନ୍ୟ ଜଣେ ଆସିଥିଲେ । ୧୯୭୩ରେ କୌଣସି ଅଫିସର୍ ନଥିଲେ । ୧୯୭୪ରେ ଜଣେ ଏବଂ ୧୯୭୫ମସିହାରେ ମୁଁ ଏବଂ ରାଜସ୍ଥାନର ଅନ୍ୟଜଣେ ଅଫିସରଙ୍କୁ ଓଡ଼ିଶା କ୍ୟାଡର ମିଳିଥିଲା । ବସ୍ତୁତଃ କହିବାକୁ ଗଲେ, ଆମେ ଓଡ଼ିଶାରେ ଜଏନ୍ କଲାବେଳକୁ, ଆମ ଉପରେ ସିଧାସଳଖ ଭାରତୀୟ ବନସେବାରୁ ନିଯୁକ୍ତି ପାଇଥିବା ଅଫିସର୍ ମାତ୍ର ୩ଜଣ ଥିଲେ । ତେଣୁ ସେ ସମୟରେ ଆମ ପାଞ୍ଚଜଣଙ୍କୁ ଏକ ଅନ୍ୟ ଗ୍ରହର ମନୁଷ୍ୟ ଭଳି ଭିନ୍ନ ଦୃଷ୍ଟିରେ ଦେଖାଯାଉଥିଲା ।

ଆଇ.ଏଫ୍.ଏସ୍ ପ୍ରୋବେସନରମାନଙ୍କୁ ମିଳିବାକୁ ଥିବା ସାଧାରଣ ସୁବିଧା ସୁଯୋଗରୁ ମଧ୍ୟ ଆମମାନଙ୍କୁ ସମୟ ସମୟରେ ବଂଚିତ କରାଯାଉଥିଲା ।

ବିବାହର ପ୍ରାୟ ମାସକ ପରେ ଅର୍ଥାତ୍ ଫେବୃୟାରୀ ମାସର ତୃତୀୟ ସପ୍ତାହରେ, ମୁଁ ପତ୍ନୀଙ୍କୁ ଅନୁଗୁଳ ନେଇ ଆସିଲି । ସେ ସମୟରେ ଅନୁଗୁଳଠାରେ ଉଭୟ ଡି.ଏଫ୍.ଓ ଏବଂ ଏ.ସି.ଏଫ୍ ପଦବୀରେ ବନ ବିଭାଗ ଓ ବନ ନିଗମର ଅନେକ ପଦସ୍ଥ ଅଫିସର୍ ରହୁଥିଲେ । କଟକ ଓ ସମ୍ବଲପୁର ପରି ଅନୁଗୁଳରେ ମଧ୍ୟ ବନ ବିଭାଗ ଅଫିସରଙ୍କର ଯଥେଷ୍ଟ ପ୍ରାଧାନ୍ୟ ଥିଲା ।

ସାଧାରଣତଃ ଚାକିରିର ଚାରିବର୍ଷ ପୂରିଗଲେ, ସର୍ବଭାରତୀୟ ସେବାରେ ଅଫିସରମାନଙ୍କୁ ସିନିୟର ସ୍କେଲ୍ ମିଳିଯାଉଥିଲା ଏବଂ ସ୍ୱାଧୀନ ଦାୟିତ୍ୱ ମଧ୍ୟ ମିଳୁଥିଲା । ଭାରତୀୟ ବନ ସେବାରେ ଆମ ଉପର ବ୍ୟାଚ୍‌ର ଅଫିସର (୧୯୭୪) ଶ୍ରୀଯୁକ୍ତ ମହାନ୍ତି ସେତେବେଳେ ରାୟଗଡ଼ା ଡିଭିଜନ୍‌ର ଡି.ଏଫ୍.ଓ. ଭାବରେ ନିଯୁକ୍ତି ପାଇ ସାରିଥାନ୍ତି । ମୁଁ ଭାବୁଥିଲି, ୧୯୭୯ ମାର୍ଚ୍ଚ୍ ମାସ ବେଳକୁ ମୋର ଚାରିବର୍ଷ ପୂରିଯାଉଥିବାରୁ ଡିଭିଜନ ପୋଷ୍ଟିଙ୍ଗ୍ ମିଳିଯିବ । ସେତେବେଳେ ରହିବା ପାଇଁ ଭଲ ବଙ୍ଗଳା ମିଳିବ । ଗସ୍ତ ପାଇଁ ସରକାରୀ ଜିପ୍ ମିଳିବ । ବୋଲହାକ କରିବାକୁ ଅର୍ଦ୍ଦଳୀ ମିଳିବେ । ଜଙ୍ଗଲ ବିଭାଗର ଅଫିସର୍‌ମାନେ ସେତେବେଳେ ବଡ ଆଡ଼୍‌ଡାରେ ଚଳୁଥିଲେ । ତେଣୁ ନୂଆ ବାହା ହୋଇଥିବା ମୁଁ ଓ ମୋର ସ୍ତ୍ରୀଙ୍କ ମନରେ ମଧ୍ୟ ସେହି ସୁଖକର ଜୀବନ ଯାପନ ପାଇଁ ଆଶାଟିଏ ଅଙ୍କୁରିବା ସ୍ୱାଭାବିକ କଥା । କିନ୍ତୁ କିଛି ଦିନ ପରେ ଆମର ଏହି ଆଶା, ଆଶାରେ ହିଁ ରହିଗଲା । କଳ୍ପନା ବିଳାସ, ତାସର ଘର ପରି ଭୁଶୁଡି ଗଲା ।

ଫେବୃୟାରୀ ମାସ ଶେଷ ବେଳକୁ ସହକାରୀ ୱର୍କିଙ୍ଗପ୍ଲାନ୍ ଅଫିସର୍ ହିସାବରେ ମୋର ବାରିପଦାକୁ ବଦଳି ହେଲା । ବସ୍‌ରେ ଯିବାକୁ ହେଲେ, ଅନୁଗୁଳରୁ କଟକ ଆସି ସେଠୁ ବାରିପଦା ବସ୍ ଧରି ଯିବାକୁ ହୁଏ । ଦୂରତା ୩୦୦ କିଲୋମିଟରରୁ ଉର୍ଦ୍ଧ୍ୱ ହେବ । ଅଥଚ ମୋ ବ୍ୟାଚ୍‌ର ଅନ୍ୟ ଜଣେ ସହକର୍ମୀ ଶ୍ରୀଯୁକ୍ତ ବନ୍‌ସଲଙ୍କୁ ଖଡିଆଳ ଟେରିଟୋରିଆଲ୍ ଡିଭିଜନ୍‌ର ଚାର୍ଯ ଦିଆଯାଇ ବଦଳି କରାଯାଇଥାଏ । ତାଙ୍କର ପୋଷ୍ଟିଙ୍ଗ୍ ଅର୍ଡର ଅଲଗା ବାହାରିଥିବାରୁ, ପ୍ରଥମେ ମୁଁ ଏହା ଜାଣି ପାରିନଥିଲି । ପରେ କଟକ ଚିଫ୍ କଞ୍ଜରଭେଟରଙ୍କ ଅଫିସରେ ଅନ୍ୟମାନଙ୍କ ସହ କଥାବାର୍ତ୍ତା କରିବା ଅବକାଶରେ ଜାଣିବାକୁ ପାଇଲି । ମୋ ପ୍ରତି ଏଭଳି ପାତର ଅନ୍ତର ନୀତି ସେତେବେଳେ ମନରେ ଗଭୀର ଆଘାତ ଦେଇଥିଲା ।

ପ୍ରଚଳିତ ବ୍ୟବସ୍ଥା ଅନୁଯାୟୀ ଗୋଟିଏ ବ୍ୟାଚ୍‌ର ସମସ୍ତ ଅଫିସର୍‌ଙ୍କୁ ଏକ ସଂଗରେ ପ୍ରମୋସନ୍ ବା ସ୍ୱାଧୀନ ଦାୟିତ୍ୱ ଦିଆଯିବା କଥା । ଆଇ.ଏ.ଏସ୍.ଏବଂ ଆଇ.ପି.ଏସ୍ ଚାକିରୀରେ ମଧ୍ୟ ଏହି ନିୟମ ଅନୁସୃତ ହୋଇଥାଏ । ଆମ ବ୍ୟାଚ୍‌ରେ ଆମେ ମାତ୍ର ଦୁଇଜଣ ଅଫିସର୍ ଥିଲୁ । ତା ଛଡ଼ା ସେ ପର୍ଯ୍ୟନ୍ତ ଆମ ଦୁହିଁଙ୍କ ମଧ୍ୟରେ ବରିଷ୍ଠତା ମଧ୍ୟ ସ୍ଥିରୀକୃତ ହୋଇ ନଥାଏ । ଭାରତୀୟ ବନସେବା ଅଧିକାରୀମାନଙ୍କର ଯୋଗ୍ୟତା ଭିତ୍ତିକ କ୍ରମ ଅର୍ଥାତ୍ ବରିଷ୍ଠତା, ସେମାନେ ଲୋକସେବା ଆୟୋଗ ପରିଚାଳିତ ପରୀକ୍ଷାରେ ରଖିଥିବା ମାର୍କ, ଡେରାଡୁନ୍ ଫରେଷ୍ଟ କଲେଜରେ ଟ୍ରେନିଂ ସମୟରେ ହାସଲ କରିଥିବା ମାର୍କ ଓ ମସୌରୀଠାରେ ପ୍ରଶାସନିକ ଟ୍ରେନିଂରେ ପାଇଥିବା ମାର୍କକୁ ବିଚାରକୁ ନେଇ କରାଯାଇଥାଏ ।

ବାରିପଦାକୁ ବଦଳି ଅର୍ଡର ପାଇବାପରେ ମୁଁ ସ୍ତ୍ରୀଙ୍କୁ ନେଇ କଟକରେ ତାଙ୍କ ବାପଘରେ ଛାଡ଼ି ଆସିଲି । ମୋର ଅନ୍ୟ ଜଣେ ସହକର୍ମୀ ଏ.ସି.ଏଫ୍. ଶ୍ରୀଯୁକ୍ତ ବଳଭଦ୍ର ଦାସ ମୋତେ ଅନୁଗୁଳଠାରୁ ଜିପ୍‌ରେ ନେଇ, କେନ୍ଦୁଝର ଓ ଯଶୀପୁର ବାଟଦେଇ ବାରିପଦାଠାରେ ଛାଡ଼ିଥିଲେ । ସେତେବେଳେ ବାରିପଦାରେ ଡି.ଏଫ.ଓ. ଥିଲେ ଶ୍ରୀଯୁକ୍ତ ଭାସ୍କର ଚନ୍ଦ୍ର ମହାପାତ୍ର । ପରେ ସେ ପ୍ରଧାନ ମୁଖ୍ୟ ବନସଂରକ୍ଷକ ପଦକୁ ଉନ୍ନୀତ ହୋଇ ଅବସର ନେଲେ । ତାଙ୍କ ଦୟାରୁ ଅଫିସ୍‌ଠାରୁ ଦୁଇ କିଲୋମିଟର ଦୂରରେ ସହର ଉପକଣ୍ଠରେ ଜୀବନ ବିମା ନିଗମର କ୍ୱାର୍ଟସଟିଏ ମିଳିଗଲା । ସାଙ୍ଗରେ ପିଅନଟିଏ ଅନୁଗୁଳରୁ ଯାଇଥାଏ, ରୋଷେଇବାସ କରିଦେବାପାଇଁ । ଦିନ ସାଢ଼େ ଦଶଟା ବେଳକୁ ମୁଁ ଏକାଥରକେ ଗଣ୍ଡେ ଖାଇଦେଇ ଚାଲିଚାଲି ଅଫିସ୍‌କୁ ଯାଏ ଏବଂ ସେଠି ଅପରାହ୍ଣ ସାଢ଼େଚାରିଟା ପର୍ଯ୍ୟନ୍ତ ଡି.ଏଫ୍.ଓ. କିମ୍ବା ଏସ.ଡି.ଏଫ୍. ଧଳବାବୁଙ୍କ ରୁମରେ ସମୟ କଟାଇ ଏକା ଥରକେ ବସାକୁ ଫେରେ ।

ବାରିପଦାରେ ସହକାରୀ ୱାର୍କିଙ୍ଗ ପ୍ଲାନ୍ ଅଫିସରେ ମୋର କାମ କରିବା ଅନୁଭୂତି ବେଶ୍ ନିଆରା । ମୁଁ ବାରିପଦାରେ ଜଏନ୍ କଲାବେଳକୁ ସେଠାରେ ଥିବା ୱର୍କିଙ୍ଗ୍ ପ୍ଲାନ ଅଫିସ୍ ୟୁନିଟ୍‌ଟି ଅନୁଗୁଳକୁ ଉଠିଯାଇଥାଏ । କାରଣ ବାରିପଦାଠାରେ ଏ ସଂକ୍ରାନ୍ତୀୟ ସମସ୍ତ କାମ ଶେଷ ହୋଇଥାଏ । ତେଣୁ ଷ୍ଟାଫ୍ କହିଲେ, ମାତ୍ର ମୁଁ ଜଣେ । ଅଫିସ୍ ନଥାଏ, କି ମୋତେ ଆନୁସଂଗିକ ସାହାଯ୍ୟ କରିବାକୁ ଆଉ କେହି ନଥାନ୍ତି । ଦ୍ୱିତୀୟରେ ମୋର ପୋଷ୍ଟିଂ ଥାଏ, ଅନୁଗୁଳସ୍ଥିତ ୱାର୍କିଙ୍ଗ୍‌ପ୍ଲାନ୍ ଅଫିସର୍‌ଙ୍କ ଅଧୀନରେ । ଯଦିଓ ମୋର ସଦର କାର୍ଯ୍ୟାଳୟ ନିର୍ଦ୍ଧାରିତ ହୋଇଥାଏ ବାରିପଦା ଏବଂ ମୋର ଉପରିସ୍ଥ ୱାର୍କିଙ୍ଗ୍ ପ୍ଲାନ ଅଫିସର୍ ଶ୍ରୀଯୁକ୍ତ ରଙ୍ଗାଧର ମିଶ୍ର, ସେତେବେଳେ ସହକାରୀ ମୁଖ୍ୟ ବନ ସଂରକ୍ଷକ ଭାବରେ ଅତିରିକ୍ତ

ଦାୟିତ୍ୱ ନେଇ କଟକରେ ରହୁଥାନ୍ତି । କାରଣ ସେତେବେଳେ ଜଙ୍ଗଲ ବିଭାଗର ମୁଖ୍ୟ କାର୍ଯ୍ୟାଳୟ କଟକଠାରେ ଥାଏ । ବାରିପଦା ୱର୍କିଙ୍ଗପ୍ଲାନ୍ ଦେଖିବା ଦାୟିତ୍ୱ ବନ ସମ୍ପଳ ସର୍ବେକ୍ଷଣ ଅଫିସର୍ ଶ୍ରୀଯୁକ୍ତ ବୋଷ୍‌ଙ୍କ ଉପରେ ନ୍ୟସ୍ତ ଥାଏ । ଏହାର ଅର୍ଥହେଲା, ମୁଁ ଶ୍ରୀଯୁକ୍ତ ବୋଷ୍‌ଙ୍କ ନିର୍ଦ୍ଦେଶ ବା ତତ୍ତ୍ୱାବଧାନରେ କାମ କରିବି । ଦରମା ଆଣିବା ପାଇଁ ବାରିପଦାରୁ କଟକ ଯିବି । ସେଠୁ ସହକାରୀ ମୁଖ୍ୟ ବନସଂରକ୍ଷକ ଶ୍ରୀଯୁକ୍ତ ମିଶ୍ରଙ୍କ ଠାରୁ ଚିଠା ନେଇ ଅନୁଗୁଳ ଅଫିସ୍‌କୁ ଗଲେ ଦରମା ମିଳିବ । ନୂତନ ପୀଢ଼ିର ଯୁବ ଅଫିସରମାନଙ୍କୁ ଟ୍ରେନିଂ ଦେବା ପାଇଁ ଏହା ଏକ ଚମତ୍କାର ବନ୍ଦୋବସ୍ତ !

ବାରିପଦାଠାରେ ସେତେବେଳେ ମୋ ପାଇଁ କୌଣସି ନିର୍ଦ୍ଦିଷ୍ଟ କାମ ନଥାଏ । ଡି.ଏଫ୍.ଓ.ଙ୍କ ସହିତ ମିଶି ବେଳେ ବେଳେ ଡିଭିଜନ କାର୍ଯ୍ୟାବଳୀ ଅଧ୍ୟୟନ କରେ । ସେତେବେଳେ ବାରିପଦାଠାରେ ଶିମିଳିପାଳ ବନଉନ୍ନୟନ ନିଗମ ପ୍ରତିଷ୍ଠା ପାଇଁ ଉଦ୍ୟମ ହେଉଥାଏ । ସେ କାର୍ଯ୍ୟରେ ମୁଁ କିଛିଟା ସହଯୋଗ କରୁଥିଲି । ବାରିପଦା ଡିଭିଜନ ସେତେବେଳେ ଅନୁଗୁଳ ବନମଣ୍ଡଳ ଅଧୀନରେ ଥାଏ । ପୂର୍ବତନ ବନସଂରକ୍ଷକ ଶ୍ରୀଯୁକ୍ତ ବିହାରୀ ଲାଲ ଦାସ (ଏବେ ସ୍ୱର୍ଗତଃ)ଙ୍କ ଅନ୍ୟତ୍ର ବଦଳି ପରେ, ଅନୁଗୁଳ ବନମଣ୍ଡଳର ବନ ସଂରକ୍ଷକ ଭାବରେ ଶ୍ରୀଯୁକ୍ତ ମହାନ୍ତି ଦାୟିତ୍ୱ ନେଇଥିଲେ । ଥରେ ସେ ବାରିପଦା ଗସ୍ତରେ ଆସିଥିବା ବେଳେ ମୋତେ କାହିଁକି ଡିଭିଜନ ଦାୟିତ୍ୱ ମିଳୁନାହିଁ ବୋଲି ଅନ୍ୟମାନେ ପଚାରିବାରୁ ସେ ହସିଦେଇ କହିଥିଲେ, ଡିଭିଜନ୍ ଦାୟିତ୍ୱ ନେବାପାଇଁ ମୁଁ କୁଆଡେ ଉପଯୁକ୍ତ ହୋଇନାହିଁ । କିନ୍ତୁ ଅନ୍ତରାଳରେ ଥିବା ପ୍ରକୃତ କଥାଟି ହେଉଛି, ସର୍ବୋଚ୍ଚ ଅଧିକାରୀଙ୍କ ଝିଅ ସହିତ ବିବାହ ପ୍ରସ୍ତାବରେ ରାଜି ନ ହେବାର ଏହା ହେଉଛି, ସାମୟିକ ପରିଣତି । କେତେକ ବନ୍ଧୁ ପରୋକ୍ଷରେ ଲଘୁମନ୍ତବ୍ୟ ଦେବାକୁ ପଛେଇ ନାହାନ୍ତି 'ବାହା ହେବନିତ ପ୍ରମୋସନ ବନ୍ଦ !'

ସେହିବର୍ଷ ସେପ୍ଟେମ୍ବର ମାସ ତୃତୀୟ ସପ୍ତାହରେ ମୁଁ କୋରାପୁଟ ଜିଲ୍ଲା ନବରଂପୁର ବନଖଣ୍ଡର ଦାୟିତ୍ୱ ନେବାପାଇଁ ସରକାରୀ ବିଜ୍ଞପ୍ତି ବାହାରିଲା । ପରେ ଶୁଣିବାକୁ ପାଇଲି; ଏ ଭିତରେ ଭାରତ ସରକାରଙ୍କ ଠାରୁ ଆମ ବ୍ୟାଚ୍‌ର ଦୁଇଜଣ ଅଫିସରଙ୍କର ଯୋଗ୍ୟତା ଭିତ୍ତିକ ବରିଷ୍ଠତା କ୍ରମ ତାଲିକା ଆସି ସାରିଛି । ସେଥିରେ ମୁଁ ସିନିୟର ବା ବରିଷ୍ଠ ବୋଲି ଦର୍ଶାଯାଇଛି । ତେଣୁ ମୋତେ ବନଖଣ୍ଡର ଦାୟିତ୍ୱ ଦେବା ଅନିବାର୍ଯ୍ୟ ହୋଇ ପଡ଼ିଲା ।



# ହନୁ ଶୋଷରେ ସତ କହିଲା



ଡେରାଡୁନ୍‌ଠାରେ ଦୁଇବର୍ଷ ଫରେଷ୍ଟ୍ରି ଟ୍ରେନିଙ୍ଗ୍ ନେଇ ସାରିଲା ପରେ, ଆମକୁ ମସୌରୀସ୍ଥିତ ଲାଲ୍‌ବାହାଦୂର ଶାସ୍ତ୍ରୀ ଜାତୀୟ ଏକାଡେମୀରେ ଚାରିମାସ ସ୍ୟାଣ୍ଡୱଇଚ୍ ଅର୍ଥାତ୍ ଫେଣ୍ଡାଫେଣ୍ଟି ଟ୍ରେନିଂ ନେବାକୁ ପଡ଼େ । ଏ ସମୟରେ ଭାରତୀୟ ପ୍ରଶାସନିକ ସେବା, ଭାରତୀୟ ପୁଲିସ୍ ସେବା ଓ ଭାରତୀୟ ବନସେବା ସମେତ ଇନକମ୍ ଟ୍ୟାକ୍ସ, କଷ୍ଟମ୍‌ସ, ପୋଷ୍ଟାଲ, ରେଲୱେ, ସେଣ୍ଟ୍ରାଲ ସର୍ଭିସେସ୍‌ର ଅଫିସରମାନେ ମିଳିତଭାବେ ଟ୍ରେନିଙ୍ଗ୍ ନେଇଥାନ୍ତି । ମସୌରୀଠାରେ ଟ୍ରେନିଂ ନେଉଥିବା ଅବସରରେ ମୋର ଜଣେ ଘନିଷ୍ଠ ଆଇ.ଏ.ଏସ୍. ବନ୍ଧୁ ପଚାରିଲେ, 'ଆପଣଙ୍କର ବିବାହ କେଉଁଠି ଠିକ୍ ହୋଇସାରିଛି ନା କାହିଁ ?' ମୁଁ ନାହିଁ କରନ୍ତେ ବନ୍ଧୁ ଜଣକ ପରାମର୍ଶ ଦେଇଥିଲେ, ଟ୍ରେନିଂ ସାରି ଆପର ନିଜ ରାଜ୍ୟକୁ ଫେରିଗଲା ପରେ ପଛରେ ଥରେ 'ଆଇ' ଲାଗିଗଲେ, ପିମ୍ପୁଡ଼ି ପରି କନ୍ୟାପିତାଙ୍କର ଧାଡ଼ି ଲାଗିବ କହିଲେ ଅତ୍ୟୁକ୍ତି ହେବନାହିଁ । ସେତେବେଳେ ମୁଁ ବନ୍ଧୁଙ୍କର କଥାକୁ ଏତେଟା ଗୁରୁତ୍ୱ ଦେଉନଥିଲି ।

ପ୍ରକୃତରେ ଟ୍ରେନିଂ ଶେଷ କରି ଓଡ଼ିଶା ଫେରିଆସି ଚାକିରିରେ ଜଏନ୍ କଲାପରେ, ମୁଁ ବନ୍ଧୁଙ୍କ କଥାର ବାସ୍ତବିକତା ଅନୁଭବ କଲି । ଏଥିପୂର୍ବରୁ ବନ ବିଭାଗର ଶାସନ ସଚିବଙ୍କ ଝିଅ ସହିତ ବିବାହ ପ୍ରସ୍ତାବ ସଂପର୍କରେ ଗୋଟିଏ ଘଟଣା ଘଟିଯାଇଥାଏ । ସେହିପରି ଅନ୍ୟ ଗୋଟିଏ ଦୁଇଟି ପ୍ରସଂଗ ସଂପର୍କରେ ଏଠି ସୂଚନା ଦିଆଯାଇପାରେ ।

ଅନୁଗୁଳ ଫରେଷ୍ଟ ଡିଭିଜନ୍ ଅଧୀନରେ ଜରପଡାଠାର ରେଞ୍ଜ ଟ୍ରେନିଂ ନେଉଥିବା ସମୟରେ ମୁଁ ଏକଦା ଗାଁକୁ ଆସିଥାଏ । ଖୋର୍ଦ୍ଧ ନିକଟସ୍ଥ 'ମୁକୁନ୍ଦପ୍ରସାଦ' ଆମ ଗାଁ । ମୋର ଜଣେ ଦାଦା ଝିଅ ବଡ଼ ଭଉଣୀ, ଯିଏ କି ବହୁ ଆଗରୁ ବିବାହ କରି ସାରିଥାଏ, ସେ ଗୋଟିଏ ବିବାହ ପ୍ରସ୍ତାବ ନେଇ ଗାଁରେ ପହଁଞ୍ଚିଲା । ତା' ବର ଜଣେ ଓ.ଏ.ସ୍. ଅଫିସର୍ । ତାଙ୍କର ଜଣେ ସିନିୟର ଅଫିସର୍, ଯିଏକି ନିକଟରେ ଆଇ.ଏ.ଏସ୍. ପାଇଥାନ୍ତି, ତାଙ୍କ ଝିଅପାଇଁ ପ୍ରସ୍ତାବ । କନ୍ୟାପିତା ସେତେବେଳେ କଟକ ଡେଭଲେପମେଣ୍ଟ ଅଥରିଟିରେ ଉପାଧ୍ୟକ୍ଷ ଥାଆନ୍ତି । ବିବାହ ପ୍ରସ୍ତାବ ପକେଇବା ସଂଗେ ସଂଗେ ମୋ ଦାଦାଝିଅ ଭଉଣୀ ଜଣେଇଦେଲା ଯେ ସେମାନେ ବିବାହ ବେଳକୁ ଝିଅକୁ ତିରିଶି ଭରି ସୁନା ଦେବେ ଏବଂ ଗୋଟିଏ ନୂଆ କାର ମଧ୍ୟ ଜୋଇଁକୁ ଦେବେ । ସେ ସମୟରେ ମୋର ବିବାହ ପ୍ରସ୍ତାବ, କଟକ ଦୋଳମୁଣ୍ଡେଇସ୍ଥିତ , ବୁର୍ଲା ମେଡ଼ିକାଲ କଲେଜ୍‌ରୁ ଅବସରପ୍ରାପ୍ତ ଜୟକୃଷ୍ଣ ମହାନ୍ତିଙ୍କ ଝିଅ ସହିତ ସ୍ଥିର ହୋଇ ନିର୍ବନ୍ଧ ସରିଥାଏ । ବୋଉ ତେଣୁ ରୋକ୍‌ଠୋକ୍ ପ୍ରସ୍ତାବଟିକୁ ନାକଚ କରିଦେଲା ।

ଏହାର କିଛିଦିନ ପରେ, ମୁଁ ଜରପଡ଼ା ରେଞ୍ଜ ଅଫିସର୍ ଗୃହରେ ବସି କାମ କରୁଥାଏ । ଦିନ ପ୍ରାୟ ସାଢ଼େ ଦଶଟା ବା ଏଗାରଟା ହେବ । ଗୋଟିଏ ଧଳା ଆମ୍ବାସେଡ଼ର କାର ଅଫିସ୍ କମ୍ପାଉଣ୍ଡରେ ପଶି ବାରଣ୍ଡା ନିକଟରେ ଲାଗିଲା । ଜଣେ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା କାର୍‌ରୁ ଓହ୍ଲାଇ ମୋ ଅଫିସ୍ ଭିତରକୁ ପିଶିଲେ । ମୁଁ ସେମାନଙ୍କୁ ବସିବାକୁ ଅନୁରୋଧ କରି ଜିଜ୍ଞାସା ଦୃଷ୍ଟିରେ ଚାହିଁବାରୁ, ଭଦ୍ରମହିଳା ନିଜ ଆଡୁ ପରିଚୟ ଦେଲେ । ସେ ଶ୍ରୀମତୀ...ମହାନ୍ତି । ଭଦ୍ରବ୍ୟକ୍ତି ତାଙ୍କର ସ୍ୱାମୀ...କଟକ ଡେଭେଲପମେଣ୍ଟ ଅଥରଟିରେ କାମ କରନ୍ତି । ତାଙ୍କ ଝିଅର ବିବାହ ପ୍ରସ୍ତାବ ମୋ ଦାଦାଝିଅ ଭଉଣୀ ହାତରେ ଗାଁକୁ ପଠାଇଥିଲେ । ଏତକ ଏକା ନିଶ୍ୱାସରେ କହି, ଭଦ୍ରମହିଳା ଜଣକ ସାମାନ୍ୟ ଆଶ୍ୱସ୍ତ ହେଲେ । ସ୍ୱାମୀ ତାଙ୍କର ସେପର୍ଯ୍ୟନ୍ତ ଚୁପ୍‌ଚାପ୍ ବସିଥାନ୍ତି ।

ଏତିକି ଭିତରେ ସେମାନଙ୍କର ଆସିବାର ଅସଲ ଉଦ୍ଦେଶ୍ୟ ମୁଁ ବୁଝି ସାରିଥାଏ ।

ଏ ଭିତରେ ଚା' ଏବଂ ବିସ୍କୁଟ ମଗେଇ ସାରିଥିଲି । ଚା' ପାନ ଅବସରରେ ଭଦ୍ରମହିଳା ପୁଣି କହିବାକୁ ଆରମ୍ଭ କଲେ, ଦେଖନ୍ତୁ ଆପଣଙ୍କ ଭଉଣୀଙ୍କୁ; ଆମେ ଆମ ଝିଅକୁ ୩୦ଭରି ସୁନା ଗହଣା ଦେବୁ ବୋଲି କହିଥିଲୁ କିନ୍ତୁ ପ୍ରକୃତରେ ଆମେ ୫୦ ଭରି ପର୍ଯ୍ୟନ୍ତ ସୁନା ଦେବାକୁ ପ୍ରସ୍ତୁତ । ଏଥରକ ଭଦ୍ରମହିଳାଙ୍କ ସ୍ୱାମୀ ମୁହଁ ଖୋଲିଲେ -ଆମେ ନୂଆ କର୍ ମଧ୍ୟ ଦେବୁ । ଆପଣ ଯଦି ଏହା ବ୍ୟତୀତ ଅଧିକ ନଗଦ ଟଙ୍କା.ଚାହୁଁଥାନ୍ତି ତେବେ ବିନା ସଂକୋଚରେ କହି ପାରନ୍ତି । ସେଥିପାଇଁ ଆମେ ପ୍ରସ୍ତୁତ ଅଛୁ ।

ମୁଁ ଭାବୁଥାଏ-ସତରେ ଏ ସବୁ ପଦବୀ ପଛରେ 'ଆଇ' ଲାଗିବାର କରାମତି । ଲାଜ ଓ କ୍ଷୋଭରେ ମୋ ମୁହଁ ଜଳିଯାଉଥାଏ । ହାଟରେ ମୂଲଚାଲ କରି ଗାଈ-ଗୋରୁ କିଣିଲା ଭଳି, ବିବାହ ଭଳି ପବିତ୍ର ବନ୍ଧନକୁ ମଧ୍ୟ ଏମାନେ ମୂଲଚାଲ କରିବାକୁ ପଛଉ ନାହାନ୍ତି । କିନ୍ତୁ ନିଜର ଭାବନାକୁ ପ୍ରକାଶ ନକରି ବିନମ୍ରତାର ସହିତ ମୁଁ ଉତ୍ତର ଦେଇଥିଲି, ଆମର ମନା କରିବାର ପଛରେ ସୁନା, କାର, ବା ଯୌତୁକ ଜନିତ କୌଣସି କାରଣ ନାହିଁ । ବାସ୍ତବରେ ମୋର ବିଭାଘର ସ୍ଥିରୀକୃତ ହୋଇ ନିର୍ବନ୍ଧ ମଧ୍ୟ ସରିଛି । ଆମ ପରିବାରରେ ନିର୍ବନ୍ଧର ପବିତ୍ରତାକୁ ବେଶ୍ ଗୁରୁତ୍ୱ ଦିଆଯାଏ । ଏ ବିଷୟରେ ଅଧିକ ଚର୍ଚ୍ଚାର ସୁଯୋଗ ନଦେଇ ମୁଁ ଭଦ୍ରବ୍ୟକ୍ତି ଏବଂ ଭଦ୍ରମହିଳାଙ୍କୁ ବିଦାୟ ଦେଇଥିଲି ।

ସେ ସମୟରେ ମୋ ଦାଦା କଟକରେ ମେଡିକାଲ୍ ରିପ୍ରେଜେଣ୍ଟିଭ ଭାବରେ କାମ କରୁଥାନ୍ତି । ସେ ମଧ୍ୟ ମୋ ପାଇଁ ଗୋଟିଏ ବିବାହ ପ୍ରସ୍ତାବ ଆଣିଥିଲେ । ପ୍ରସ୍ତାବଟି ଥିଲା ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ଜନୈକ ବରିଷ୍ଠ ପ୍ରଫେସରଙ୍କ ଝିଅ ସହିତ । ଝିଅଟି ସୁନ୍ଦର, କୁଳୀନ ଏବଂ ଡାକ୍ତରୀ ପାଶ୍ କରି ଏବେ ପି.ଜି. କରୁଛି । ମୋର ଠିକ୍ ମନେଅଛି; ବୋଉ ତାଙ୍କୁ କହିଥିଲା-ବିବି ପାଇଁ (ମୋ ସାନଭଉଣୀ) ହେଲେ ପ୍ରସ୍ତାବଟିଏ ଆଣନ୍ତ । ଝିଅକୁ ୨୨ବର୍ଷ ହେଲାଣି । ଗାଁରେ ଝିଅକୁ କାହିଁକି ଘରେ ବସେଇଛ ବୋଲି, ଛି'ଛାକର କରୁଛନ୍ତି । ତା' ବାପାଥିଲେ କେବେଠୁ ଝିଅକୁ ବାହା କରି ସାରନ୍ତେଣି । ତୁମେ ଦାଦା, ବଡ଼ ବାପାମାନେ ଅଛ ? ତା' ପାଇଁ ବରପାତ୍ରଟିଏ ଯୋଗାଡ଼ କରିବା କ'ଣ ତୁମର କର୍ତ୍ତବ୍ୟ ନୁହେଁ ? ପୁଅ ପାଇଁ ତ ଅନେକ ପ୍ରସ୍ତାବ ଆସୁଛି ।

ବୋଉ ଏମିତି ସିଧାସଳଖ ମୁହେଁ ମୁହେଁ ଶୁଣେଇବ ବୋଲି ମୁଁ କଳ୍ପନା କରିନଥିଲି । ଦାଦା ମନ ଦୁଃଖରେ ଫେରି ଯାଇଥିଲେ । ସେ ପ୍ରାୟ ଛଅମାସ ଯାଏଁ ଆମ ଘରକୁ ଆସିନାହାନ୍ତି । ପରେ ଶୁଣିଲି, ମୋ ସହିତ ଆଣିଥିବା ବିବାହ ପ୍ରସ୍ତାବଟି ସ୍ଥିର ହୋଇଥିଲେ ଦାଦାଙ୍କର କମ୍ପାନୀ 'ଏରିଆମ୍ୟାନେଜର' ପଦବୀକୁ ତାଙ୍କୁ ପ୍ରମୋସନ କରାଇଦେବାକୁ ପ୍ରତିଶ୍ରୁତି ଦେଇଥିଲେ ।

ସର୍ବଭାରତୀୟ ସେବାର ଅଧିକାରୀମାନେ ବେଶୀ ଦିନ ଅବିବାହିତ ରହିଲେ, ଏମିତି ଅନେକ ବିବାହ ପ୍ରସ୍ତାବ ଆସେ ଏଥିରେ ଦ୍ୱିମତ ନାହିଁ । କେବଳ ଯେ ଯୌତୁକ ବା ଧନ ସମ୍ପତ୍ତିର ଲୋଭ ଦେଖାଇ ଲୋଭାନ୍ୱିତ କରାଯାଏ, ତାହା ନୁହେଁ, ତୁମର ଉପରିସ୍ଥ ହାକିମ ସରକାରୀ ସ୍ତରରେ ମଧ୍ୟ ଚାପ ପକେଇଥାନ୍ତି । କେତେକ ପ୍ରସ୍ତାବକ, ମୁଁ ତାଙ୍କ କଥାରେ ରାଜି ହୋଇଗଲେ, ମୋ' ଭଉଣୀ ପାଇଁ ଭଲ ପ୍ରସ୍ତାବଟିଏ ଜୁଟାଇ ଦେବେ ବୋଲି ମଧ୍ୟ ଲୋଭ ଦେଖାଉଥାନ୍ତି ।

ଏ ସଂପର୍କରେ ଆଉ ଏକ ଅନୁଭୂତି ଏଠି ଅବତାରଣା କରାଯାଇ ପାରେ । ମୁଁ ଅନୁଗଳ ଡିଭିଜନ୍‌ରେ ଏ.ସି.ଏଫ୍. ଥିଲାବେଳେ ମୋର ତତ୍‌କାଳୀନ କଞ୍ଜରଭେଟର ତାଙ୍କର ଝିଆରୀ (ସାନଭାଇର ଝିଅ) ନିମନ୍ତେ ବିବାହ ପ୍ରସ୍ତାବ ଗାଁକୁ ପଠେଇଥିଲେ, ଏ ବିଷୟରେ ମୁଁ ସେତେବେଳେ ଜାଣି ନଥିଲି । କିନ୍ତୁ ଯେତେବେଳେ ସେ ଜାଣିଲେ ଯେ ଯେଉଁଠି ମୋର ବିବାହ ସ୍ଥିର ହୋଇଛି, ସେ ମଧ୍ୟ ତାଙ୍କର ସଂପର୍କୀୟ ଭାଣିଜୀ ହେବ, ସେ ଆଉ ପ୍ରସ୍ତାବଟିକୁ ନ ଆଗେଇ ସେଥିରୁ କ୍ଷାନ୍ତ ହୋଇଥିଲେ ।

ଏଭଳି ପ୍ରସ୍ତାବ ବିଷୟରେ ମୁଁ ହୁଏତ ଜାଣିବାର ଅବାକାଶ ପାଇ ନଥାନ୍ତି ଯଦି ଭବିଷ୍ୟତରେ ଏଭଳି ଘଟଣାଟିଏ ଘଟି ନଥାନ୍ତା-

ଅନୁଗୁଳରେ ଏ.ସି.ଏଫ୍. ଥିବାବେଳେ ୧୯୭୯ମସିହା ଜାନୁୟାରୀ ମାସ ୨୫ ତାରିଖରେ ମୋର ବିବାହ ସଂପୂର୍ଣ୍ଣ ହୋଇଥିଲା । ସେହିବର୍ଷ ମାର୍ଚ୍ଚମାସ ବେଳକୁ, ମୋତେ ଫରେଷ୍ଟ ଡିଭିଜନ ଦାୟିତ୍ୱ ମିଳିଯିବା କଥା । କିନ୍ତୁ ବିଧିର ନିର୍ଦ୍ଦେଶ ଭିନ୍ନଥିଲା । ମୋତେ ସହାୟକ ୱାର୍କିଙ୍ଗ୍ ପ୍ଲାନ୍ ଅଫିସର ହିସାବରେ ବାରିପଦାକୁ ବଦଳି କରାଗଲା । ସେଠି ଛଅମାସ ରହିବାପରେ, କୋରାପୁଟ ଜିଲ୍ଲାର ନବରଂଗପୁର ବନଖଣ୍ଡକୁ ମୋର ଏ.ସି.ଏଫ୍. ଇନ୍‌ଚାର୍ଯ୍ୟ ନବରଂପୁର ଡିଭିଜନ୍ ଭାବରେ ପୋଷ୍ଟିଂ ହେଲା । ପୂଜାଛୁଟି ପରେ ପରେ ମୁଁ ନବରଂପୁର ଡିଭିଜନ୍‌ରେ ଜଏନ୍ କଲି । ୧୯୭୯ ମସିହା ଅକ୍ଟୋବର ୨ତାରିଖରେ ପୁତ୍ର ସନ୍ତାନର ଜନକ ହେବାର ସୌଭାଗ୍ୟ ମୋତେ ମିଳିଥିଲା । ଆଠ ମାସର ପ୍ରିମ୍ୟାଚୁର ପିଲା । ତେଣୁ ମା' ଓ ପୁଅକୁ କଟକରେ ଶ୍ୱଶୁର ଘରେ ଛାଡ଼ି ଯିବାକୁ ବାଧ୍ୟହେଲି । ୧୯୮୦ମସିହା ମାର୍ଚ୍ଚମାସ ବେଳକୁ, ସିନିୟର ସ୍କେଲ୍‌କୁ ଉନ୍ନୀତ ହୋଇ ମୁଁ ବିଦ୍ଧିବଦ୍ଧ ଭାବେ ନବରଂଗପୁର ବନଖଣ୍ଡ ଅଧିକାରୀ ବା ଡି.ଏଫ୍.ଓ. ରୂପେ ଅବସ୍ଥାପିତ ହେଲି ।

ନୂଆନୂଆ ଡିଭିଜନ୍ ଦାୟିତ୍ୱ । କାର୍ଯ୍ୟରେ ପ୍ରାୟତଃ ବ୍ୟସ୍ତ ରହିବାକୁ ପଡୁଥାଏ । ନବରଂଗପୁର ବେଶୀ ବଡ଼ ଡିଭିଜନ୍ ନୁହେଁ । କିନ୍ତୁ ଉପାନ୍ତ ଡିଭିଜନ ହୋଇଥିବାରୁ ଏହାର

ପ୍ରାଧାନ୍ୟ ନିଆଗ୍ର । ଗୋଟିଏ ପଟର ସୀମାରେଖା ତତ୍‌କାଳୀନ ମଧ୍ୟପ୍ରଦେଶକୁ ଲାଗିଥାଏ 'ଜଗଦଳପୁର' ଠାରୁ 'ରାୟଗଡ଼ା' ପର୍ଯ୍ୟନ୍ତ । ଡିଭିଜନ ଅନ୍ତର୍ଗତ ଜଙ୍ଗଲର ରକ୍ଷଣାବେକ୍ଷଣ, ସୀମାନ୍ତରେ କାଠଚୋରୀ ରୋକିବା, ବୃକ୍ଷରୋପଣ କରିବା ଏବଂ ଗରୀବ ଆଦିବାସୀମାନଙ୍କୁ କର୍ମଯୋଗାଣମୂଳକ କାର୍ଯ୍ୟକ୍ରମ ସହିତ, ଇନ୍ଦ୍ରାବତୀ ଓ ଅପରକୋଲାବ ଜଳଭଣ୍ଡାର ନିର୍ମାଣ ହେତୁ ବିସ୍ଥାପିତ ବାସଚ୍ୟୁତ ପରିବାରଙ୍କ ଥଇଥାନ । ଏମିତି ସବୁ ବ୍ୟସ୍ତତା ଭିତରେ ଦିନ କଟିଯାଉଥାଏ ।

୧୯୮୦ ମସିହା ଅଗଷ୍ଟ ମାସ ପ୍ରଥମ ସପ୍ତାହରେ ହଠାତ୍ ଦିନେ ରାଜ୍ୟ ସରକାରଙ୍କର ସାଧାରଣ ପ୍ରଶାସନ ବିଭାଗର ସ୍ୱତନ୍ତ୍ର ସଚିବଙ୍କଠାରୁ ଜଉମୁଦଦିଆ ଗୁପ୍ତ ଚିଠିଟିଏ ପାଇଲି । ନିଶ୍ଚିତ ଭାବରେ ଚଠିଟିକୁ ଦେଖି ଡରିଗଲି । ଟ୍ରେନିଂ ସମୟରେ ଆମକୁ କୁହାଯାଇଥିଲା, ସାଧାରଣ ପ୍ରଶାସନ ବିଭାଗରୁ ଚରିତ୍ରପଞ୍ଜିକା ଉପରେ ପ୍ରତିକୂଳ ମନ୍ତବ୍ୟ ଏମିତି ଜଉମୁଦିଆ ଚିଠିରେ ଆସିଥାଏ । ଏହାକୁ ବ୍ୟଙ୍ଗରେ କୁହାଯାଏ 'ପ୍ରେମପତ୍ର' । ଚିଠିଟି ଖୋଲିଲାପରେ ଦେଖିଲି, ଯଦିଓ ସେଥିରେ ମୋର ୧୯୭୮-୭୯ ମସିହା ଚରିତ୍ର ପଞ୍ଜିକା ଉପରେ ଆକ୍ରୋଶମୂଳକ ଭାବରେ ଦିଆଯାଇଥିବା ପ୍ରତିକୂଳ ମନ୍ତବ୍ୟକୁ ଉଦ୍ଧାର କରାଯାଇଥିଲା । ଆକ୍ଷରିକ ଅର୍ଥରେ ଏହା 'ପ୍ରେମପତ୍ର' ନଥିଲା । କାରଣ 'ପ୍ରେମପତ୍ର' ସାଧାରଣତଃ ନାଲି କାଗଜରେ ଆସିଥାଏ । କିନ୍ତୁ ଏହା ଥିଲା ଅର୍ଦ୍ଧ-ସରକାରୀ ଚିଠି, ଧଳା କାଗଜରେ । ଚିଠିରେ ଥିବା ପ୍ରତିକୂଳ ମନ୍ତବ୍ୟ ଏହିପରି ଥିଲା:

'ତୁମର ୧୯୭୮-୭୯ ମସିହା କାର୍ଯ୍ୟାବଳୀ ଉପରେ ମିଳିଥିବା ରିପୋର୍ଟକୁ ଅନୁଧ୍ୟାନ କରିବାରୁ ଜଣାଯାଏ ଯେ, ତୁମେ ଅତ୍ୟନ୍ତ ମେଧାବୀ ଏବଂ ଅନୁଗ୍ରାହୀ । କାଗଜ କଲମରେ ବା ଆଲୋଚନା ସମୟରେ ତୁମର ଭାବ ପ୍ରକାଶ ପ୍ରକ୍ରିୟା ଉତ୍ତମ । କିନ୍ତୁ ଦାୟିତ୍ୱ ନେବା ପାଇଁ ତୁମର ଆଗ୍ରହ ନଥାଏ । ତୁମେ ଅଧିକ ପରିଶ୍ରମୀ ହେବା ଆବଶ୍ୟକ । ବୈଷୟିକ ତଥା ପ୍ରଶାସନିକ ବିଷୟରେ ପ୍ରାଞ୍ଜଳ ଭାବରେ ଜାଣିବାର ଆଗ୍ରହ ଏ ପର୍ଯ୍ୟନ୍ତ ତୁମର ଆସିନାହିଁ । ତୁମର ନିଜସ୍ୱ କୌଣସି ଇନ୍‌ସିଏଟିଭ୍ ନାହିଁ ଏବଂ ଦାୟିତ୍ୱକୁ ତୁମେ ଏଡ଼ାଇଯାଅ । ତୁମର ଗସ୍ତ ଯଥେଷ୍ଟ ନୁହେଁ ଏବଂ ଫଳପ୍ରଦ ମଧ୍ୟ ନୁହେଁ । ଏବେ ବି ତୁମେ ଡି.ଏଫ୍.ଓ. ପଦକୁ ପ୍ରମୋସନ ପାଇବା ପାଇଁ ଉପଯୁକ୍ତ ନୁହଁ ।'

ସାଧାରଣତଃ ପ୍ରଶାସନ ବିଭାଗର ଏଭଳି ଏକ ପତ୍ରପାଇ ମୁଁ ବିଶେଷଭାବରେ ବିଚଳିତ ହୋଇଯିବା ସ୍ୱାଭାବିକ କଥା । ଖୁବ୍ ସନ୍ତର୍ପଣରେ ଚଠିଟି ମୋ ସ୍ତ୍ରୀଙ୍କୁ ଦେଖାଇଲି । ପଢ଼ିଲାପରେ

ସେ ମଧ୍ୟ ସ୍ୱାଭାବିକ୍ ଭାବେ ଗମ୍ଭୀର ହୋଇଗଲେ । କିନ୍ତୁ ସ୍ୱତଃସ୍ଫୂର୍ତ୍ତ ଭାବେ, ତାଙ୍କର ପାଟିରୁ ବାହରି ଆସିଲା; ଏ ନିଶ୍ଚେ ବୁଢ଼ା ମାମୁଙ୍କ କାମ । କାରଣ ସେ ତାଙ୍କର ସାନଭାଇର ଝିଅ ସହିତ ତୁମ ପାଇଁ ପ୍ରସ୍ତାବ ପକଉଥିଲେ । କିନ୍ତୁ ମୋ ସହିତ ତୁମର ବିଭାଘର ପ୍ରସ୍ତାବ ଠିକ୍ ହୋଇସାରିଥିବା ଜାଣି ଆଉ ଆଗେଇପାରିଲେ ନାହିଁ । ପରେ ପରେ ଆମ ଘର ସହିତ ତାଙ୍କର ସଂପର୍କ ତୁଟି ଯାଇଥିଲା କହିଲେ ଚଳେ । ମୋ' ବାହାଘରକୁ ମଧ୍ୟ ତାଙ୍କ ଘରୁକେହି ଆସିନଥିଲେ ।'

ଏଠାରେ କହିରଖେ, ଅନୁଗୁଳ ଡିଭିଜନରେ ଟ୍ରେନିଂ ନେଉଥିବା ସମୟରେ ମୋର ତତ୍‌କାଳୀନ କଞ୍ଜରଭେଟର ହେଉଛନ୍ତି ସ୍ତ୍ରୀଙ୍କର ସଂପର୍କୀୟ ବୁଢ଼ା ମାମୁ ।

ମୋ ମନରେ ଗଭୀର ଦୁଃଖ ଓ କ୍ଷୋଭ ଜାତ ହେବା ସ୍ୱାଭାବିକ । ଟ୍ରେନିଂ ସମୟରେ ଡେରାଡୁନ୍‌ଠାରେ ମୁଖ୍ୟତଃ ବୈଷୟିକ ଦିଗରେ ଆମେ ତାଲିମ୍‌ପ୍ରାପ୍ତ ହୋଇଥାଉ । ରାଜ୍ୟର ପ୍ରଶାସନିକ ଦିଗ, ନିୟମ କାନୁନ୍ ସଂପର୍କରେ ଆମକୁ ଅବଗତ କରାଇବା, ଆମର ଉପସ୍ଥିତି ହାକିମ ଯଥା ଡି.ଏଫ୍.ଓ. ଏବଂ କଞ୍ଜରଭେଟର୍‌ମାନଙ୍କ କର୍ତ୍ତବ୍ୟ । ବାପା, ମା' ମାନେ ଛୋଟ ପିଲାକୁ ହାତ ଧରି ଚାଲିବା ଶିଖାଇଲା ଭଳି, ରାଜ୍ୟକୁ ନୂଆକରି ଆସିଥିବା ଆଇ.ଏଫ୍.ଏସ୍. ପ୍ରୋବେସନରମାନଙ୍କୁ, ରାଜ୍ୟର ପ୍ରଚଳିତ ଆଇନ୍ କାନୁନ ତଥା ଜଙ୍ଗଲ ବିଭାଗର କାର୍ଯ୍ୟଧାରା ସଂପର୍କରେ ତାଲିମ୍ ଦେବା ମଧ୍ୟ ଉପରିସ୍ଥ ଅଫିସରମାନଙ୍କର ଗୁରୁଦାୟିତ୍ୱ । ସେଥିପାଇଁ ପ୍ରୋବେସନରମାନଙ୍କୁ କୁହାଯାଏ ଶିକ୍ଷାନବୀସ । ନିଜ କର୍ତ୍ତବ୍ୟକୁ ଯଥାରୀତି ପାଳନ ନକରି, ଜଣେ ଶିକ୍ଷାନବୀସର ଚରିତ୍ର ପଞ୍ଜିକାରେ ଏଭଳି ବିରୋଧାତ୍ମକ ମନ୍ତବ୍ୟ ଦେବା ଏବଂ ଶେଷରେ ସେ ଡି.ଏଫ୍.ଓ. ପ୍ରମୋଶନ ନିମନ୍ତେ ଉପଯୁକ୍ତ ନୁହେଁ ବୋଲି ଲେଖିବା, ନିଶ୍ଚିତ ଭାବେ ପରିତାପର ବିଷୟ ।

ପରେ ଶୁଣିଲି ଯେ, ଆମ ଆଗରୁ କେବଳ ମାତ୍ର ତିନିଜଣ ସିଧାସଳଖ ନିଯୁକ୍ତି ପାଇଥିବା ଆଇ.ଏଫ.ଏସ୍. ଅଫିସର ଓଡ଼ିଶାକୁ ଆସିଥିଲେ । ରାଜ୍ୟର ବିରଷ୍ଠ ଅଫିସରମାନଙ୍କ ମଧ୍ୟରୁ କେତେକ ସେମାନଙ୍କୁ ହୁଏତ ପସନ୍ଦ କରୁନଥିଲେ । ପ୍ରକାରାନ୍ତରେ ସହ୍ୟ କରି ପାରୁନଥିଲେ କହିଲେ ଚଳେ । ସେଥିପାଇଁ ସେମାନଙ୍କୁ ନାନା ପ୍ରକାର ହଇରାଣ ହରକତ କରୁଥିଲେ । କିନ୍ତୁ ନିଶ୍ଚିତ ଭାବରେ ଏହା ବ୍ୟତିକ୍ରମ ଥିଲା । ସବୁ ବରିଷ୍ଠ ଅଫିସରଙ୍କ ପାଇଁ ଏହା ପ୍ରଯୁଜ୍ୟ ନୁହେଁ ।

ପ୍ରତିକୂଳ ମନ୍ତବ୍ୟକୁ ପ୍ରତିବାଦ କରି ରାଜ୍ୟ ସରକାରଙ୍କ ଉଦ୍ଦେଶ୍ୟରେ ଏକ ସ୍ମାରକପତ୍ର ପ୍ରସ୍ତୁତ କଲି । କିନ୍ତୁ ସେ ସମୟରେ ଅନେକ ବନ୍ଧୁ ଓ ସହକର୍ମୀ ମୋତେ ବାରଣକରି

କହିଲେ, ତୁମର ପ୍ରମୋଶନ ହୋଇସାରିଛି ଏବଂ ସରକାର ମଧ୍ୟ ତୁମକୁ ପ୍ରତିକ୍ରିୟା ଜଣାଇବାକୁ କହିନାହାନ୍ତି । କେବଳ ଭବିଷ୍ୟତରେ ନିଜକୁ ସୁଧାରିବା ପାଇଁ ଉପଦେଶ ଦେଇଛନ୍ତି । ତେଣୁ ତୁମେ ଅଯଥାରେ କାହିଁକି ସ୍ମାରକପତ୍ର ଦେବ ? ମୋ ପ୍ରତିବାଦ ଜଣାଇବା କଥା ସେଇଠି ରହିଲା । ସମୟକ୍ରମେ ମୁଁ ସେ ବିଷୟ ସଂପୂର୍ଣ୍ଣ ଭୁଲି ଯାଇଥିଲି ।

୧ ୯ ୯୩ ମସିହା କଥା । ସେତେବେଳକୁ ମୁଁ କଞ୍ଜରଭେଟର ପଦବୀକୁ ପ୍ରମୋଶନ ପାଇ ସାରିଥାଏ ଏବଂ ଭୁବନେଶ୍ୱରଠାରେ ସାମାଜିକ ବନୀକରଣ ଆଞ୍ଚଳିକ ଯୁଗ୍ମନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରୁଥାଏ । ଅନୁଗୁଳରେ ମୁଁ ଟ୍ରେନିଂ ନେବା ସମୟରେ ମୋର ଡି.ଏଫ୍.ଓ ଏବଂ କଞ୍ଜରଭେଟର ଦୁହେଁଯାକ ସେତେବେଳକୁ ଅବସର ଗ୍ରହଣ କରିସାରିଥାନ୍ତି ।

ଡି.ଏଫ୍.ଓ. ଶ୍ରୀଯୁକ୍ତ ରାଜୀବ ଲୋଚନ ରଥ ଆଡିସିନାଲ ମୁଖ୍ୟ ବନ ସଂରକ୍ଷକ ପଦବୀରୁ ସଦ୍ୟ ଅବସର ଗ୍ରହଣ କରି ତାଙ୍କର ନିଜସ୍ୱ ବାସଗୃହ ସମ୍ବଲପୁରଠାର ଅବସ୍ଥାନ କରୁଥାନ୍ତି । ଦିନେ ଖବର ପାଇଲି ଯେ, ଭୁବନେଶ୍ୱର ଆଠନମ୍ବରରେ ତାଙ୍କ ଝିଅ, ଜ୍ୱାଇଁ (ଉଭୟ ଡାକ୍ତର) ରହନ୍ତି । ଶ୍ରୀଯୁକ୍ତ ରଥ ଓ ଶ୍ରୀମତୀ ରଥ ମଧ୍ୟ ଆସି ସେମାନଙ୍କ ପାଖରେ କିଛିଦିନ ହେଲା ରହୁଛନ୍ତି ।

ମୁଁ ଓ ମୋ ସ୍ତ୍ରୀ, ସୋମାନଙ୍କୁ ଦେଖାକରିବାକୁ, ତାଙ୍କ ଜ୍ୱାଇଁଙ୍କର ଆଠନମ୍ବରସ୍ଥିତ ସରକାରୀ କ୍ୱାଟର୍ସକୁ ଦିନେ ଗଲୁ । ଶ୍ରୀମତୀ ରଥ ଅତ୍ୟନ୍ତ ସ୍ନେହୀ ଓ ମେଳାପୀ । ସେ ମୋ ସ୍ତ୍ରୀଙ୍କୁ ଭିତରକୁ ଡାକିନେଇ, ସୁଖ, ଦୁଃଖ ଗପସପରେ ମାତିଗଲେ । ବାହାର ବାରଣ୍ଡାରେ ମୁଁ ଓ ଶ୍ରୀଯୁକ୍ତ ରଥ ବସି ଅନେକ ବିଷୟରେ ଆଳାପ ଆଲୋଚନା କରୁଥାଉ । କିଛି ସମୟ ପରେ ସେ କହିଲେ, 'ପଟ୍ଟନାୟକ ବାବୁ, ମୁଁ ଆପଣଙ୍କୁ ଗୋଟିଏ କଥା କହିବି କହିବି ବୋଲି ଚାକିରି ସମୟ ବିତିଗଲା; କିନ୍ତୁ କହିପାରିଲି ନାହିଁ । ଏବେ ସୁଯୋଗ ମିଳିଛି । ସତ କଥାଟି ଆପଣଙ୍କୁ କହିଦେଲେ ମୋତେ ଟିକିଏ ଶାନ୍ତି ମିଳିବ ।'

କ'ଣ ଏପରି ଗୁରୁତର କଥା ଅକୁହା ରହିଯାଇଛି ବୋଲି, ମୁଁ ଆଗ୍ରହରେ ଚାହିଁ ରହିଲି । କିଛି ସମୟ ଚୁପ୍ ରହି ସେ ଆରମ୍ଭ କଲେ '୧ ୯ ୭ ୯ ମସିହାରେ ଆପଣ ଅନୁଗୁଳରେ ମୋ ପାଖରେ ପ୍ରୋବେସନର ହିସାବରେ ଟ୍ରେନିଂ ନେଉଥିବାବେଳେ, ଆପଣଙ୍କର ସି.ସି.ଆର. ମୁଁ ଖରାପ ଲେଖିଛି ।' ମୁଁ ହତବାକ୍ ହୋଇ ଚାହିଁ ରହିଲି ।

ତା'ପରେ ଧୀରେଧୀରେ ଶ୍ରୀଯୁକ୍ତ ରଥ ସହଜ ହୋଇଯାଇ କହିଲେ, 'ପ୍ରଥମେ ମୁଁ ଆପଣଙ୍କୁ ଖୁବ୍ ଭଲ ସି.ସି.ଆର. ଲେଖିଥିଲି, କିନ୍ତୁ ସେ ସମୟର କଞ୍ଜରଭେଟର ସାହେବ,

ମୋତେ ଡାକି ତାହା ଫେରାଇଦେଇ ସି.ସି.ଆର. ଖରାପ କରି ଲେଖି ଆଣିବାକୁ ପରାମର୍ଶ ଦେଲେ । ବାଧ୍ୟ ହୋଇ ମୁଁ ପୁନର୍ବାର ଆପଣଙ୍କ ଖରାପ ସି.ସି.ଆର. ଲେଖି ବନସଂରକ୍ଷକ ମହାଶୟଙ୍କୁ ଦେଲି ।'

ଚୁପ୍‌ହୋଇ କିଛି ସମୟ କଟିଗଲା ପରେ, ମୁଁ ପ୍ରଶ୍ନ କଲି; ସାର୍ ଆପଣ ଏପରି କାହିଁକି କଲେ ? ଆପଣ ଜାଣନ୍ତି, ରେଞ୍ଜ ଟ୍ରେନିଂ ସମୟରେ ମୁଁ ବାରମ୍ବାର ଜଙ୍ଗଲ ଗସ୍ତ କରୁଥିବାରୁ କାଠଚୋରମାନେ ସତର୍କ ଓ ଭୟଭୀତ ହୋଇଯାଇଥିଲେ । ସେ ସମୟରେ ଦୁର୍ଗାପୁର ରିଜର୍ଭ ଜଙ୍ଗଲରୁ କାଠଚୋରୀ ଯଥେଷ୍ଟ କମିଯାଇଥିଲା । ମୋ ସମୟରେ ଭଲ ଶାଗୁଆନ୍ ପ୍ଲାଣ୍ଟେସନ୍ ମଧ୍ୟ ହୋଇଥିଲା । ଡିଭିଜନ ଅଫିସ୍‌ରେ ସହକାରୀ ବନସଂରକ୍ଷକ ଥିବା ସମୟରେ ମୁଁ ଏକାଧିକବାର ଭ୍ରାମ୍ୟମାଣ ସ୍କ୍ୱାର୍ଡ ନେଇ କାଠ-ମାଫିଆଙ୍କ ଉପରେ ଚଢ଼ଉ କରିଛି । କାଠ ତଥା ଲଘୁ ବନଜାତ ଦ୍ରବ୍ୟ ଲିଜ୍ ଏବଂ ନିଲାମ କାମ ଭଲ ରୂପେ ତୁଲାଇଛି । କେଉଁଠି ମୋର ଭୁଲ୍ ରହିଲା ?'

ରଥ ମହାଶୟ ଉତ୍ତର ଦେଲେ, 'ଆପଣଙ୍କର କିଛି ଭୁଲ୍ ନାହିଁ । କିନ୍ତୁ ମୁଁ ନାଚାରଥିଲି । ମୋର ସେତେବେଳେ ଡି.ଏଫ୍.ଓରୁ କଞ୍ଜରଭେଟର ପଦବୀକୁ ପ୍ରମୋଶନ ହେବାର ଥାଏ । ମୁଁ ଯେତେବେଳେ ଆମ କଞ୍ଜରଭେଟର ସାହେବଂକୁ ମନାକଲି, ଏପରି ମୁଁ କରିପାରିବି ନାହିଁ, ଆପଣ ବରଂ ଯାହା ଲେଖିବା କଥା ନିଜେ ଲେଖନ୍ତୁ; ସେତେବେଳେ ସେ ମୋତେ ରୀତିମତ ଧମକାଉଥିଲେ- 'ଦେଖ ରଥ, ତୁମେ ଯଦି ମୋ କଥା ନ ମାନିବ, ତେବେ ମୁଁ ତୁମର ସି.ସି.ଆର. ଖରାପ କରିଦେବି । ତୁମେ କସ୍ମିନ୍ କାଳେ କଞ୍ଜରଭେଟର ହୋଇପାରିବନି ।' ତେଣୁ ମୁଁ ଡରିଗଲି ଏବଂ ତାଙ୍କ କଥା ମାନିନେଲି ।' ସତରେ ସେହିବର୍ଷ ଡି.ଏଫ୍.ଓ. ଶ୍ରୀ ରଥଙ୍କ ପ୍ରମୋଶନ ହେବାର ଥାଏ ।

ସେଠୁ  ଫେରିଲା ସମୟରେ, ବାଟରେ ମୁଁ ସ୍ତ୍ରୀଙ୍କୁ ସମସ୍ତ କଥା କହିଲି । ସେ କହିଲେ, ସେତେବେଳେ ମୁଁ ଠିକ୍ ଏୟା ଅନୁମାନ କରିଥିଲି । ଯାହାହେଉ, ହନୁ ମଲାବେଳେ ସତ କହିଲା ପରି ଏତେଦିନେ ସତକଥାଟା ପଦାକୁ ଆସିଲା ।



# ପ୍ରଥମ ଡିଭିଜନ ଦାୟିତ୍ୱ: ନବରଙ୍ଗପୁର



ଫୁଲବାଣୀ ଫରେଷ୍ଟ ଡିଭିଜନ୍‌ରେ ପ୍ରୋବେସନ୍‌ର ଏ.ସି.ଏଫ୍. ବା ଆସିଷ୍ଟାଣ୍ଟ କଞ୍ଜରଭେଟର ଅଫ୍ ଫରେଷ୍ଟ ଟ୍ରେନିଂ ନେଉଥିବା ଅବସରରେହିଁ ମୋ ବିବାହ ପ୍ରସ୍ତାବର ଶ୍ରୀଗଣେଶ ହୋଇଥିଲା । ଯାହାକି ପରବର୍ତ୍ତୀ ସମୟରେ ବିବାହ ବନ୍ଧନରେ ମୋତେ ଅନୁବନ୍ଧିତ କରିଥିଲା ।

୧୯୭୮ ମସିହା ଜାନୁୟାରୀ ମାସ ଶେଷ ଭାଗରେ ବିଭାଗୀୟ ପରୀକ୍ଷା ଦେବାପାଇଁ ମୁଁ ଫୁଲବାଣୀରୁ କଟକ ଆସିଥାଏ । ସେତେବେଳେ କଟକ ବନୀକରଣ ଡିଭିଜନ୍‌ର ଡି.ଏଫ୍.ଓ ଥିଲେ ଦୀନବନ୍ଧୁ ମିଶ୍ର (ବର୍ତ୍ତମାନ ସ୍ୱଗତ) । କଟକର ପ୍ରଫେସରପଡ଼ାର ଗୋଟିଏ ଭଡ଼ାଘରେ ଡିଭିଜନ୍ ଅଫିସ କାର୍ଯ୍ୟ କରୁଥିଲା । ସେହି ଅଫିସ୍ କାର୍ଯ୍ୟାଳୟର ପ୍ରଥମ ମହଲାରେ ଗୋଟିଏ ରୁମ୍‌କୁ ଗେଷ୍ଟରୁମ୍ ଭାବରେ ବ୍ୟବହାର କରାଯାଉଥିଲା । ସେ ସମୟରେ ରାଜ୍ୟ ବନ ବିଭାଗର ସଦର ମହକୁମା କଟକରେ ଅବସ୍ଥାପିତ ଥିବାରୁ ଅନେକ ସମୟରେ ରାଜ୍ୟର ବିଭିନ୍ନ ଅଂଚଳରୁ ବନ ବିଭାଗୀୟ ଅଫିସରମାନଙ୍କୁ କଟକ ଆସିବାକୁ ପଡୁଥିଲା ।

ତେଣୁ ବନୀକରଣ ଡିଭିଜନ୍‌ର ଏହି ଗେଷ୍ଟ ରୁମ୍ ବା ବିଶ୍ରାମ ଗୃହଟି ବରାବର କେହି ନା କେହି ଅଫିସର୍ ଅକ୍ତିଆର କରୁଥିଲେ । ମୁଁ ବିଭାଗୀୟ ପରୀକ୍ଷା ଦେବାକୁ ଯିବା ପୂର୍ବରୁ, ଫୁଲବାଣୀ ଡି.ଏଫ୍.ଓ. ବାର୍ତ୍ତା ପଠେଇ ମୋର ସେଠାରେ ରହିବାର ବନ୍ଦୋବସ୍ତ କରି ଦେଇଥିଲେ ।

ପରୀକ୍ଷା ଆରମ୍ଭ ହେବାର ପ୍ରଥମ ଦିନହିଁ ମୋର ଦୁଇଟିଯାକ ବିଷୟରେ (ଆଇନ୍ ଓ ଆକାଉଣ୍ଟସ୍) ବିଭାଗୀୟ ପରୀକ୍ଷା ଶେଷ ହୋଇଗଲା । ସେଦିନ ରାତ୍ରିଭୋଜନ ପାଇଁ ଡି.ଏଫ୍.ଓ. ଶ୍ରୀ ମିଶ୍ର ମୋତେ ତାଙ୍କର କଲ୍ୟାଣୀନଗରସ୍ଥିତ ବାସଭବନକୁ ଆମନ୍ତ୍ରଣ କରିଥିଲେ । ସେ ସମୟରେ କଟକ ଉପକଣ୍ଠରେ ମହାନଦୀ ପଟକୁ 'କଲ୍ୟାଣୀ ନଗର' ନୂଆକରି ଗଢ଼ି ଉଠୁଥାଏ ।

ଅତିକ୍ରାନ୍ତ ସନ୍ଧ୍ୟାରେ ମୁଁ ସେଠି ପହଞ୍ଚିଲା ବେଳକୁ ଅନ୍ୟ ଜଣେ ବୟୋଜ୍ୟେଷ୍ଠ ବ୍ୟକ୍ତି ମଧ୍ୟ ସେଠି ଉପସ୍ଥିତ ଥାନ୍ତି ଡ. ଜୟକୃଷ୍ଣ ମହାନ୍ତି (ଏବେ ସ୍ୱଗତ) । ବେଶ୍ କିଛିଦିନ ତଳେ ବୁର୍ଲା ମେଡିକାଲ୍ କଲେଜର ଅଧ୍ୟକ୍ଷ ଦାୟିତ୍ୱରୁ ଅବସର ନେଇଥାନ୍ତି । କଥାବାର୍ତ୍ତା ଅବସରରେ ଢିଙ୍କିଶାଳରୁ ଆରମ୍ଭ କରି ଢେଙ୍କାନାଳ ପର୍ଯ୍ୟନ୍ତ ଗପିଗଲେ ସେ । ସବୁଥିରେ ଅମାପ ଜ୍ଞାନ । ଅଭିଜ୍ଞତା ଓ ଅନୁଭୂତିର ପ୍ରାଚୁର୍ଯ୍ୟରେ ଭରପୂର । ନିଜ ଚାକିରି ଜୀବନର ନିଛକ ଅନୁଭୂତି ସେ ଆମ ଆଗରେ ବର୍ଣ୍ଣନା କରୁଥିଲେ । ଚାକିରି ଜୀବନର ପ୍ରାକ୍‌କାଳରେ ଅନୁଗୁଳ ସବ୍‌ଜେଲ୍‌ରେ ଡାକ୍ତର ଥିବାବେଳେ, ବିଚାରାଧୀନ ସ୍ୱାଧୀନତା ସଂଗ୍ରାମୀ କଏଦୀମାନଙ୍କ ଉପରେ ହୋଇଥିବା ଶାରୀରିକ ଅତ୍ୟାଚାରର ସବିଶେଷ ବିବରଣୀ ନିଜ ରିପୋର୍ଟରେ, ଉପରିସ୍ଥ ହାକିମଙ୍କ ଇଚ୍ଛା ବିରୁଦ୍ଧରେ ଉଲ୍ଲେଖ କରିଥିବାରୁ ତାଙ୍କୁ ରାତାରାତି ଅନୁଗୁଳରୁ, ବଣ, ଜଙ୍ଗଲ, ପାହାଡ଼ ଘେରା ଫୁଲବାଣୀ ଜିଲ୍ଲାର ଉପାନ୍ତ ଅଂଚଳ ତୁମୁଡ଼ିବନ୍ଧ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ବଦଳି କରିଦିଆଗଲା ।

ରାତ୍ରିଭୋଜନ ପରେ, ପ୍ରାୟ ଦଶଟା, ସାଢ଼େ ଦଶଟା ବେଳକୁ ଡି.ଏଫ୍.ଓ. ଶ୍ରୀ ମିଶ୍ର ମୋତେ ତାଙ୍କ ଜିପ୍‌ରେ ଆଣି ପ୍ରଫେସର ପଡ଼ାସ୍ଥିତ ବନୀକରଣ ଅଫିସ୍‌ରେ ଛାଡ଼ି ଦେଇଗଲେ । ତାଙ୍କଠାରୁ ଶୁଣିଲି ଯେ ସେହି ଭଦ୍ରବ୍ୟକ୍ତିଙ୍କର ପାଞ୍ଚଟି ଝିଅ ଏବଂ ଦୁଇଟି ପୁଅ । ସବା ବଡ଼ଝିଅ ଚଣ୍ଡୀଗଡ଼ ପି.ଜି. ଆଇ.ରେ ଡାକ୍ତରାଣୀ ଅଛନ୍ତି । ବାହା ହୋଇ ନାହାନ୍ତି । ତାଙ୍କ ତଳ ଦୁଇ ଝିଅଙ୍କ ମଧ୍ୟରୁ ଜଣେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ୍ କଲେଜରେ ଡାକ୍ତର ଏବଂ ଅନ୍ୟଜଣକ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ରସାୟନବିଜ୍ଞାନ ଅଧ୍ୟାପିକା । ଚତୁର୍ଥ ଝିଅର ବାହାଘର ପ୍ରସ୍ତାବ ପ୍ରାୟତଃ ସ୍ଥିର ହୋଇ ସାରିଛି । ପଞ୍ଚମ ଅର୍ଥାତ୍ ସର୍ବ କନିଷ୍ଠ

ଝିଅର ବିବାହ ପ୍ରସ୍ତାବ ମୋ ସହିତ ପକାଇବାକୁ ସେ ଆଗ୍ରହୀ ଥିଲେ । କିନ୍ତୁ ବିଗତ ଦୁଇ ତିନି ଘଣ୍ଟାର ବାର୍ତ୍ତାଳାପ ଭିତରେ ଥରୁଟିଏ ପାଇଁ ବି ସେ ଏ ପ୍ରସଙ୍ଗ ଉଠାଇଲେ ନାହିଁ । ଖାସ୍ ଏଥିପାଇଁ ରାତ୍ରୀଭୋଜନର ବନ୍ଦୋବସ୍ତ ଡି.ଏଫ୍.ଓ. ମହାଶୟ କରିଥିଲେ । ଡି.ଏଫ୍.ଓ କହିଲେ, ସେ ସେମିତି ଭୋଳା ଲୋକ । ଅସଲ କଥାଟାକୁ କହିବାକୁ ଠିକଣା ସମୟରେ ଭୁଲିଯାନ୍ତି ।

ମୁଁ ବିନମ୍ରତାର ସହ ଡି.ଏଫ୍.ଓ. ଙ୍କୁ ଜଣାଇଥିଲି, ଯଦିଓ ମୋର ବିଭାଘର ପ୍ରସ୍ତାବ ଦୁଇ, ତିନିଟା ଜାଗାରେ ପଡ଼ିଛି, କିନ୍ତୁ ଏ ପର୍ଯ୍ୟନ୍ତ କୌଣସିଠାରେ ପୂର୍ଣ୍ଣତଃ ସ୍ଥିର ହୋଇନାହିଁ । ତେଣୁ ଗାଁରେ ଆମ ଘରେ ପ୍ରସ୍ତାବ ପକାଇବା ପାଇଁ ସେମାନଙ୍କୁ ଜଣାଇ ଦେବାକୁ ଅନୁରୋଧ କଲି ।

କଥାରେ କହନ୍ତି, ବିବାହ ଏକ ପବିତ୍ର ବନ୍ଧନ । କାହାର କେଉଁଠି ବିବାହ ହେବ, ଏହା ପୂର୍ବରୁ ସ୍ଥିରୀକୃତ ହୋଇ ସାରିଥାଏ । ସଂଯୋଗ ବଶତଃ, ଝିଅ ଦେଖାଚାହାଁ ପରେ, ସେହିଠାରେ ହିଁ ମୋର ବିବାହ ସ୍ଥିର ହୋଇ ନିର୍ବନ୍ଧ ହୋଇଥିଲା ଏବଂ ନିର୍ବନ୍ଧର ପ୍ରାୟ ଛଅମାସ ପରେ ୧୯୭୯ ମସିହା ଜାନୁୟାରୀ ମାସ ୨୫ତାରିଖରେ ଡ. ଜୟକୃଷ୍ଣ ମହାନ୍ତିଙ୍କ କନିଷ୍ଠା କନ୍ୟା ସୁଶ୍ରୀ ଲିପିକାଙ୍କ (ଡାକ ନାମ କୁଲୁ) ସହ ମୋର ଶୁଭ ପରିଣୟ ସଂପନ୍ନ ହୋଇଥିଲା । ଅନ୍ୟତ୍ର ଅବତାରଣା କରିସାରିଛି, ବିବାହ ସମୟକୁ ମୁଁ ଅନୁଗୁଳ ଫରେଷ୍ଟ ଡିଭିଜନ୍‌ରେ ଏ.ସି.ଏଫ୍ ବା ସହାୟକ ବନସଂରକ୍ଷକ ଭାବେ କାର୍ଯ୍ୟରତ ଥାଏ ।

ଏହାପରେ ମୋତେ ସିଧାସଳଖ ଡିଭିଜନ ଦାୟିତ୍ୱ ନ ଦେଇ ଆସିଷ୍ଟାଣ୍ଟ ଓ୍ୱାର୍କିଙ୍ଗ୍ ପ୍ଲାନ୍ ଅଫିସର ହିସାବରେ ବାରିପଦା ବଦଳି କରାଗଲା । କାହିଁକି ଓ କେଉଁ ପରିସ୍ଥିତିରେ ଏପରି ବଦଳି ହୋଇଥିଲା ସେ ସଂପର୍କରେ ମୁଁ ପୂର୍ବରୁ ସୂଚନା ଦେଇସାରିଛି । ଯାହାହେଉ, ଛଅମାସ ପରେ ନବରଂଗପୁର ବନଖଣ୍ଡର ଏ.ସି.ଏଫ୍. ଇନ୍‌ଚାର୍ଯ୍ୟ ଭାବରେ ମୋର ପୋଷ୍ଟିଙ୍ଗ ଅର୍ଡର ବାହାରିଲା । ପ୍ରଥମ ଡିଭିଜନ୍ ପୋଷ୍ଟିଙ୍ଗ୍ ନବରଂଗପୁର; ପ୍ରୋବେସନର ଖୋଳପା ଭିତରୁ ମୁକ୍ତ ହେଲା ପ୍ରଜାପତି । ଏଣିକି ସ୍ୱାଧୀନ ଦାୟିତ୍ୱ ।

ସେ ସମୟରେ ନବରଂଗପୁର ବନଖଣ୍ଡର ଡି.ଏଫ୍.ଓ. ଥିଲେ ବର୍ତ୍ତମାନର ପି.ସି.ସି.ଏଫ୍. ଶ୍ରୀଯୁକ୍ତ ପ୍ରଭାତ ରଂଜନ ମହାନ୍ତି । ତାଙ୍କର ଡେରାଡୁନ୍‌ସ୍ଥିତ ଭାରତୀୟ ବନବିଦ୍ୟାଳୟକୁ 'ଇନ୍‌ଷ୍ଟ୍ରକ୍ଟର' ହିସାବରେ ଡେପୁଟେସନ୍‌ରେ ଯିବାର ଥାଏ । ତାଙ୍କ ସହିତ କଟକରୁ ଫୋନ୍‌ରେ ବାର୍ତ୍ତାଳାପ କଲି ଏବଂ ବନ ଖଣ୍ଡର ଦାୟିତ୍ୱ ନେବାପାଇଁ

ଇଚ୍ଛା ପ୍ରକଟ କରି ଟେଲିଗ୍ରାମ୍‌ଟିଏ କଲି । ଦଶହରା ପୂଜାଛୁଟି ଅବକାଶ ପରେ ଆସି ଦାୟିତ୍ୱ ନେବାପାଇଁ ଶ୍ରୀଯୁକ୍ତ ମହାନ୍ତି ମୋତେ ପରାମର୍ଶ ଦେଲେ ।

ଏହି ଅବସରରେ ୧୯୭୯ ମସିହା ଅକ୍ଟୋବର ଦୁଇ ତାରିଖ ଗାନ୍ଧୀ ଜୟନ୍ତୀ, ଶାସ୍ତ୍ରୀ ଜୟନ୍ତୀ ଏବଂ କଟକର ପବିତ୍ର ଦଶହରା ଭସାଣି ଉତ୍ସବ ଦିନ, ପ୍ରଥମ ପୁତ୍ର ସନ୍ତାନର ଜନକ ହେବାର ସୌଭାଗ୍ୟ ମୋତେ ପ୍ରାପ୍ତ ହୋଇଥିଲା । ନିର୍ଦ୍ଧାରିତ ସମୟର ପ୍ରାୟ ମାସେ ପୂର୍ବରୁ ଜନ୍ମ ହୋଇ ଥିବାରୁ ପିଲାଟିର ସ୍ୱାସ୍ଥ୍ୟ ଅଭାବିତ ଭାବେ ଦୁର୍ବଳ ଥିଲା । ଜନ୍ମବେଳକୁ ଓଜନ ଥିଲା ମାତ୍ର ୧.୬ କିଲୋଗ୍ରାମ ଅର୍ଥାତ୍ ସାଢ଼େ ତିନି ପାଉଣ୍ଡ । ପ୍ରଥମ ଦୁଇଦିନ କେବଳ ନାଜାଲ୍ ଫିଡିଙ୍ଗ୍‌ରେ ରହିଲା । କିନ୍ତୁ ବଂଧୁ, ବାନ୍ଧବ ସମସ୍ତେ କହିଲେ ସୌଭାଗ୍ୟବନ୍ତ ପିଲାଟିଏ । ବାପାପାଇଁ ପ୍ରଥମ ଡିଭିଜନ୍ ପୋଷ୍ଟିଙ୍ଗ୍‌ର ଶୁଭ ସନ୍ଦେଶ ନେଇ ଆସିଛି ।

ପତ୍ନୀ ଓ ଆଠମାସର ପ୍ରିମାଚ୍ୟୁଅର୍ ପୁଅକୁ କଟକ ଦୋଳମୁଣ୍ଡେଇସ୍ଥିତ ଶ୍ୱଶୁରାଳୟରେ ଛାଡ଼ି, ମୁଁ ଡିଭିଜନ ଦାୟିତ୍ୱ ନେବାପାଇଁ ଓଡ଼ିଶା ରୋଡ ଟ୍ରାନ୍‌ସପୋର୍ଟ ବସ୍‌ରେ ଯାତ୍ରାକରି ଅକ୍‌ଟୋବର ମାସ ୧୦ ତାରିଖ ସକାଳ ଆଠଟା ସୁଦ୍ଧା ନବରଂଗପୁର ବସ୍‌ଷ୍ଟାଣ୍ଡରେ ପହଞ୍ଚିଗଲି ।

ଭୁବନେଶ୍ୱରଠାରୁ ନବରଂଗପୁର ବସ୍‌ରେ ବସିଲା ପରଠାରୁ ମନେମନେ ଭାବୁଥିଲି, ସ୍ଥାନଟିର ନାଁ ନବରଂଗପୁର କାହିଁକି ରଖାଯାଇଛି ? ନିଶ୍ଚିତ ଭାବେ ନଅ ରଂଗର କିଛିଟା ଝଲକ୍ ଏଠି ଥିବ । ନାଚ, ଗୀତ, ବା ଥିଏଟର, ତାମସା ଆଦିର ପ୍ରାଧାନ୍ୟ ଥିବ, ଅଥବା ଏଠିକାର ଲୋକମାନେ ରସଗ୍ରାହୀ ବା ରଂଗରଂଗିଆ ମିଜାଜ୍‌ର ହୋଇଥିବେ । କିନ୍ତୁ ପହଞ୍ଚିଲା ପରେ ଦେଖିଲି, ସେ ସବୁର କିଛି ଗନ୍ଧ ମଧ୍ୟ ନାହିଁ ।

ସହର କହିଲେ ମୁଖ୍ୟ ରାସ୍ତାର ଦୁଇପଟେ ଦୁଇଧାଡ଼ି ଦୋକାନଘର । ଗୋଟିଏ ପଟେ ଡାକ୍ତରଖାନା ଓ ଜଗନ୍ନାଥ ମନ୍ଦିର । ମଝିରେ ନବରଂଗପୁରର ଅଧିଷ୍ଠାତ୍ରୀ ଦେବୀ ମା' ଭଣ୍ଡାର କରଣୀ ବିଜେ ହୋଇଛନ୍ତି । ସହରର ଅପର ପାର୍ଶ୍ୱରେ ମୁଖ୍ୟ ଡାକଘର ଓ ତା' ପାଖକୁ ଲାଗି ଡି.ଏଫ୍.ଓ.ଙ୍କ ଅଫିସ୍ ଏବଂ ସଂଲଗ୍ନ ବାସଗୃହ । ଡାକଘର ସାମ୍ନାରେ ନବରଂଗପୁର ସବ୍‌ଡିଭିଜନ୍‌ର ମୁଖ୍ୟ ପ୍ରଶାସନିକ ଅଧିକାରୀ ଏସ୍.ଡି.ଓ.ଙ୍କ ବାସଗୃହ । ଶେଷ ଆଡ଼କୁ ମିଶନ୍ ଡାକ୍ତରଖାନା, ପୂର୍ତ୍ତବିଭାଗ ଡାକବଂଗଳା, କଲୋନି ଏବଂ ତା' ପଛକୁ ବନ ଉନ୍ନୟନ ନିଗମର ଡିଭିଜନାଲ୍ ମ୍ୟାନେଜରଙ୍କ ବାସଗୃହ ଓ ଅଫିସ୍ । ପରେପରେ ଆରମ୍ଭ ହୋଇଯାଇଥାଏ, 'ତାରାଗାଁ'ର ବୁଦୁବୁଦିକିଆ ଜଙ୍ଗଲ । ମଝିରେ ମଝିରେ ଦୁଇ ଚାରିଟା ସାହି ବସ୍ତି ।

ମନେମନେ ଭାବିଲି ଏମିତି ଏକ ରଂଗହୀନ, ବେରସିକିଆ ସ୍ଥାନର ନାଁ ନବରଂଗପୁର କାହିଁକି ଦିଆଗଲା । ପରେ ଜାଣିବାକୁ ପାଇଲି ଏଠି ପରଜା ସଂପ୍ରଦାୟର ଆଦିବାସୀମାନେ ମୁଖ୍ୟତଃ ବସବାସ କରୁଥିଲେ । ପରଜାଙ୍କର ଏକ ଉପ ସଂପ୍ରଦାୟ ଝୋଡ଼ିଆ ପରଜାଙ୍କର ଅଞ୍ଚଳ ଭାବେ ଏହି ସ୍ଥାନ ବେଶ୍ ଜଣାଶୁଣା ଥିଲା । ଏଠାରେ ନାରଙ୍ଗୀ ପରଜା ବା ନାରଙ୍ଗ ପରଜା ନାମରେ ଜଣେ ଆଦିବାସୀ ସଂପ୍ରଦାୟର ଗାଁ ମୁଖିଆ ମୁଖ୍ୟତଃ ବସବାସ କରି ରହୁଥିବାରୁ, ଏହି ଅଂଚଳର ନାମ ପରବର୍ତ୍ତୀ ସମୟରେ ନାରଂଗୀପୁର ବା ନାରଂଗପୁର ନାମରେ ନାମିତ ହୋଇଥିଲା । 'ନାରଙ୍ଗପୁର' ପରବର୍ତ୍ତୀ କାଳରେ ଶୁଦ୍ଧିକୃତ ହୋଇ ନବରଂଗପୁର ନାମରେ ପ୍ରଚଳିତ ହୋଇଛି । ପ୍ରାଚୀନ ନନ୍ଦପୁର ଏବଂ ପରେ ଜୟପୁର ରାଜ୍ୟର ଏହା ଅଂଶବିଶେଷ ଥିଲା ।

ନବରଂଗପୁରରେ ମୋର ରହିବାର ବନ୍ଦୋବସ୍ତ ସ୍ଥାନୀୟ ପୂର୍ତ୍ତବିଭାଗ ଡାକବଂଗଳାରେ କରାଯାଇଥାଏ । ମଧ୍ୟାହ୍ନ ଭୋଜନ ପାଇଁ ଡି.ଏଫ୍.ଓ.ଙ୍କ ଘରେ ନିମନ୍ତ୍ରଣ ଥିଲା । ସେହିଦିନ ଅର୍ଥାତ୍ ଅକ୍ଟୋବର ୧୦ ତାରିଖ ଅପରାହ୍ଣରେ ଶ୍ରୀଯୁକ୍ତ ମହାନ୍ତିଙ୍କଠାରୁ ନବରଂଗପୁର ବନଖଣ୍ଡର ଦାୟିତ୍ୱ ଗ୍ରହଣ କଲି ।

ସେଦିନ ଅପରାହ୍ନରେ ହିଁ ନବରଂଗପୁରର ପୂର୍ବତନ ଡି.ଏଫ୍.ଓ. ଶ୍ରୀଯୁକ୍ତ ମହାନ୍ତି, ତାଙ୍କର ପ୍ରାୟ ସମସ୍ତ ଆସବାବପତ୍ର ଟ୍ରକଯୋଗେ ଭୁବନେଶ୍ୱର ପଠାଇଦେଲେ । ତା' ପରଦିନ ସକାଳ ଆଠଟା ସୁଦ୍ଧା ଗୋଟିଏ ଆମ୍ବାସେଡ୍‌ର କାର୍‌ରେ ଶ୍ରୀଯୁକ୍ତ ମହାନ୍ତି, ମିସେସ୍ ମହାନ୍ତି ଦୁଇ ଶିଶୁ କନ୍ୟାଙ୍କ ସହ ବାହାରିଗଲେ ବିଜୟନଗରମ୍ । ସେଠୁ ଟ୍ରେନ୍ ଧରି ଭୁବନେଶ୍ୱର ଯିବାର ବନ୍ଦୋବସ୍ତ ହୋଇଥାଏ । ସେମାନେ ନବରଂଗପୁର ଛାଡ଼ିବାର ଘଣ୍ଟାଏ, ଦେଢ଼ଘଣ୍ଟାପରେ ମୁଁ ଅଫିସ୍ ଜିପ୍‌ରେ ବାହାରିଲି, କୋରାପୁଟ । ନବରଂଗପୁର ଡି.ଏଫ୍.ଓ.ଙ୍କର ପୁରୁଣା ପେଟ୍ରୋଲ୍ ଜିପ୍ ଖଣ୍ଡିଏ ଥାଏ । ଡ୍ରାଇଭର ଥାଏ, ସ୍ଥାନୀୟ ଜଣେ ଖ୍ରୀଷ୍ଟୀୟାନ୍ ଯୁବକ ରାୟ । ସଦା ହସହସ ମୁହଁ । ବୟସରେ ବୋଧହୁଏ ମୋ ସମବୟସର ବା ମୋଠାରୁ ଛୋଟ ହୋଇପାରେ । କାରଣ ଏବେ ବି ସେ ସରକାରୀ ଚାକିରିରେ ବାହାଲ ଅଛି ।

ଆଜିକାଲି ଯେପରି ରାଜଧାନୀ ଭୁବନେଶ୍ୱରରେ ଯେ କୌଣସି ଉଚ୍ଚ ପଦବୀ ବା ଆସନ ଅଳଙ୍କୃତ କରିବାପରେ, ଉକ୍ତ ଅଧିକାରୀ ଜଣକ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରି, ତାଙ୍କର ଅପାର କରୁଣା ଭିକ୍ଷା କରିବା ପାଇଁ ପୁରୀ ଦଉଡ଼ନ୍ତି, ସେତେବେଳେ ମଧ୍ୟ

ଡି.ଏଫ୍.ଓ.  ନୂଆକରି କାର୍ଯ୍ୟଭାର ଗ୍ରହଣ କଲେ ସର୍କଲ କଞ୍ଜରଭେଟର ବା ବନମଣ୍ଡଳାଧୀଶଙ୍କୁ ପ୍ରଥମେ ସାକ୍ଷାତ କରି, ତାଙ୍କର ଆଶୀର୍ବାଦ ଓ ଆନୁଷ୍ଠାନିକ ଉପଦେଶ ଗ୍ରହଣ କରିବାର ପ୍ରଥା ଥିଲା ।

ସେତେବେଳେ କୋରାପୁଟ ବନମଣ୍ଡଳର କଞ୍ଜରଭେଟର ଥିଲେ ଶ୍ରୀଯୁକ୍ତ ଗୌରଗୋବିନ୍ଦ ଦାସ । କୋରାପୁଟ ମଣ୍ଡଳର ବ୍ୟାପକତା ବା ବିସ୍ତୃତି, ଅବିଭକ୍ତ କୋରାପୁଟ ଜିଲ୍ଲା, ଅବିଭକ୍ତ କଳାହାଣ୍ଡି ଜିଲ୍ଲା ଏବଂ ବଲାଙ୍ଗୀର ଜିଲ୍ଲାକୁ ସଂପ୍ରସାରିତ ଥିଲା । ରାୟଗଡ଼, ଜୟପୁର, ନବରଂଗପୁର, କଳାହାଣ୍ଡି, ଖଡ଼ିଆଳ ଏବଂ ବଲାଙ୍ଗୀର ଏହିପରି ଛଅଗୋଟି ଡିଭିଜନକୁ ନେଇ ଗଠିତ କୋରାପୁଟ ବନମଣ୍ଡଳ ଆୟତନ ଦୃଷ୍ଟିରୁ ଥିଲା ବେଶ୍ ବ୍ୟାପକ ।

ଦିନପ୍ରାୟ ଏଗାରଟା ବେଳେ କୋରାପୁଟ ସ୍ଥିତ ବନ ସଂରକ୍ଷକଙ୍କ ଅଫିସ୍‌ରେ ପହଞ୍ଚି ତାଙ୍କୁ ସାକ୍ଷାତ କଲି ଓ ନିଜର ପରିଚୟ ଦେଲି । ଏହାପରେ ଚାଲିଲା ଆନୁସଙ୍ଗିକ ବାର୍ତ୍ତାଳାପ । ଡିଭିଜନ ବିଷୟରେ, ସର୍କଲ ସଂପର୍କରେ ଏବଂ ନବରଂଗପୁର ଡିଭିଜନର କେତୋଟି ନିର୍ଦ୍ଦିଷ୍ଟ ସମସ୍ୟା ସଂପର୍କରେ । ବିଶେଷକରି ଜଙ୍ଗଲରୁ ସରକାରୀ ସ୍ତରରେ କାଠ କାଟିବା ବନ୍ଦ ହେଲାପରେ, ପ୍ରଜା କାଠକୁ ନେଇ ଯେପରି ହରିଲୁଟ୍ ଚାଲିଛି, ସେ ବାବଦରେ ସତର୍କତାର ସହ ପଦକ୍ଷେପ ନେବାପାଇଁ କଞ୍ଜରଭେଟର ମହୋଦୟ ଉପଦେଶ ଦେଇଥିଲେ ।

ମୁଁ ନବରଂଗପୁର ଡିଭିଜନରେ ଜଏନ୍ କରିବା ସମୟକୁ ଜଙ୍ଗଲରେ ପୂର୍ବରୁ ଚାଲି ଆସୁଥିବା 'କୁପ୍' କାମ ବନ୍ଦ କରିଦିଆଯାଇଥାଏ ଏବଂ ବେସରକାରୀ କଂଟ୍ରାକ୍ଟର ବଦଳରେ, କେବଳ ଓଡ଼ିଶା ବନନିଗମ ଜରିଆରେ ଜଙ୍ଗଲରୁ କାଠ କାଟିବାର ବନ୍ଦୋବସ୍ତ ହୋଇଥାଏ । ଯେଉଁ ବେସରକାରୀ କାଠ ବ୍ୟବସାୟୀମାନେ ଏହି ବ୍ୟବସ୍ଥା ଫଳରେ ଜଙ୍ଗଲରୁ କାଠ କାଟିବା କାର୍ଯ୍ୟରୁ ବଂଚିତ ହେଲେ, ସେମାନେ ଅନ୍ୟ ଉପାୟ ନପାଇ 'ପ୍ରଜାକାଠ' କାରବାରକୁ ଆପଣେଇ ନେଲେ । ଏହି ପଦ୍ଧତିରେ ଅଳ୍ପ ମୂଲ୍ୟରେ ବା ନାମକୁ ମାତ୍ର ମୂଲ୍ୟ ପଇଠ କରି ଆଦିବାସୀମାନଙ୍କ ନିଜସ୍ୱ ଜମିରୁ କିଛି ଗଛ କିଣି ସେଥିରେ ଜଙ୍ଗଲରୁ ଚୋରାକାଠ ମିଶାଇ ବେଶ୍ କିଛି ଉପାର୍ଜନ କରୁଥାନ୍ତି ସେମାନେ । ଏହି କାର୍ଯ୍ୟରେ ବିଭିନ୍ନ ସ୍ତରରେ ବେଶ୍ କିଛି ପଇସା କାରବାର ହେବାର ସଂଭାବନା ଥିବାରୁ, ସେ ସମୟରେ ପ୍ରଜାକାଠ ବ୍ୟବସାୟୀ ଏକ ଆଖିଦୃଶିଆ ବ୍ୟବସାୟରେ ପରିଣତ ହୋଇଥିଲା । ଡି.ଏଫ୍.ଓ.ଙ୍କ ପାଇଁ କିନ୍ତୁ ପ୍ରତିଟି ସ୍ତରରେ ସତର୍କ ନରହିଲେ ପାଦେପାଦେ ବିପଦ !

ଏମିତି କଥାବାର୍ତ୍ତା ଓ ଉପଦେଶ ମଝିରେ ମୋ ଆସିବା ବିଷୟ  କଞ୍ଜରଭେଟର ମହୋଦୟ ତାଙ୍କ ସ୍ତ୍ରୀଙ୍କୁ ଜଣେଇ ଦେଇଥିଲେ ଏବଂ ମୋତେ ତାଙ୍କ ଘରେ ମଧ୍ୟାହ୍ନ

ଭୋଜନ କରିବା ପାଇଁ ଆମନ୍ତ୍ରଣ କରିଥିଲେ । ମଧ୍ୟାହ୍ନ ଭୋଜନ ଅବସରରେ ମିସେସ୍ ଦାସଙ୍କ ସହ ପରିଚୟ ହୋଇଗଲା । ବେଶ୍ ସ୍ନେହୀ ଓ ମେଳାପି । ନିଜ ପରିବାରର ଜଣେ ସଦସ୍ୟ ଭଳି ମୋତେ ବ୍ୟବହାର କରୁଥିଲେ । ସେବେକାର ଅନୁଭୂତିରୁ ଯାହାକିଛି ଜାଣିଛି, ବନ ବିଭାଗ ଅଫିସରମାନଙ୍କ ଭିତରେ ଗୋଟିଏ ପାରିବାରିକ ସହୃଦୟତା ଭରି ରହିଥିଲା । ଏମିତିବି ଘଟଣା ଘଟିଛି, ଯେବେ ଜଣେ ଅଫିସର୍ ବଦଳି ହୋଇଯାଏ ଏବଂ ତାଙ୍କ ପୁଅ ବା ଝିଅର ଯଦି ମାଟ୍ରିକ୍ ପରୀକ୍ଷା ଦେବାର ଥାଏ, ତେବେ ସେମାନେ ନିଶ୍ଚିନ୍ତରେ ପିଲାମାନଙ୍କୁ ପରବର୍ତ୍ତୀ ଅଫିସର୍ଙ୍କ ଘରେ ଛାଡ଼ି ଦେଇ ଯାଉଥିଲେ । ପିଲାମାନଙ୍କର ମଧ୍ୟ ସେଠି ରହିବା ପାଇଁ କୌଣସି ଦ୍ୱିଧା ବା ସଂକୋଚ ନଥାଏ । ନିଜ ପରିବାର ଭଳି ସେମାନେ ସେଠି ମିଳିମିଶି ଚଳି ଯାଉଥିଲେ ।

ମଧ୍ୟାହ୍ନ ଭୋଜନ ପରେ ଅପରାହ୍ନ ପ୍ରାୟ ତିନିଟାବେଳକୁ ମୁଁ ନବରଂଗପୁର ଫେରି ଆସିବା ପାଇଁ ବାହାରିଲି । କୋରାପୁଟ ଜୟପୁରର ଦୂରତା ୨୦ କିଲୋମିଟର କିନ୍ତୁ ପ୍ରାୟ ପାଞ୍ଚ ଛଅ କିଲୋମିଟର ଆସିଲା ପରେ ପଡ଼ିବ ଘାଟିରାସ୍ତା । ଏଗାର ବାର କିଲୋମିଟର ଲମ୍ବର ରାସ୍ତା କୋରାପୁଟ ଘାଟି ତଳକୁ ଗଡ଼ିଯାଇ ଶେଷହୋଇଛି ଜୟପୁର ସହର ଉପକଣ୍ଠରେ । ଆମେ ଘାଟି ରାସ୍ତାରେ କିଛି ବାଟ ତଳକୁ ଗଡ଼ି ଆସିଛୁ, ପଛରୁ ପାଟି ଶୁଭିଲା । ମନେହେଲା ପଛରୁ ଚିତ୍କାର କରି କେହି ଜଣେ କିଛି କହୁଛି । ଅନ୍ୟ କାହାକୁ କେହି କିଛି କହୁଛି ଭାବି ଆମ ଜିପ୍ ଡ୍ରାଇଭର ଆଗକୁ ଗାଡ଼ି ଗଡାଇ ଚାଲିଥାଏ । କିଛି ସମୟ ବିତିଗଲା ପରେ ମଧ୍ୟ ପଛରୁ ପାଟି ବନ୍ଦ ନହେବାରୁ, ଡ୍ରାଇଭର ପଛକୁ ଫେରି ଚାହିଁଲା । ପଛରେ ଜଣେକ ଜଙ୍ଗଲ କଣ୍ଟ୍ରାକ୍ଟରଙ୍କ ଜିପ୍ ଆସୁଥିଲା ଏବଂ ସେ ଜିପ୍‌ର ଡ୍ରାଇଭର କିଛି ପାଟି କରି କହୁଥିଲା । ତା' କଥାବାର୍ତ୍ତାରୁ ଏବଂ ହାତଠାରରୁ ମୋ ଡ୍ରାଇଭର ରାୟ ଜାଣିପାରିଲା ଆମ ଜିପ୍‌ର ଡାହାଣ ପଟ ଚକା ଧୀରେ ଧୀରେ ବାହାରି ଯାଉଛି ଏବଂ ସଂପୂର୍ଣ୍ଣ ବାହାରିଯିବା ଅବସ୍ଥାରେ ପହଞ୍ଚିଲାଣି ।

ବାଁ ପଟେ ପାହାଡ଼ କାନ୍ଥ ଏବଂ ଡାହାଣପଟେ ଷାଠିଏ, ସତୁରୀଫୁଟ ଗଭୀର ଖାଇ । ଚକଟି ସଂପୂର୍ଣ୍ଣ ବାହାରିଗଲେ, ଗାଡ଼ିଟି ନିୟନ୍ତ୍ରଣ ହରାଇ ଗଭୀର ଖାତ ଭିତରକୁ ଖସି ପଡ଼ିବ । କାରଣ ଘାଟି ରାସ୍ତାରେ ଗାଡ଼ି ନିମ୍ନଗାମୀ ହେଉଛି । ଡ୍ରାଇଭର ମୁହଁରୁ ଏକଥା ଶୁଣି ମୁଁ ଭୀଷଣ ଡରିଗଲି । ନବରଂଗପୁର ଜିପ୍‌ରେ ଏହା ମୋର ପ୍ରଥମ ଯାତ୍ରା ଏବଂ ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିଲା ପରି, ପ୍ରଥମ ଦିନରୁ ହିଁ ଗାଡ଼ି ଧୋକା ଦେଲାଣି । ଜୀବନ ବିକଳରେ ମୁଁ ଗାଡ଼ିରୁ ଡେଇଁବାକୁ ବସିଲି, କିନ୍ତୁ ଡ୍ରାଇଭର ମୋର ହାତକୁ ଟାଣି ଧରି

ବସେଇଦେଲା ଏବଂ ନିର୍ଦ୍ଦେଶ ଦେବା ଭଂଗୀରେ କହିଲା, ଆପଣ ସ୍ଥିର ହୋଇ ବସନ୍ତୁ । ଯାହା କରିବା କଥା ମୁଁ କରୁଛି । ଅନତିଦୂରରେ ବାଁପଟେ ପାହାଡ଼ କାଟିରେ ଖୋଳାଯାଇଥିବା ଜାଗାଟିଏ ଆଖିରେ ପଡ଼ିଲା । ଜିପ୍‌କୁ ନେଇ ସେଇଠି ଡ୍ରାଇଭର ଢୁକାଇଲା । ଜିପ୍ ଗିଅରରେ ଥିଲା । ତଥାପି ତାହା ଖୋଳାଯାଇଥିବା ସ୍ଥାନରେ ଧକ୍‌କା ଖାଇ କିଛି ବାଟ ପଛକୁ ଫେରି ଆସିଲା ଏବଂ ପୁଣି ଆଗକୁ ଗଡ଼ିଯାଇ, ସେହି ଖାଲ ସ୍ଥାନରେ ଅଟକି ଗଲା । ଡ୍ରାଇଭରର ପ୍ରତ୍ୟୁତ୍ପନ୍ନମତି ହେତୁ, ଆମେ ଏକ ନିଶ୍ଚିତ ଦୁର୍ଘଟଣାରୁ ରକ୍ଷା ପାଇଗଲୁ ।

ଆମ ପଛେପଛେ ଉକ୍ତ କଣ୍ଟ୍ରାକ୍ଟରଙ୍କ ଜିପ୍‌ଟି ଆସି ସେଠି ପହଞ୍ଚିଗଲା । ବନ ବିଭାଗରେ କଣ୍ଟ୍ରାକ୍‌ଟରୀ କରୁଥିବାରୁ ଡି.ଏଫ୍.ଓ.ଙ୍କ ଜିପ୍‌କୁ ସେ ଭଲଭାବେ ଜାଣିଥିଲେ । ପଛେପଛେ ଆସୁଥିଲାବେଳେ ଦେଖିଲେ ଯେ ଆମ ଜିପ୍‌ର ପଛ ଟାୟାରଟି ଧୀରେଧୀରେ ବାହାରି ଯାଉଛି । ତେଣୁ ସେ ପାଟି କରି ଏବଂ ହର୍ଣ୍ଣ ଦେଇ ଆମ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କଲେ । କଣ୍ଟ୍ରାକ୍ଟର ମହାଶୟଙ୍କୁ ଅଶେଷ ଅଶେଷ ଧନ୍ୟବାଦ ଜଣାଇଲି । ତାପରେ ସେ ମୋତେ ଆଣି ନବରଂଗପୁରରେ ପହଞ୍ଚାଇ ଦେଲେ । ଆସନ୍ନ ବିପଦରୁ ରକ୍ଷା ପାଇଗଲି ସିନା; କିନ୍ତୁ ପ୍ରଥମ ଦିନର ଏହି ଘଟଣାରୁ ମନରେ ଏକ ଭୟ ପଶିଗଲା । ନିଜେ ଗାଡ଼ି ଡ୍ରାଇଭିଂ ଶିଖିବା କଥା ଭାବିଲା ବେଳକୁ ମୋର ଏଇ ଦୃଶ୍ୟ ମନେ ପଡ଼ିଯାଉଥିଲା । ସେହି କାରଣରୁ ଏ ପର୍ଯ୍ୟନ୍ତ ମଧ୍ୟ ମୁଁ ନିଜେ ଗାଡ଼ି ଚଳାଇବା ଶିଖି ପାରିଲି ନାହିଁ ।

ନବରଂଗପୁର ବେଶୀ ବଡ଼ ଡିଭିଜନ୍ ନୁହେଁ । ଅବିଭକ୍ତ କୋରାପୁଟ ଜିଲ୍ଲାର (ସଂପ୍ରତି ନବରଂଗପୁର ଏକ ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ପାଇଛି) ଏହା ଏକ ମୁଖ୍ୟ ସହର- ନବରଂଗପୁର ସବ୍‌ଡିଭିଜନ୍‌ର ସଦର ମହକୁମା । ସଂପୂର୍ଣ ନବରଂଗପୁର ସବଡିଭିଜନ୍ ଓ ଜୟପୁର ସବ୍‌ଡିଭିଜନ୍‌ର ବୋରିଗୁମା ଏବଂ କୋଟପାଡ଼ ବ୍ଲକ୍‌କୁ ନେଇ ନବରଂଗପୁର ଫରେଷ୍ଟ ଡିଭିଜନ୍‌ର ଭୌଗଳିକ ବ୍ୟାପ୍ତି । ସେତେବେଳେ ଜଙ୍ଗଲ ସଂପଦରେ ଭରପୂର ଥିଲା ନବରଂଗପୁର । ଉମରକୋଟ, ଝରିଗାଁ, ଶଶାହାଣ୍ଡି, ମୈଦଲପୁର, ଡାବୁଗାଁ ଏବଂ କୋଟପାଡ଼ (ଚିତ୍ରା ରିଜର୍ଭ ଜଙ୍ଗଲ) ଆଦି ଇଲାକାରେ ଭରି ରହିଥିଲା ଶାଳ ଜଙ୍ଗଲ । ବିରାଟ କାୟା ବିସ୍ତାର କରି ଡେଙ୍ଗା ଡେଙ୍ଗା ଶାଳଗଛଗୁଡ଼ିକ ରାସ୍ତା କଡ଼ଠୁଁ ସଂରକ୍ଷିତ ଜଂଗଲ ପର୍ଯ୍ୟନ୍ତ ନିଜର ଅସ୍ତିତ୍ୱ ଜାହିର କରୁଥାନ୍ତି । ଆୟତନରେ ବିଶେଷ ବଡ଼ ଡିଭିଜନ ହୋଇନଥିଲେ ମଧ୍ୟ, ଉପାନ୍ତ ଡିଭିଜନ୍ ହୋଇଥିବା କାରଣରୁ ଏହାର ପ୍ରାଧାନ୍ୟ ଥିଲା ନିଆରା । ତତ୍‌କାଳୀନ ମଧ୍ୟପ୍ରଦେଶର (ଅଧୁନା ଛତିଶଗଡ଼) ଜଗଦଲପୁରଠାରୁ ଆରମ୍ଭକରି ରାୟଗଡ଼ା ପର୍ଯ୍ୟନ୍ତ ଘଞ୍ଚ ଜଙ୍ଗଲର ସୀମାରେଖା ନବରଂଗପୁର ଡିଭିଜନର ସୀମାକୁ ଲାଗିଥାଏ । ଏହି ଡିଭିଜନର ଚନ୍ଦାହାଣ୍ଡି ବ୍ଲକ୍‌କୁ ଲାଗିଛି, କଳାହାଣ୍ଡି ଜିଲ୍ଲାର ଜଙ୍ଗଲ ।

ପ୍ରଥମ କରି ଡିଭିଜନ ଦାୟିତ୍ୱ ଗ୍ରହଣ କରୁଥିବା ତରୁଣ ଆଇ.ଏଫ୍.ଏସ୍. ଅଫିସରଙ୍କ ପାଇଁ ନବରଂଗପୁର ଏକ ପ୍ରକୃଷ୍ଟ ଡିଭିଜନ କହିଲେ ଅତ୍ୟୁକ୍ତି ହେବନାହିଁ । ଆୟତନ ଓ ବ୍ୟାପ୍ତି ଦୃଷ୍ଟିରୁ ଯେପରି ସ୍ୱତଃ ସଂହତ, ସେହିପରି ଜଙ୍ଗଲ ସମ୍ପଦରେ ମଧ୍ୟ ସେ ସମୟରେ ଭରପୂର ଥିଲା ନବରଂଗପୁର ଡିଭିଜନ୍ । ପଶ୍ଚିମପଟେ ସହରର ପରିସୀମାରୁ ଅରମ୍ଭ ହୋଇ ଯାଇଥିଲା ଜଙ୍ଗଲ । ଏପରିକି ସହର ଉପାନ୍ତରେ ଥିବା ଖ୍ରୀଷ୍ଟୀୟାନ୍ ହସ୍‌ପିଟାଲ ହତାରେ ମଧ୍ୟ ଶହେ ବର୍ଷର ପୁରୁଣା, ପାଞ୍ଚ, ଛଅଫୁଟ ଗୋଲେଇ ଗଣ୍ଡି ବିଶିଷ୍ଟ ଡେଙ୍ଗା ଡେଙ୍ଗା ଶାଳଗଛମାନ ଠିଆ ହୋଇଥିଲା । ନବରଂଗପୁର ସବଡିଭିଜନ୍‌ର ତାରା ଗାଁ, ପାପଡ଼ାହାଣ୍ଡି, ମୈଦଲପୁର ଓ ଉମରକୋଟରେ ଥିବା ସଂରକ୍ଷିତ ଜଙ୍ଗଲରେ ଶାଳ, ପିଆଶାଳ ତଥା ଅନ୍ୟାନ୍ୟ ମୂଲ୍ୟବାନ ଗଛ ଭରି ରହିଥିବା ବେଳେ, ଝରିଗାଁ ବ୍ଲକ୍‌ର କେତେକ ଅଂଶରେ ପ୍ରାକୃତିକ ଶାଗୁଆନ୍ ଜଙ୍ଗଲ ରହିଥିଲା : ନ୍ୟାଚୁରାଲ ଇକୋଟୋନ୍ ।

ପାପଡ଼ାହାଣ୍ଡି ବ୍ଲକ୍‌ର ଫରେଷ୍ଟ ଚେକ୍‌ଗେଟ୍ ସାମ୍ନାରେ ଯାଇଥିବା ରାସ୍ତାର ଦୁଇକଡ଼ରେ ଥାଏ ଚମ୍ପା ଗଛର ବିଶାଳ ପ୍ରାକୃତିକ ଜଙ୍ଗଲ । ନନ୍ଦନକାନନର ଚମ୍ପାବଣ କହିଲେ ଅତ୍ୟୁକ୍ତି ହେବନାହିଁ । ପାଞ୍ଚ, ଛଅପୁଟ ପରିଧି ବିଶିଷ୍ଟ ଶହେ ଫୁଟ ଦେଢ଼ଶ ଫୁଟ ଉଚ୍ଚା ଡେଙ୍ଗା ଡେଙ୍ଗା ଚମ୍ପା ଗଛ ଗୁଡ଼ିକ ଫୁଲରେ ଭର୍ତ୍ତି ହୋଇ, ପାଖଆଖ ଇଲାକାକୁ ମହକିତ କରି ଦେଉଥାନ୍ତି । ଅନତିଦୂରରେ ପାପଡ଼ାହାଣ୍ଡିର ପବିତ୍ର ଏବଂ ପ୍ରସିଦ୍ଧ ଶିବ ମନ୍ଦିର । ମନେହୁଏ, ଯେପରି ଶିବଙ୍କ ମସ୍ତକରେ ଲାଗିହେବା ପାଇଁ ଏହି ଚମ୍ପା ବଣର ସୃଷ୍ଟି ।

ଉମରକୋଟ, ଶଶାହାଣ୍ଡି, ଡାବୁଗାଁ ଏବଂ ଝରିଗାଁରେ ବନ ବିଭାଗର ସୁନ୍ଦର ସୁନ୍ଦର ଡାକବଙ୍ଗଳା ବା ବିଶ୍ରାମଗୃହମାନ ଥିଲା । ପାପଡ଼ାହାଣ୍ଡିରେ ଥିଲା ଓଡ଼ିଶା ବନ ନିଗମର ଗୋଟିଏ ଛୋଟ ବିଶ୍ରାମାଗାର । ଏପଟେ ଜୟପୁର ସହରର କୋଟପାଡ଼ ବ୍ଲକରେ, ମଧ୍ୟ ପ୍ରଦେଶର ସୀମାନ୍ତକୁ ଲାଗିଥିବା 'ଚାନ୍ଦିଲି' ଗାଁରେ ବନ ବିଭାଗର ଯେଉଁ ବଙ୍ଗଳାଟି ଥିଲା, ତାର ଚାହିଦା ତଥା ଗୁରୁତ୍ୱ ସବୁଠୁ ବେଶି ଥିଲା । କାରଣ ବଙ୍ଗଳାଟି ଦୁଇ ରାଜ୍ୟର ସୀମାରେଖା ଉପରେ ହିଁ ଥିଲା ଏବଂ ସେଠୁ ରାୟପୁର ଜିଲ୍ଲାର ଜଗଦଳପୁର ସହରର ଦୂରତା ମାତ୍ର ପନ୍ଦର କିଲୋମିଟର ଥିଲା । ସେ ସମୟରେ ଜଗଦଳପୁର ମଧ୍ୟପ୍ରଦେଶ ବନବିଭାଗର ଏକ ପେଣ୍ଠସ୍ଥଳୀ ଥିଲା ଏବଂ ସେଠାରେ ପନ୍ଦରରୁ ଊର୍ଦ୍ଧ୍ୱ ଫରେଷ୍ଟ ଅଫିସର ରହୁଥିଲେ । ଏହା ବ୍ୟତୀତ ଦୋକାନ ବଜାର ଏବଂ ଗଠନ ପରିପାଟୀ ଦୃଷ୍ଟିରୁ ସହରଟି ବେଶ୍ ଉନ୍ନତ ମାନର ଥିଲା । ମୋ ପରି ଏକଲା ମଣିଷଟି ପାଇଁ ଦିନସାରା ଜଙ୍ଗଲ ପରିଦର୍ଶନ କରି, ରାତିରେ ନିକଟସ୍ଥ କୌଣସି ଏକ ବିଭାଗୀୟ ବଙ୍ଗଳାରେ ରାତ୍ରୀଯାପନ କରିବା ଉଭୟ ନିଶା ଓ ପେଶାରେ ପରିଣତ ହୋଇଯାଇଥିଲା ।

କବିଗୁରୁ ୰ ରବୀନ୍ଦ୍ରନାଥ ଟାଗୋରଙ୍କର କବିତାରୁ ପଂକ୍ତିଟିଏ ମନେ ପଡ଼ିଗଲା;

*'ତୋମାର ଡାକ ଶୁନେ*

*ଯଦି କେଓ ନା ଆସେ;*

*ତବେ ଏକ୍‌ଲା ଚଲୋ ।'*

ନବରଂଗପୁର ଫରେଷ୍ଟ ଡିଭିଜନ୍‌ରେ, ରହଣିର ପ୍ରଥମ ଛଅମାସ ମୁଁ ଏକଲା ରହୁଥିଲି । ଅଫିସ୍ କାମ ସରିଗଲା ପରେ, ଫୁରୁସତ୍ ମିଳିଲେ ବନଖଣ୍ଡର ବିଭିନ୍ନ ସ୍ଥାନକୁ ଗସ୍ତକରି, ଶାଳ, ପିଆଶାଳ, ଅସନ, ଅର୍ଜୁନ, କରଂଜ, କୁସୁମ ଗଛରେ ଭରପୂର ଜଙ୍ଗଲର ଅନୁପମ ଶୋଭା ସଂପଦକୁ ଉପଭୋଗ କରୁଥିଲି । ଅବଶ୍ୟ ମୋ କ୍ଷେତ୍ରରେ ଡାକଶୁଣି କେହି ନ ଆସିବାର ଅବକାଶ ନଥିଲା, କିନ୍ତୁ ପରିସ୍ଥିତି ଚାପରେ, ସ୍ତ୍ରୀ ଓ ଶିଶୁପୁତ୍ରଙ୍କୁ କଟକ ଦୋଳମୁଣ୍ଡାଇସ୍ଥିତ ଶ୍ୱଶୁରାଳୟରେ ଛାଡ଼ି, ନବରଂଗପୁରରେ ମୁଁ ୧୯୮୦ ମସିହା ମେ' ମାସ ପର୍ଯ୍ୟନ୍ତ 'ଏକଲା' ମଣିଷଟିଏର ଜୀବନ ବିତାଉଥିଲି । ସେ ସମୟରେ ଫୋନ୍‌ରେ କଥାହେବା ମଧ୍ୟ ସେତେଟା ସୁବିଧାଜନକ ନଥିଲା । ନବରଂଗପୁରରୁ କଟକ ସ୍ତ୍ରୀଙ୍କ ପାଖକୁ କିଛି ଜରୁରୀ ସଂବାଦ ପଠାଇବାକୁ ହେଲେ ଲାଇଟିନିଙ୍ଗ୍ କଲ୍ କରିବାକୁ ପଡୁଥିଲା । ନଚେତ୍ ଅର୍ଜେଣ୍ଟ କଲ୍ ବୁକ୍ କରି ଫୋନ୍ ପାଖରେ ଘଣ୍ଟାଘଣ୍ଟା ଧରି ବସିବାକୁ ହେଉଥିଲା ।

ଏମିତି ପ୍ରାୟ ସାତ ମାସ ବିତିଗଲା ପରେ, ସ୍ତ୍ରୀ ଓ ଛୋଟ ପୁଅକୁ ନବରଂଗପୁର ନେଇ ଆସିବାକୁ ମନସ୍ଥ କଲି । କଟକରୁ ଗୋଟିଏ ଆମ୍ବାସାଡର କାର୍‌ରେ ପୁଅକୁ ଧରି ମୁଁ ଓ ସ୍ତ୍ରୀ ବାହାରିଲୁ । ବାଟରେ ଆମ ଗାଁ ମୁକୁନ୍ଦପ୍ରସାଦ (ଖୋର୍ଦ୍ଧା)ରେ କିଛି ସମୟ ରହଣି । ଗାଁରେ ବୋଉ, ଦୁଇ ଭଉଣୀ ଓ ଦୁଇ ସାନ ଭାଇ ରହୁଥାନ୍ତି । ଗାଁରୁ ସାନଭାଇ ଆମ ସହିତ ଆସିବାକୁ ବାହାରିଲା । ଆମେ ମଧ୍ୟ ଠିକ୍ କଲୁ ତାକୁ ଆଣି ନବରଂଗପୁରରେ ଆମ ପାଖରେ ରଖିବୁ ଏବଂ ସେଠିକାର ହାଇସ୍କୁଲ୍‌ରେ ଅଷ୍ଟମ ଶ୍ରେଣୀରେ ତା'ର ଆଡମିସନ୍ କରିଦେବୁ ।

ଅପରାହ୍ଣ ତିନିଟା ପରେ ଗାଁ ଛାଡ଼ିଲୁ । ସଂଧ୍ୟା ପ୍ରାୟ ସାତଟାବେଳକୁ ବ୍ରହ୍ମପୁରରେ ପହଞ୍ଚିଲୁ । ସେଦିନ ରାତ୍ରୀଯାପନର ବନ୍ଦୋବସ୍ତ ବ୍ରହ୍ମପୁର ଫରେଷ୍ଟ ଗେଷ୍ଟ ହାଉସ୍‌ରେ କରାଯାଇଥିଲା ।

ପରଦିନ ସକାଳେ ଆଠଟା ବେଳକୁ ଆମେ ବ୍ରହ୍ମପୁର ଛାଡ଼ିଲୁ । ପାଞ୍ଚନମ୍ବର ଜାତୀୟ ରାଜପଥରେ ଆନ୍ଧ୍ରପ୍ରଦେଶର ଇଛାପୁରମ୍, ପଲାସା ଓ ଶ୍ରୀକାକୁଲମ୍ ପାର ହେଲାପରେ

ରାସ୍ତା ଭାଙ୍ଗି 'ରାଜମ୍' ରାମଭଦ୍ରପୁରମ୍ ଓ ସାଲୁର ଦେଇ 'ସୁନ୍‌କି' ଘାଟି ନିକଟରେ ଓଡ଼ିଶାର କୋରାପୁଟ ଜିଲ୍ଲାକୁ ପ୍ରବେଶ କରିବାର ଯୋଜନା ଆମର ଥାଏ । ମେ' ମାସ । ଭୀଷଣ ଖରା । ତା' ଛଡ଼ା ଆନ୍ଧ୍ରପ୍ରଦେଶରେ ଖରାର ତେଜ ଅଧିକ ମନେ ହେଉଥାଏ । ଖରାର ଧାସ କମେଇବା ପାଇଁ, ଅନ୍ତତଃପକ୍ଷେ ଖରା ଧାସରୁ ଛୁଆକୁ ଟିକେ ସୁରକ୍ଷା ଦେବାପାଇଁ କାର୍ ଛାତ ଉପରେ ଗୋଟିଏ ମସିଣା ପଟି ବାନ୍ଧି ଦେଇଥିଲୁ । ଭିତରେ ତାତି ଅଧିକ ଜଣା ପଡ଼ିଲେ, ରାସ୍ତା କଡ଼ରେ ଗାଡ଼ି ରଖି ପଟି ଉପରେ ପାଣି ଢାଳୁଥାଉ । ଆମ କଥା ଅଲଗା, କିନ୍ତୁ ସାଙ୍ଗରେ ଥିବା କଅଁଳା ଛୁଆକୁ ଯେପରି ବେଶୀ ଗରମ ଧାସ ନ ବାଜିବ, ସେଥିପାଇଁ ଆମେ ବେଶୀ ଚିନ୍ତିତ ଥାଉ । ପିଇବା ପାଇଁ ପ୍ରଚୁର ପାଣି, କ୍ଷୀର ବନାଇବା ପାଇଁ ଗୋଟିଏ ଫ୍ଲାସ୍କରେ ଗରମ ପାଣି ଏବଂ ଅନ୍ୟ ଗୋଟିଏ ଫ୍ଲାସ୍କରେ କିଛି ବରଫ ମଧ୍ୟ ସାଙ୍ଗରେ ନେଇଥାଉ ।

ଶ୍ରୀକାକୁଲମ୍ ସହର ପାଖାପାଖି ହେଲାବେଳକୁ ଦିନ ଏଗାରଟା ଟପି ସାରିଥାଏ । ଶ୍ୱଶୁରଙ୍କଠାରୁ ଶୁଣିଥିଲି ଏହି ସହର ମଧ୍ୟ ଦିନେ ଓଡ଼ିଶା ରାଜ୍ୟର ଅଂଶ ବିଶେଷ ଥିଲା । ନାଁ ଥିଲା ଶ୍ରୀକୁର୍ମମ୍ । ପରେ ଅପଭ୍ରଂଶ ହୋଇ ଶ୍ରୀକାକୁଲମ୍ ହୋଇଛି ।

ରୌଦ୍ରତାପରେ ଜଳୁଥାଏ ଚତୁଃପାର୍ଶ୍ୱର ପରିବେଶ । ଜାତୀୟ ରାଜପଥ ଉପରେ ମରୀଚିକା ନୃତ୍ୟ କରୁଥାଏ । ରାସ୍ତା କଡ଼ର ଗୋଟିଏ ଢାବା ପାଖରେ ଗାଡ଼ି ଅଟକାଇ ଚା' ପିଇବା ଅବସରରେ, କାର୍ ଛାତ ଉପରେ ବନ୍ଧା ଯାଇଥିବା ମସିଣା ପଟି ଉପରେ ପାଣି ଢାଳିଲୁ । କ୍ଷୀର ତିଆରି କରି ପୁଅକୁ ପିଆଇ ସାରିବା ପରେ ଆଗେଇ ଚାଲିଲୁ ଗନ୍ତବ୍ୟ ପଥରେ ।

ଶ୍ରୀକାକୁଲମ୍ ସହର ଟପିବାର ଅନତିଦୂରରେ ଡାହାଣପଟକୁ ରାସ୍ତାଟିଏ ବାହାରିଯାଇଛି, 'ରାଜମ୍' 'ରାମଭଦ୍ରପୁରମ୍' ଭିତର ଦେଇ ସାଲୁର୍ ସହରକୁ । ଆନ୍ଧ୍ର ଓଡ଼ିଶା ସୀମାନ୍ତରେ 'ସାଲୁର୍', ଆନ୍ଧ୍ର ପ୍ରଦେଶର ଏକ ମଧ୍ୟମ ଧରଣର ସୀମାନ୍ତ ସହର । ଏଠି ସ୍କୁଲ, କଲେଜ, ସିନେମାହଲ, ଯଥେଷ୍ଟ ଦୋକାନ ବଜାର ଓ ବିଭିନ୍ନ ସରକାରୀ ଦପ୍ତରମାନ ରହିଛି । ସାଲୁର୍‌ଠାରେ ପହଞ୍ଚିଲା ବେଳକୁ ସମୟ ଅପରାହ୍ଣ ଗୋଟାଏ ଅତିକ୍ରମ କଲାଣି । ମୁଣ୍ଡ ଉପରେ ଗ୍ରୀଷ୍ମ ମଧ୍ୟାହ୍ନର ରୌଦ୍ରତାପ । ସତେ ଯେମିତି ଅଗ୍ନିବର୍ଷା ହେଉଛି । ସାଲୁର୍ ବସ୍‌ଷ୍ଟାଣ୍ଡ ପାଖେ ପଇଡ଼ପାଣି ପିଇବା ପାଇଁ ଗାଡ଼ି ଅଟକାଇଲୁ । ସେତିକି ସମୟରେ ମଧ୍ୟ ଜଳିଗଲା ବା ସିଝିଗଲା ପରି ଯନ୍ତ୍ରଣା । ସାତ ମାସର ଛୋଟ ଛୁଆଟି ବିକଳରେ

ରାହାଧରି କାନ୍ଦିବାକୁ ଲାଗିଲା । ଅତି ତରବରରେ ଆମେ 'ସାଲୁର୍' ଘାଟି ରାସ୍ତାଦେଇ ଓଡ଼ିଶା ସୀମାନ୍ତ ସୁନ୍‌କି ଅଭିମୁଖେ ଯାତ୍ରା ଆରମ୍ଭ କଲୁ ।

ଘାଟି ରାସ୍ତାରେ ପାଞ୍ଚ, ଛଅ କିଲୋମିଟର ଉଠିଗଲାପରେ ଯେତିକି ଯେତିକି ଆମେ ଓଡ଼ିଶା ଓ ଆନ୍ଧ୍ର ସୀମାନ୍ତର ନିକଟବର୍ତ୍ତୀ ହେଉଥିଲୁ, ପାଗରେ ପରିବର୍ତ୍ତନ ସେତିକି ସ୍ପଷ୍ଟ ଭାବେ ଲକ୍ଷ୍ୟ କରୁଥିଲୁ । ଆକାଶ କ୍ରମଶଃ ମେଘାଚ୍ଛନ୍ନ ହୋଇଯାଇଥାଏ । ଦୂରରୁ ଓଡ଼ିଶା ପଟ ପାହାଡ଼ ଫାଙ୍କରୁ କଳାକଳା ବାଦଲ ଧୀରେଧୀରେ ନିଜର କାୟା ବିସ୍ତାର କରି ପ୍ରସାରିତ ହେବାରେ ଲାଗିଥାଏ । ବାୟୁମଣ୍ଡଳ ତଥା ପରିବେଶରେ ଭରିଯାଇଥାଏ ଅଭୂତପୂର୍ବ ଶୀତଳତା । କ୍ଷଣକ ପୂର୍ବରୁ ଥିଲା ନିଦାଘ ପୀଡିତ ମଧ୍ୟାହ୍ନର ଅସହିଷ୍ଣୁ ଉତ୍ତାପ । ଏବେ କିନ୍ତୁ ବର୍ଷା ଭିଜା ସୁଶୀତଳ ମାଦକ ପବନର ଶିହରୀତ ସ୍ପର୍ଶ । ବେଶ୍ ଆରାମଦାୟକ ଅନୁଭୂତି । 'ସୁନ୍‌କି' ପାଖାପାଖି ପହଞ୍ଚିଲାବେଳକୁ ବର୍ଷା ଆରମ୍ଭ ହୋଇଗଲାଣି । ଓଡ଼ିଶା ଭିତରକୁ ପଶିଲା ପରେ ବର୍ଷାର ତୀବ୍ରତା ବଢ଼ିବଢ଼ି ଯାଉଥାଏ । ସୁନ୍‌କି, ଜାତୀୟ ରାଜପଥ ବଂଗଳାରେ ପହଞ୍ଚିଲାବେଳକୁ ମୂଷଳଧାରାରେ ବର୍ଷା କଚାଡ଼ିବା ଆରମ୍ଭ କରିଥାଏ ।

ସୁନ୍‌କି-ଓଡ଼ିଶା ସୀମାନ୍ତରେ ଥିଲା ମିଳିତ ଚେକ୍‌ପୋଷ୍ଟ । ଦୂରରୁ ଗୋଟିଏ ଛୋଟ ପାହାଡ଼ିଆ ବସତି ଭଳିଲାଗେ । ଖୁବ୍ ଛୋଟ ଟାଉନ୍‌ଟିଏ । ରାୟଗଡ଼ ଫରେଷ୍ଟ ଡିଭିଜନ୍‌ର 'ସୁନ୍‌କି' ଏକ ରେଂଜ ହେଡ୍‌କ୍ୱାଟର୍ସ । ଜଣେ ରେଂଜର ବା ଡେପୁଟି ରେଂଜର ଏଠି ଥିବା ଫରେଷ୍ଟ ଚେକ୍‌ଗେଟ୍ ଦାୟିତ୍ୱରେ ଥାନ୍ତି । ସେତେବେଳେ ରାୟଗଡ଼ ଡିଭିଜନ ଡି.ଏଫ୍.ଓ. ଥିଲେ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ମହାନ୍ତି । ଆମ ଉପର (୧୯୭୪) ବ୍ୟାଚ୍‌ର ଆଇ.ଏଫ୍.ଏସ୍. ଅଫିସର୍ । ଆମପାଇଁ ସୁନ୍‌କି ଡାକ ବଂଗଳାରେ ମଧ୍ୟାହ୍ନ ଭୋଜନ ଓ ସାମାନ୍ୟ ବିଶ୍ରାମର ବନ୍ଦୋବସ୍ତ କରିବାକୁ ପୂର୍ବରୁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ତଦନୁଯାୟୀ ବର୍ଷାର ତୀବ୍ର ଓ ବେଖାପ ନୃତ୍ୟ ଭିତରେ ଆମ ଗାଡ଼ି ଡାକବଂଗଳା ଭିତରକୁ ପ୍ରବେଶ କଲା । ସତେ ଯେପରି ବର୍ଷାରାଣୀ ସହସ୍ର କଳସରୁ ଜଳ ଢାଳି ଆମକୁ କୋରାପୁଟ ଜିଲ୍ଲାକୁ ସ୍ୱାଗତ ଜଣଉଥିଲା । କି ସୁନ୍ଦର ସ୍ୱାଗତ ସମ୍ବର୍ଦ୍ଧନା !

ରେଂଜ ଅଫିସର୍ ଆମ ପାଇଁ ଡାକବଂଗଳାରେ ଖାଇବାର ବନ୍ଦୋବସ୍ତ କରିଥିଲେ । ମଧ୍ୟାହ୍ନ ଭୋଜନପରେ, ବଙ୍ଗଳାର ଶାନ୍ତ, ଶୀତଳ ପରିବେଶରେ କିଛି ସମୟ ବିଶ୍ରାମନେଇ, ଅପରାହ୍ଣ ଚାରିଟାବେଳକୁ ପୁଣି ଯାତ୍ରାପଥରେ ବାହାରିଲୁ । ଗନ୍ତବ୍ୟସ୍ଥଳ ନବରଂଗପୁର ! ସକାଳ ଆଠଟାରୁ ଆମେ ବ୍ରହ୍ମପୁର ଛାଡ଼ିଲୁଣି । ତଥାପି ରାସ୍ତା ସରୁନଥାଏ । ପଥ ଅସରନ୍ତି ।

କିଛି ସମୟ ପରେ ଆସିଲା ପଟାଙ୍ଗି, ସୁନାବେଡ଼ା ଓ ତା' ପରେ କୋରାପୁଟ । କୋରାପୁଟ-ଜିଲ୍ଲା ସଦର ମହକୁମା । ଏଠି ଜିଲ୍ଲାପାଳଙ୍କ ଅଫିସ୍ । ଜିଲ୍ଲା ପୋଲିସ୍ ମୁଖ୍ୟ କାର୍ଯ୍ୟାଳୟ ଏବଂ ସମସ୍ତ ଜିଲ୍ଲା ସ୍ତରୀୟ ଅଫିସ୍ । ମଣ୍ଡଳ ବନ ସଂରକ୍ଷକଙ୍କ କାର୍ଯ୍ୟାଳୟ ମଧ୍ୟ କୋରାପୁଟରେ ଅଛି ।

କୋରାପୁଟଠାରୁ ଘାଟି ରାସ୍ତାରେ ତଳକୁ ଓହ୍ଲାଇଗଲେ ସମତଳ ଇଲାକାରେ ପଡ଼ିବ ଜୟପୁର ସହର । ଜୟପୁର ମଧ୍ୟ କୋରାପୁଟ ଜିଲ୍ଲାର ଏକ ମୁଖ୍ୟ ସବ୍‌ଡିଭିଜନ୍ ସଦର ମହକୁମା । ଜୟପୁରରୁ ନବରଂଗପୁର ପ୍ରାୟ ଘଣ୍ଟାକର ବାଟ ।

ଏ ଭିତରେ ବର୍ଷା ଟିକିଏ ଥମିଗଲାଣି । କୋରାପୁଟର ପାହାଡ଼ି ଇଲାକାରେ ସଂଜ ବି ନଇଁ ଆସିଲାଣି । ପୂରା ଅନ୍ଧାର ହୋଇ ନଥିଲେ ବି ଉତ୍ତୀର୍ଣ୍ଣ ଅପରାହ୍ଣରେ ଚଉଦିଗ ମଳିନ ଜଣାପଡୁଥାଏ । ଜୟପୁରରୁ ବୋରିଗୁମା ବ୍ଲକ ଟପି ଅମ୍ବାଗୁଡ଼ା (ଦଣ୍ଡକାରଣ୍ୟ ପ୍ରକଳ୍ପ ଅନ୍ତର୍ଗତ, ବୋରିଗୁମା-ନବରଂଗପୁର ରାସ୍ତାର ଅନତି ଦୂରରେ ଅମ୍ବାଗୁଡ଼ା କଲୋନୀ ଗଢ଼ି ଉଠିଥିଲା) ଠାରେ ପହଁଞ୍ଚିଲା ବେଳକୁ ଦେଖିଲୁ ବାଇପାସ୍ ପାଇଁ ତିଆରି ହୋଇଥିବା ମାଟି ରାସ୍ତାର ଖଣ୍ଡେ ଅଂଶ ଭାସି ଯାଇଛି ଏବଂ ସେଠି ପ୍ରଖର ବେଗରେ ପାଣି ସୁଅ ଛୁଟିଛି । ବୋଧହୁଏ ମୁଖ୍ୟ ରାସ୍ତାର ଗୋଟିଏ ବ୍ରିଜ୍ ମରାମତି ହେଉଥିବା ହେତୁ ମାଟି ପକାଇ କଡ଼ରେ ଏହି କାମଚଳା ରାସ୍ତାଟି ତିଆରି କରାଯାଇଥିଲା ।

ଏବେ ଉପାୟ କ'ଣ ? ଆମ ଗାଡ଼ି କଟକର । ଡ୍ରାଇଭର ମଧ୍ୟ କଟକିଆ ଲୋକ । ଏମିତି ପାହାଡ଼ିଆ ପାଣି ଦେଖି ତା' ଅକଲ ଗୁଡୁମ । ପାଣି ଭିତରେ ଗାଡ଼ି ପୂରେଇ ଆଗକୁ ଯିବାକୁ ସେ ବିଲ୍‌କୁଲ୍ ନାରାଜ । ସେତେବେଳକୁ ସଂଧ୍ୟା ଅତିକ୍ରାନ୍ତ ହୋଇ ଅଂଧାର ମାଡ଼ି ଆସିଲାଣି । ସାଙ୍ଗରେ ଥିବା ସାନ ଛୁଆଟା ପାଇଁ ଆମେ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲୁ । ସକାଳ ପହରୁ ବାହାରିଛୁ । ରାତି ଆସି ଘଡ଼ିଏ ହେଲାଣି । ଡ୍ରାଇଭରକୁ ଆମେ ପ୍ରବର୍ତ୍ତାଉ ଥାଉ, ସେ ଥରେ ନିଜେ ପାଣି ଭିତରେ ପଶି ପରଖି ନେଉ, ଗାଡ଼ି ଯାଇ ପାରିବ ନା ନାହିଁ ? ଏମିତି କଥାବାର୍ତ୍ତା ବେଳେ ଆମ ପଛରେ ଆସି ଗୋଟିଏ ଜିପ୍ ଅଟକିଲା । ସେଥିରୁ ଯିଏ ବାହାରି ଆସିଲେ, ସେ ହେଉଛନ୍ତି ନବରଂଗପୁର ସବଡିଭିଜନ୍‌ର ଏସ.ଡି.ଓ-ଶ୍ରୀ ଗୌର ଶଙ୍କର ମହାପ୍ରଶସ୍ତ । ମୋତେ ସିଏ ଆଗରୁ ଜାଣିଥିଲେ । ସ୍ତ୍ରୀଙ୍କ ସହ ପରିଚୟ କରାଇଦେଲି ।

ଏସ.ଡି.ଓଙ୍କ ଜିପ୍ ଡ୍ରାଇଭର ସ୍ଥାନୀୟ ଲୋକ । ତାକୁ ଏଠିକାର ରାସ୍ତାଘାଟ, ନଈ,ନାଳ କଥା ଭଲ ଭାବରେ ଜଣା । ସବୁ ଶୁଣି ସେ ଆମ କାର ଡ୍ରଇଭାରକୁ ଅଭୟ

ଦେଇ କହିଲା, ଭାଇ କିଛି ହେବ ନାହିଁ । ମୁଁ ଆଗେଆଗେ ଜିପ୍ ନେଇ ଯାଉଛି । ତୁମେ ମୋ ପଛରେ କାର ଧରି ଆସ । ସତକୁ ସତ ଜିପ୍ ପଛେପଛେ ଆମ କାର୍ ବି ସୁରୁଖୁରୁରେ ପାର୍ ହୋଇଗଲା । ସେଠାରୁ ନବରଂଗପୁର ମାତ୍ର କୋଡ଼ିଏ ପଚିଶ ମିନିଟ୍‌ର ବାଟ । ଆମ କ୍ୱାର୍ଟର୍ସ ପାଖରେ ରେଂଜଅଫିସର୍ ଜିପ୍ ଡ୍ରାଇଭର ଓ ଫରେଷ୍ଟ ଗାର୍ଡ ଅପେକ୍ଷା କରି ରହିଥିଲେ । ଆମର ଡେରି ହେବା ଦେଖି ସେମାନେ ମଧ୍ୟ ଚିନ୍ତିତ ହୋଇ ପଡ଼ିଥିଲେ ।

ପୁଅ ସେତେବେଳକୁ ଶୋଇ ପଡ଼ିଲାଣି । ତା' ପାଇଁ ଭଲ ବିଛଣାଟିଏ କରି ସଯତ୍ନରେ ତାକୁ ଶୁଆଇ ଦେଲୁ । ବର୍ଷା ହେତୁ, ପାଗ ସାମାନ୍ୟ କୋହଲା ଲାଗୁଥାଏ । ଦିନସାରା ଯାତ୍ରାର କ୍ଳାନ୍ତି । ଅବସାଦ ମେଣ୍ଟାଇବା ପାଇଁ ଉଷୁମ ପାଣିରେ ଧୂଆଧୋଇ ହୋଇ ରାତିପାଇଁ କ'ଣ ରାନ୍ଧିବୁ, ସେ ବିଷୟରେ ଆଲୋଚନା କରୁଥିଲୁ ।

ଇତ୍ୟବସରରେ ମିସେସ୍ ମହାପ୍ରଶସ୍ତ (ଏସ.ଡି.ଓ.ଙ୍କ ପତ୍ନୀ) ଗୋଟିଏ ପାତ୍ରରେ ଗରମ ଗରମ୍ ବରା, ପିଆଜି ଧରି ପହଞ୍ଚିଲେ । ନିଜର ପରିଚୟ ଦେବା ଅବସରରେ କହିଲେ, ଇଏ ଏବେ କୋରାପୁଟରୁ ଫେରିଲେ ତ । ମୋତେ କହିଲେ, ଆମ ଏଠିକାର ଛୁଆ ଡି.ଏଫ୍.ଓ. ତାଙ୍କ ସ୍ତ୍ରୀଙ୍କୁ ନେଇ ଆସିଛନ୍ତି । ସେଥିପାଇଁ ଦେଖିବାକୁ ଚାଲି ଆସିଲି । ଖାଲି ହାତରେ ଆସିବି କ'ଣ; ଘରେ ବରା, ପିଆଜି, ଛଣା ହେଉଥିଲା, ଦି' ଚାରିଟା ନେଇ ଆସିଛି । ଦିନସାରା ଆସିଛ । ଭୋକ ହେଉଥିବ । ଆଗେ ଖାଇନିଅ । ତାପରେ ରାତି ପାଇଁ ରନ୍ଧାରନ୍ଧି କଥା ଚିନ୍ତା କରିବ ।'

ମୁଁ ସେତେବେଳେ ତିରିଶ ବର୍ଷର ଯୁବକ । କିନ୍ତୁ ମିଃ ମହାପ୍ରଶସ୍ତଙ୍କ ଭାଷାରେ ଛୁଆ ଡି.ଏଫ୍.ଓ । ତାଙ୍କ ପତ୍ନୀ ମଧ୍ୟ ଠିକ୍ ସେଇକଥା ଦୋହରାଇଲେ । ସେ ସମୟରେ ବୋଧେ ଡି.ଏଫ୍.ଓ. ପାହ୍ୟାକୁ ପହଞ୍ଚିଲା ବେଳକୁ ଅତିକମ୍‌ରେ ଚାଳିଶ, ପଇଁଚାଳିଶ ବର୍ଷ ଲାଗୁଥିଲା ।

ମିସେସ୍ ମହାପ୍ରଶସ୍ତଙ୍କର ସେଦିନର ସେ ଅନାବିଳ, ଆତ୍ମୀୟ ଅଭିବ୍ୟକ୍ତି, ଆଜିବି ମୋ ମାନସପଟରେ ଉଜ୍ଜୀବିତ ରହିଛି । ସେହିଦିନଠାରୁ ହିଁ ସେ ମୋ ସ୍ତ୍ରୀଙ୍କର ଆଦରର 'ଅପା' ହୋଇଗଲେ ଏବଂ ତାଙ୍କର ସ୍ୱାମୀ 'ଗୌରଭାଇ' ।

ଦୀର୍ଘ ଛବିଶ, ସତେଇଶ ବର୍ଷ ତଳେ ଗଢ଼ି ଉଠିଥିବା ସେ ସଂପର୍କ ଏବେ ବି ଅତୁଟ ରହିଛି । ଅକ୍ଷତ ରହିଛି ।



# ରଙ୍ଗ ଭରିଦେଲା ନବରଙ୍ଗପୁର



ନବରଂଗପୁର ! ଠିକ୍ ଅର୍ଥରେ ଏହାକୁ ସହର କୁହାଯାଇ ପାରିବ ନାହିଁ । ଛୋଟକାଟର ସହରଟିଏ । ନୋଟିଫାଏଡ ଏରିଆ କାଉନସିଲ୍-ବିଜ୍ଞପିତ ଅଞ୍ଚଳ । ଛୋଟ ସହରଟିର ପୂର୍ବପଟକୁ ବେଢ଼େଇ ଧରିଛି ଇନ୍ଦ୍ରାବତୀ ନଦୀ । ସେ ସମୟରେ ଜୟପୁର ପଟୁ ସହରକୁ ପଶିଲେ, ଗୋଟିଏ ଅଣଓସାରିଆ ପୋଲ ଉପର ଦେଇ ଇନ୍ଦ୍ରାବତୀ ନଦୀକୁ ଟପିବାକୁ ପଡ଼େ । ଭିତରକୁ ପଶିଲେ ପ୍ରଥମେ ବାଁ ପଟକୁ ପଡ଼ିବ ନବରଂଗପୁରର ପ୍ରାଚୀନ ଜଗନ୍ନାଥ ମନ୍ଦିର । ଏହି ମନ୍ଦିରରେ ପ୍ରଭୁ ଜଗନ୍ନାଥ ଏକାକୀ ପୂଜାପାନ୍ତି । ଭାଇ ବଳଭଦ୍ର ବା ଭଉଣୀ ସୁଭଦ୍ରା ସାଙ୍ଗରେ ନଥାନ୍ତି । ସହର ମଝିଦେଇ ଲମ୍ବି ଯାଇଥିବା ପିଚୁ ରାସ୍ତାର ଦୁଇପଟେ ଧାଡ଼ିକି ଧାଡ଼ି ଦୋକାନ ଘର । ଠିକ୍ ମଝାମଝି ନବରଂଗପୁରର ଅଧିଷ୍ଠାତ୍ରୀ ଦେବୀ ମା' ଭଣ୍ଡାର କରଣୀଙ୍କ ଆସ୍ଥାନ । ପ୍ରତ୍ୟକ୍ଷ ଠାକୁରାଣୀ । ସହରର ଅପର ପାର୍ଶ୍ୱରେ ପୋଷ୍ଟ ଅଫିସ୍, ତା ନିକଟକୁ ଡି.ଏଫ.ଓ.ଙ୍କର ବାସଗୃହ ଏବଂ ସଂଲଗ୍ନ ଅଫିସ୍ । ପୋଷ୍ଟ ଅଫିସ୍ ସାମ୍ନାରେ ନବରଂଗପୁର ସବଡିଭିଜନ୍‌ର ମୁଖ୍ୟ ଏସ୍.ଡି.ଓ.ଙ୍କ ବାସଗୃହ । ବିରାଟ କମ୍ପାଉଣ୍ଡ ଓ ଚାରିପଟେ ଘେରି ରହିଛି କମ୍ପାଉଣ୍ଡ ୱାଲ୍ ।

ତୁଳନାତ୍ମକ ଭାବରେ ବେଶ୍ ଗୋଟିଏ ଛୋଟ କମ୍ପାଉଣ୍ଡ ଭିତରେ ଡି.ଏଫ୍.ଓ.ଙ୍କର ବାସଗୃହ ଓ ଅଫିସ୍ । ଅଫିସ୍ କହିଲେ ଗୋଟେ ପଟ ପାଚେରିକୁ ଲାଗି ୧୪ଫୁଟ ୧୨ ଫୁଟର ବଖୁରିକିଆ କୋଠାଘର । ସେଥିରେ ଡି.ଏଫ୍.ଓ. ବସନ୍ତି । ପଛକୁ ଧାଡ଼ିଏ ଫାଳିକିଆ ଆଜବେଷ୍ଟସ୍ ଘର । ମଝିରେ ୧୨ ଫୁଟ ଓସାରର ଲମ୍ୱାଳିଆ ରାସ୍ତାଟିଏ । ଯାହା ପଛକୁ ଲମ୍ୱିଯାଇ ଗ୍ୟାରେଜ ନିକଟରେ ଶେଷ ହୋଇଛି । ଗ୍ୟାରେଜ୍ ରାସ୍ତାର ଆରପଟକୁ ଦୁଇଟି ବେଡରୁମ୍, ଡ୍ରଇଂ ଡାଇନିଙ୍ଗ୍ ଥିବା ଛୋଟିଆ ଲିଭିଙ୍ଗ୍ ହାଉସ୍ । କୌଣସିଥିରେ ବାଥରୁମ୍ ଆଟାଚ୍‌ଡ ନଥାଏ । ଘର ପଛପଟକୁ ରୋଷେଇ ଘର ଏବଂ ଟିକେ ଅଲଗା ହୋଇ ରହିଥାଏ ଗାଧୁଆ ଘର ଏବଂ ପାଇଖାନା । ବାଁ ପଟକୁ ବାଡ଼ି । ପୁରୁଣା କାଳିଆ କୂଅଟିଏ ଏବଂ ଭଙ୍ଗା, ପୁରୁଣା ଆସବାବପତ୍ର ରହୁଥିବା ଚାଳି ଘରଟିଏ । ସାମ୍ନାପଟକୁ ଗେଷ୍ଟ ରୁମ୍‌ଟିଏ । ବୋଧହୁଏ ପରେ ତିଆରି ହୋଇଛି । ସେଠି ଜଣେ ଏ.ସି.ଏଫ୍. ଶ୍ରୀ ଜୋଷୀ ରହୁଥାନ୍ତି । ଏକଲା, ଫ୍ୟାମିଲି ଆଣି ନଥାନ୍ତି ।

ଦାଣ୍ଡପଟର ପାଚେରିକୁ ଲାଗି ମଧ୍ୟମ ଧରଣର ଆମ୍ବଗଛଟିଏ । ପ୍ରତିବର୍ଷ ପ୍ରଚୁର ଆମ୍ବ ଫଳେ । ବେଶ୍ ସୁସ୍ୱାଦୁ ଓ ମିଠା ।

ଅକ୍ଟୋବର ମାସରେ ମୁଁ ନବରଂଗପୁର ଡିଭିଜନ୍‌ରେ ଜଏନ୍ କଲାପରେ, ଘର ସାମ୍ନାରେ ରହିଥିବା ତିନିଫୁଟ ଓସାରର ବାରଣ୍ଡାକୁ ଲଗାଇ ପୋର୍ଟିକୋ ଆକୃତିର ଗୋଟିଏ ବଡ଼ ବାରଣ୍ଡା ତିଆରି କଲି । ଦଶ ଫୁଟରେ ଚଉଦଫୁଟ, ଉପରେ ଚାଳ ସଦୃଶ ନୁଆଁଣିଆ ଛାତ । ସେ ସମୟରେ ନବରଂଗପୁରରେ ସ୍ଲୋପିଙ୍ଗ୍ ରୁଫ୍ ବା ନୁଆଁଣିଆ ଛାତ କେହି ପ୍ରସ୍ତୁତ କରୁ ନଥିଲେ । ମୋତେ ହିଁ ଛାତର ଡିଜାଇନ୍ କରି ମିସ୍ତ୍ରିମାନଙ୍କୁ ବତାଇବାକୁ ପଡ଼ିଥିଲା । ଡେରାଡୁନ୍‌ଠାରେ ଫରେଷ୍ଟ ଟ୍ରେନିଂ ନେବା ଅବସରରେ ଇଂଜିନିୟରିଂ ଏବଂ ଗୃହ ନିର୍ମାଣ ବିଷୟରେ ଆମକୁ ଯେଉଁ ପ୍ରଶିକ୍ଷଣ ଦିଆଯାଏ, ତାହା ଏତେବେଳକୁ କାମରେ ଆସିଲା ।

ପୋର୍ଟିକୋ ଆକୃତିର ବିରାଟ ବାରଣ୍ଡାଟି ହିଁ ଆମର ବୈଠକୀ ଭାବେ ବ୍ୟବହୃତ ହୁଏ । ଏଠି ସର୍ବଦା ଚାରି, ଛଅଟି ଚେୟାର ଓ ଗୋଟିଏ ଟି'ପୟ୍ ପଡ଼ିଥାଏ । ଘରକୁ ଯିଏ ଆସିଲା, ଅଫିସ୍ ଷ୍ଟାଫ୍ ହୁଅନ୍ତୁ ବା ବାହାରର କେହି ଗେଷ୍ଟ ହୁଅନ୍ତୁ ସେମାନେ ଏଇଠାରେ ବସନ୍ତି । ବେଳେବେଳେ ଅଫିସ୍ ରୁମ୍‌ରେ ନବସି, ମୁଁ ଏଇ ବାରଣ୍ଡାରେ ବସି ଫାଇଲ୍‌ପତ୍ର କାମ କରେ । ସକାଳେ ଓ ସଂଜବେଳା ଏଠି ସସ୍ତ୍ରୀକ ବସି ଚା' ପାନ କରିବା, ସଂଧ୍ୟାବେଳେ ବଂଧୁମାନଙ୍କ ଗହଣରେ ବସି ଗରମାଗରମ ବରା ପକୁଡ଼ି ଖାଇ ଗପ

ଜମେଇବା ବା ତାସ୍ ଖେଳିବା କିମ୍ବା ଏକା ଏକା ଚୌକିରେ ବସି ଆରାମରେ ଗପ ବହି ପଢ଼ିବା-ଏବେ ମନେ ପକାଇଲେ ଭାବେ, ମୁଁ ନବରଂଗପୁରରେ ଥିବା ସମୟତକ, ଘର ଅପେକ୍ଷା ଏହି ପୋର୍ଟିକୋ ସଦୃଶ ବୃହତ୍ ବାରଣ୍ଡାଟିକୁ ହିଁ ଅଧିକତର ବ୍ୟବହାର କରୁଥିଲି ।

ହତା ପାଚେରିକୁ ଲାଗି ମୁଖ୍ୟ ରାସ୍ତା । ଜୟପୁରଠାରୁ ନବରଂଗପୁର ଦେଇ ଭବାନୀପାଟଣାକୁ ଲମ୍ବି ଯାଇଛି ରାଜ୍ୟ ରାଜପଥ । ରାସ୍ତା ଆରପଟ ଦୁଇ, ତିନୋଟି ଛୋଟ ଦୋକାନ ଘର ଏବଂ ପଛପଟକୁ ସୁବିସ୍ତୀର୍ଣ୍ଣ ଖୋଲା ପଡ଼ିଆ, ହାଟପଦା । ସପ୍ତାହକୁ ଦୁଇଥର ହାଟ ବସେ ସେଠି ।

ନବରଂଗପୁରରେ ରହିଲା ପରେ କୋରାପୁଟ ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ ଅଂଚଳରେ ବସୁଥିବା ସାପ୍ତାହିକ ହାଟ ଦେଖିବାର ସୁଯୋଗ ମିଳିଲା । ହାଟ ଦିନମାନଙ୍କରେ ସେଠି ଗୋଟାଏ ଛୋଟକାଟିଆ ମେଳା ଜମେ କହିଲେ ଅତ୍ୟୁକ୍ତି ହେବନାହିଁ । ଆଦିବାସୀ ରମଣୀମାନେ ଚିକ୍‌କଣ କରି ମୁଣ୍ଡ କୁଣ୍ଡାଇ, ରଂଗିନ୍ ଶାଢ଼ି ପିନ୍ଧି ଏବଂ ମୁଣ୍ଡରେ ନାଲି ନେଳି ରିବନ୍ ବାନ୍ଧି ପ୍ରାୟ ସାତ, ଆଠ କିଲୋମିଟର ଦୂରରୁ ମଧ୍ୟ ଆସି ପହଞ୍ଚିଯାନ୍ତି ହାଟରେ ବିକା କିଣା କରିବା ପାଇଁ । ସାଙ୍ଗରେ ବିକିବାକୁ ନେଇ ଆସନ୍ତି ନିଜ ବାଡ଼ିରେ ଫଳିଥିବା ତଟକା ପନିପରିବା, ଶାଗ, କଖାରୁ ଫୁଲ । ଗଲାବେଳକୁ କିଣିନିଅନ୍ତି ଆଳୁ, ପିଆଜ, ଲୁଣ କିରାସିନି ଆଉ ବେଳେ ବେଳେ ଚା'ପତି ।

ଦିନେ ଦିନେ ବେଳହେଲେ ହାଟପଦା ଆଡ଼କୁ ବୁଲିବାକୁ ଆମେ ଚାଲିଯାଉ । ଆମେ ମାନେ ମୁଁ ଓ ମୋ ସ୍ତ୍ରୀ । ତାଜା, ତଟକା, ନିର୍ଭେଜାଲ ପନିପରିବା ଓ ହରେକ୍ କିସମର ଶାଗ ଦେଖି ମନ ଲୋଭେଇ ଯାଏ । କିଛି ସଜ ପରିବା ଓ ଦୁଇ, ତିନି ପ୍ରକାରର ଶାଗ କିଣି ଆଣୁ । ପ୍ରତି ହପ୍ତାରେ ଅନ୍ତତଃ ଥରେ ହାଟକୁ ଯାଇ ପନିପରିବା କିଣି ଆଣିବାର ସଉକ୍ କ୍ରମେ ଅଭ୍ୟାସ୍‌ରେ ପଡ଼ିଗଲା । ହାଟପାଳି ଆସିଲେ ମୁଁ ଓ ମୋ ସ୍ତ୍ରୀ ପରିବା ବ୍ୟାଗ ଧରି ବାହାରି ପଡୁ ।

ଆଗରୁ କହିଛି, ନବରଂଗପୁର ଗୋଟିଏ ଛୋଟିଆ ସହର । ଏଠି କାହା ଘରେ ଫୁଟଣ ଫୁଟିଲେ ବି ତାକୁ ବଢ଼େଇ ଚଢ଼େଇ ବୋମା ଫୁଟିବାର ଆଖ୍ୟା ଦେଇ ଦିଆଯାଏ । ସତକୁ ସତ ଆମ ଅଫିସ୍ ଓ ବନ ବିଭାଗ ତଳିଆ କର୍ମଚାରୀଙ୍କ ମଧ୍ୟରେ ଫୁସୁରଫାସର ହୋଇ ଚାଲିଥିବା କଥାଟା ଦିନେ ଫୁଟିପଡ଼ି ମୋ କାନରେ ପଡ଼ିଲା । ସେମାନେ କଥା ହେଉଥିଲେ ନୂଆ ଡ଼ି.ଏଫ୍.ଓ. ଏବଂ ତାଙ୍କ ସ୍ତ୍ରୀ ବୋଧେ ଅର୍ଡରଲି ପିଅନମାନଙ୍କୁ ବିଶ୍ୱାସ

କରୁନାହାନ୍ତି । ସେଥିପାଇଁ ନିଜେ ହାଟକୁ ଯାଇ ପରିବାପତ୍ର କିଣୁଛନ୍ତି । ଆମର ନିଷ୍କପଟ ସଉକ୍‌ଟି ଓଲଟି ଆରୋପିତ ବର୍ଚ୍ଛା ରୂପେ ଆମ ଆଡକୁ ଫିଙ୍ଗି ଦିଆଗଲା । ଅଗତ୍ୟା ଆମେ ନିରୁପାୟ ହୋଇ ଧୀରେ ଧୀରେ ହାଟକୁ ଯିବା କମେଇ ଦେଲୁ ।

ଡି.ଏଫ୍.ଓ.ଙ୍କର ଛୋଟିଆ କ୍ୱାର୍ଟର୍ସଟିରେ ରହୁଥିଲୁ ମୁଁ, ମୋ ସ୍ତ୍ରୀ ଓ ଆମର ଛୋଟ ପୁଅ । ବାଡ଼ିପଟ ଚାଳି ଘରେ ଠିକା କାମ ବାଲୀଟିଏ ରହୁଥିଲା । ନାଁ ତା'ର ମୁକ୍ତା । ବିଚାରୀର ସ୍ୱାମୀ, ପିଲାଛୁଆ ପରିବାର କେହି ନଥିଲେ । ଏକ୍‌ଲା ମଣିଷଟିଏ । ଦିନରେ ଅଫିସ୍ ଝାଡୁକରେ । ଆମ ଘର ମଧ୍ୟ ଝଡ଼ା ପୋଛା କରେ । ବାସନ ମାଜେ । ବାଡ଼ିପଟ ଚାଳିଘରେ ରୁହେ । ଦିନରେ କ'ଣ ଗଣ୍ଡାଏ ଫୁଟାଇ ଖାଏ । ଆମେ ରହିଲା ପରଠୁ ସବୁଦିନ ତାକୁ ଆମର ରନ୍ଧା ହୋଇଥିବା ତରକାରି ପତ୍ର ଦେଉ । ସେ ପରିତୃପ୍ତିରେ ଖାଏ ।

ମୋର ଛୋଟ ପୁଅ 'ଟିକନ'କୁ ଦିନସାରା ସେ କାଖେଇ କରି ବୁଲଉଥାଏ । ପୁଅ ଖାଇବା ବେଳେ ଭାରି ଅଝଟ କରେ । ହେଲେ ମୁକ୍ତା ତାକୁ ତେଲୁଗୁ ଗୀତ ଶୁଣେଇ ଶୁଣେଇ ଖୁଆଇ ଦିଏ । ଏମିତି ହେଲା, ବର୍ଷେ ଦେଢ଼ ବର୍ଷ ବେଳକୁ ପୁଅ ଖଣ୍ଡି ଖଣ୍ଡି ତେଲୁଗୁ କହିବାକୁ ଆରମ୍ଭ କଲା । ଅନ୍ୟ ଜଣେ  ଅର୍ଡରଲି ଥାଏ ତ୍ରିନାଥ । ସେ ରନ୍ଧାବଢ଼ାରେ ସ୍ତ୍ରୀଙ୍କୁ ସାହାଯ୍ୟ କରେ । ରାତ୍ରୀରେ ଜଣେ ଚୌକିଦାର ଅଫିସ୍‌ରେ ଶୋଇବାକୁ ଆସେ । ଶୀତଦିନ ଛଡ଼ା ଅନ୍ୟଦିନେ ସେ ଅଫିସ୍ ଭିତରେ ନ ଶୋଇ ଆମ ଘର ସାମ୍‌ନାରେ ଥିବା ପ୍ରଶସ୍ତ ବାରଣ୍ଡାରେ ଶୋଇବାକୁ ପସନ୍ଦ କରେ । ଏଇ ଥିଲା ନବରଂଗପୁରର ଆମ ଛୋଟ ପରିବାରଟିର ଦୈନନ୍ଦିନ ଜୀବନଧାରା ।

କେବେ କେବେ ମୁଁ ଟୁର୍‌ରେ ସ୍ତ୍ରୀ ଓ ପୁଅକୁ ଧରି ବାହାରି ଯାଏ । ବିଶେଷ କରି ଉମରକୋଟ୍ ନହେଲେ କୋଟପାଡ଼ ବ୍ଲକ୍‌ର ଚାନ୍ଦିଲି । ଦୁଇଟିଯାକ ଜାଗାର ଫରେଷ୍ଟ ରେଷ୍ଟ ହାଉସ୍‌ଗୁଡ଼ିକ ବେଶ୍ ଭଲ । ୱେଲ୍ ମେଣ୍ଟେନ୍‌ଡ । ଦିନସାରା ମୁଁ ଫରେଷ୍ଟ ଇନ୍‌ସପେକ୍‌ସନ୍‌ରେ, ନଚେତ୍ କୁପ୍ କାମ ଦେଖିବାକୁ ବାହାରିଯାଏ । ପିଲାମାନେ ଫରେଷ୍ଟ ରେଷ୍ଟ ହାଉସ୍‌ରେ ବିଶ୍ରାମ ନିଅନ୍ତି । ସଂଧ୍ୟାବେଳେ ଜଙ୍ଗଲରୁ ଫେରେ । ବଙ୍ଗଳାରେ ରାତ୍ରୀଯାପନ । ତହିଁ ପରଦିନ ହେଡକ୍ୱାର୍ଟର୍ସକୁ ଫେରିଆସୁ ।

'ଚାନ୍ଦିଲି' ଫରେଷ୍ଟ ବଙ୍ଗଳାରେ ରାତି ରହଣିର ସ୍ୱାଦ ନିଆରା । ଏହି ବଙ୍ଗଳାଟି ଓଡ଼ିଶା ଓ ତତ୍‌କାଳୀନ ମଧ୍ୟପ୍ରଦେଶ (ବର୍ତ୍ତମାନ ଛତିଶଗଡ଼) ସୀମାନ୍ତରେ ଥିବା ଚାନ୍ଦିଲି ଗାଁରେ ଅବସ୍ଥିତ । ଗାଁର ଗୋଟେ ଫାଳ ଓଡ଼ିଶାରେ, ଅନ୍ୟ ଫାଳଟି ମଧ୍ୟପ୍ରଦେଶରେ । ଠିକ୍

ବଙ୍ଗଳାକୁ ଲାଗିକରି ରହିଛି ଦୁଇ ରାଜ୍ୟ ମଧ୍ୟରେ ଥିବା ବର୍ଡର ଚେକ୍‌ଗେଟ୍ । ମଧ୍ୟପ୍ରଦେଶ ଉପାନ୍ତରେ ମୁଖ୍ୟ ସହର ଜଗଦଳପୁର । ଚାନ୍ଦିଲି ବଙ୍ଗଳାଠାରୁ ଦୂରତା ମାତ୍ର ପନ୍ଦର କିଲୋମିଟର । ସହରଟି ବିଧିବଦ୍ଧ ଯୋଜନା ମୁତାବକ ହୋଇଛି । ଭିତରେ ଯାଇଥିବା ରାସ୍ତା ଗୁଡ଼ିକ ସିଧାସିଧା । ବେଶ୍ ପରିଷ୍କାର ପରିଚ୍ଛନ୍ନ ମଧ୍ୟ । ଏଠି ଜଙ୍ଗଲଜାତ ଦ୍ରବ୍ୟ ଓ କାଠ, ବାଉଁଶର କାରବାର ହୁଏ । ପ୍ରାୟ ପନ୍ଦରରୁ ଊର୍ଦ୍ଧ୍ୱ ବନ ବିଭାଗର ଅଫିସର ସେଠି ରୁହନ୍ତି । ଆମେ ଅପରାହ୍ଣରେ ଜଗଦଳପୁର ଚାଲିଯାଇ କିଛି  ମାର୍କେଟିଙ୍ଗ୍ କରୁ । ସଂଧ୍ୟାବେଳେ ଫାଷ୍ଟ ଶୋ' ସିନେମା ଦେଖି ରାତି ନଅଟା, ସାଢ଼େ ନଅଟା ବେଳକୁ ଫେରିଆସୁ । ଚାନ୍ଦିଲି ବଙ୍ଗଳାରେ ଖାଇପିଇ ରାତ୍ରୀ ଯାପନ କରୁ ।

ନବରଂଗପୁରଠାରେ ଓଡ଼ିଶା ବନ ନିଗମର ଗୋଟିଏ ଡିଭିଜନ୍ ଅଫିସ୍ ଥାଏ । ନିଗମର ଡିଭିଜନାଲ୍ ମ୍ୟାନେଜର ଥାନ୍ତି ଶ୍ରୀ କଳ୍ପତରୁ ବେହେରା । ସହରର ଠିକ୍ ଶେଷ ପ୍ରାନ୍ତରେ ତାଙ୍କ ବାସଗୃହ । ଏକ ବିରାଟକାୟ ହତା ଭିତରେ ଡି.ଏମ୍.ଙ୍କ ରେସିଡେନ୍‌ସ । କଡକୁ କର୍ପୋରେସନ୍‌ର କରତକଳ ଓ ଡିପୋ । ରେସିଡେନ୍‌ସର  ଠିକ୍ ସାମ୍ନା ପଟକୁ ରାସ୍ତା ଆରପଟେ ବନ ନିଗମ ଡିଭିଜନାଲ୍ ଅଫିସ୍ ଓ ତା' ନିକଟରେ ଏକ ବୃହତ୍ କାଠ, ବାଉଁଶ ଡିପୋ ।  ସେ ସମୟରେ ଜଙ୍ଗଲରୁ କଣ୍ଟ୍ରାକ୍ଟରମାନଙ୍କୁ ଉଚ୍ଛେଦ କରି, 'କୁପ' କାମ ବନ ନିଗମକୁ ଦିଆଯାଇଥାଏ । ତେଣୁ ଡିପୋଗୁଡ଼ିକ ଜଙ୍ଗଲରୁ କଟା ହୋଇ ଆସିଥିବା ଶାଳ, ଅସନ, ଶାଗୁଆନ୍ କାଠରେ ଭରପୂର ଥାଏ । ନିଗମର ଅନ୍ୟ ଏକ କରତକଳ ଓ କାଠ ଡିପୋ ଥାଏ ସହରଠାରୁ ବାର କିଲୋମିଟର ଦୂର ପାପଡ଼ାହାଣ୍ଡି ଛକରେ । ଯେଉଁଠି ମୁଖ୍ୟ ରାସ୍ତାଟି ଦୁଇଭାଗ ହୋଇ ଗୋଟିଏ ଡାବୁଗାଁ ଦେଇ ଉମରକୋଟ ଯାଇଛି ଏବଂ ଅନ୍ୟଟି ମୈଦଲପୁର ଦେଇ ଭବାନୀପାଟଣା ଯାଇଛି ।

ଓଡ଼ିଶା ବନ ନିଗମ (ସଂପ୍ରତି ଓଡ଼ିଶା ବନ ଉନ୍ନୟନ ନିଗମ) ସେତେବେଳେ ବେଶ୍ ଏକ ଲାଭଜନକ ସଂସ୍ଥା ଥିଲା । ବାର୍ଷିକ ପାଖାପାଖି ଅଶୀରୁ ଶହେ କୋଟି ଟଙ୍କା ସରକାରଙ୍କୁ ରାଜସ୍ୱ ଦେଉଥିବାରୁ ରାଜ୍ୟ ସରକାରଙ୍କ ନିକଟରେ ଏହି ଉଦ୍ୟୋଗର ମାନ୍ୟତା, ସମ୍ମାନ ଓ ପ୍ରତିଷ୍ଠା ମଧ୍ୟ ଯଥେଷ୍ଟ ଥିଲା । ଅଧିକାଂଶ ସମୟ ରାଜ୍ୟର ମୁଖ୍ୟ ଶାସନ ସଚିବ ପାହ୍ୟାର ଜଣେ ଅଫିସରଙ୍କୁ ଏହି ନିଗମର ଅଧ୍ୟକ୍ଷ ରୂପେ ଅବସ୍ଥାପିତ କରାଯାଉଥିଲା । କେବେ କେବେ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀମାନେ ମଧ୍ୟ ଏହି ଆସନ ଅଳଙ୍କୃତ କରୁଥିଲେ । ଏହା କହିବାର ଉଦ୍ଦେଶ୍ୟ ହେଉଛି, ସେ ସମୟରେ ଅର୍ଥାତ୍ ୧୯୮୦ ମସିହା ବେଳକୁ ଓଡ଼ିଶା

ବନ ନିଗମ ରାଜ୍ୟର ଅନ୍ୟାନ୍ୟ ସାଧାରଣ ଉଦ୍ୟୋଗ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରିଥିଲା ଏବଂ ବନ ନିଗମର ଅଧିକାରୀମାନେ ସମସାମୟିକ ବନବିଭାଗ ଅଧିକାରୀମାନଙ୍କଠାରୁ ଯଥେଷ୍ଟ ସ୍ୱଚ୍ଛନ୍ଦ ଜୀବନ ବିତାଉଥିଲେ । ସେମାନଙ୍କ ହାତରେ ଏକାଧିକ ଜିପ୍ ଥିଲା, ଟ୍ରକ୍ ଥିଲା । ଖାଇବା, ଖୁଆଇବା ବାବଦରେ ଖର୍ଚ୍ଚ କରିବା ପାଇଁ 'କଣ୍ଟିଜେନ୍‌ସି' ଯଥେଷ୍ଟ ଥିଲା । କେହି ଉପରିସ୍ଥ ଅଫିସର୍ ଟୁର୍‌ରେ ଆସିଲେ, ସେମାନଙ୍କର କ୍ୟାମ୍ପ ବନ୍ଦୋବସ୍ତ ପାଇଁ ମଧ୍ୟ ଅନେକ ସମୟରେ ଆମକୁ ବନନିଗମ ଉପରେ ନିର୍ଭର କରିବାକୁ ପଡୁଥିଲା । ନୂଆବର୍ଷ ଉପଲକ୍ଷେ ବନନିଗମ ତରଫରୁ ଡି.ଏଫ୍.ଓ. ମାନଙ୍କୁ ବିଧିବଦ୍ଧ ଭାବେ ଉପହାର ମିଳୁଥିଲା ।

ଦାତାର ସ୍ଥାନ ସବୁବେଳେ ଉଚ୍ଚରେ । ଏହି କାରଣରୁ ହୋଇପାରେ କିମ୍ବା ଅନ୍ୟ କିଛି ଆନୁଷଙ୍ଗିକ କାରଣରୁ ନବରଂଗପୁର ଡିଭିଜନାଲ୍ ମ୍ୟାନେଜର ଶ୍ରୀ ବେହେରାଙ୍କ ମନରେ ହୁଏତ ସାମାନ୍ୟ ଅହଙ୍କାର ଥିଲା । କେବଳ ସେ କାହିଁକି, ତାଙ୍କ ବ୍ୟାଚ୍‌ର ଅନ୍ୟ କେତେକ ଡିଭିଜନାଲ ମ୍ୟାନେଜର ମଧ୍ୟ ଡେରାଡୁନ୍‌ସ୍ଥିତ ବନ ମହାବିଦ୍ୟାଳୟରୁ ପ୍ରଶିକ୍ଷଣ ନେଇଥିବାରୁ ସେମାନେ ଆମଠାରୁ ନିଜକୁ ସିନିୟର ବୋଲି ଦାବି କରୁଥିଲେ ଏବଂ ଦୈନନ୍ଦିନ ବ୍ୟବହାରରେ ମଧ୍ୟ ଏହି ମନୋଭାବ ସମୟ, ଅସମୟରେ ପରିପ୍ରକାଶ ହୋଇ ଯାଉଥିଲା ।

ନବରଂଗପୁର ବନ ନିଗମ ଡିଭିଜନ ସେ ସମୟରେ ବ୍ରହ୍ମପୁର ଠାରେ ଅବସ୍ଥାପିତ ମୁଖ୍ୟ କାର୍ଯ୍ୟନିର୍ବାହୀଙ୍କ ଅଧୀନରେ ଥିଲା । ବ୍ରହ୍ମପୁର ଜୋନ୍‌ର ମୁଖ୍ୟ କାର୍ଯ୍ୟନିର୍ବାହୀ ଥିଲେ, ବନ ବିଭାଗର ଅନ୍ୟତମ ବରିଷ୍ଠ କଞ୍ଜରଭେଟର ଶ୍ରୀଯୁକ୍ତ ସୁବାସ ପାଢ଼ୀ, ଆଇ.ଏଫ୍.ଏସ୍. ପରେ ଶ୍ରୀଯୁକ୍ତ ପାଢ଼ୀ ଓଡ଼ିଶା ପ୍ରଥମ ପ୍ରଧାନ ମୁଖ୍ୟ ବନ ସଂରକ୍ଷକ ଭାବେ ବନ ବିଭାଗର ସର୍ବୋଚ୍ଚ ପଦବୀରୁ ଅବସର ଗ୍ରହଣ କରିଥିଲେ । ମୁଁ ନବରଂଗପୁରରେ ଜଏନ୍ କରିବାର ପ୍ରାୟ ଚାରିମାସ ପରେ ଜାନୁୟାରୀ ମାସ ଶେଷ ସପ୍ତାହ ଆଡ଼କୁ ବ୍ରହ୍ମପୁର ଜୋନ୍ ମୁଖ୍ୟ କାର୍ଯ୍ୟନିର୍ବାହୀ ଶ୍ରୀଯୁକ୍ତ ପାଢ଼ୀ କୋରାପୁଟ ଗସ୍ତରେ ଆସିଲେ । ସେ ସମୟରେ ବନ ନିଗମ ଓ ବନ ବିଭାଗ ଅଫିସରମାନଙ୍କ ମଧ୍ୟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ରହିଥିଲା । ନିଗମର କେହି ଉଚ୍ଚ ଅଫିସର୍ ଆସିଲେ, ଉଭୟ ବନ ବିଭାଗ ଏବଂ ବନନିଗମର ସମସ୍ତ ଅଫିସର୍ ଉପସ୍ଥିତ ରହୁଥିଲେ ଏବଂ ତାଙ୍କ ଗସ୍ତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ । ଆମ କଞ୍ଜରଭେଟର ଶ୍ରୀ ଗୌର ଗୋବିନ୍ଦ ଦାସ, ଚାକିରିରେ ଶ୍ରୀଯୁକ୍ତ ପାଢ଼ୀଙ୍କ ଠାରୁ ସିନିୟର ହୋଇଥିଲେ ମଧ୍ୟ ଉଭୟ ପରସ୍ପରକୁ ନାଁ ଧରି ଡାକୁଥିଲେ । ସେ ମଧ୍ୟ ତାଙ୍କ ସହିତ ଟୁର୍‌ରେ ଆସିଥାନ୍ତି ।

ସେଦିନ ସେମାନଙ୍କର ରାତ୍ରୀ ରହଣିର ବନ୍ଦୋବସ୍ତ ନବରଂଗପୁର ପୂର୍ବ ବିଭାଗର ଡାକବଂଗଳାରେ କରାଯାଇଥାଏ । ଗସ୍ତ କାର୍ଯ୍ୟକ୍ରମରେ ସାମିଲ୍ ହୋଇଥିବା କୋରାପୁଟ, ଜୟପୁର ଏବଂ ନବରଂଗପୁରର ଉଭୟ ବନ ବିଭାଗ ଏବଂ ବନ ନିଗମର ଦଶ, ବାରଜଣ ଅଫିସରଙ୍କ ପାଇଁ କ୍ୟାମ୍ପ ଆରେଞ୍ଜମେଣ୍ଟ ଦାୟିତ୍ୱ ନବରଂଗପୁର ବନନିଗମ ନେଇଥାଏ ।

ପ୍ରଚଳିତ ପ୍ରଥାନୁଯାୟୀ ସେଦିନ ଅତିକ୍ରାନ୍ତ ସଂଧ୍ୟାରେ ରାତ୍ରୀଭୋଜନ ପୂର୍ବରୁ 'ଡ୍ରିଙ୍କ୍ସ' ଏବଂ 'ସ୍ନାକ୍ସ'ର ବନ୍ଦୋବସ୍ତ କରାଯାଇଥାଏ । ଅନ୍ୟମାନଙ୍କ ଠାରୁ ଶୁଣିଥିଲି, ପାଢ଼ୀ ସାହେବ ଜଣେ କଡ଼ା ମିଜାଜ୍‌ର ଅଫିସ୍‌ର । ଡ୍ରିଙ୍କ୍ସ ବିଷୟରେ ସେ ଅତ୍ୟନ୍ତ ପର୍ଟିକୁଲାର । ଯେଉଁ ଅଫିସର୍ ପାର୍ଟିରେ ମଦ୍ୟପାନ କରନ୍ତି ନାହିଁ, ତାଙ୍କ ଉପରେ ସେ ଖୋଲାଖୋଲି ଭାବରେ ବିରକ୍ତି ପ୍ରକାଶ କରନ୍ତି । ତାଙ୍କ ମତରେ, ଯେଉଁ ଫରେଷ୍ଟ ଅଫିସର୍ ମଦ୍ୟପାନ କରନ୍ତି ନାହିଁ, ସେ ଜଣେ ଦକ୍ଷ ଅଫିସର ହୋଇପାରିବ ନାହିଁ, ପାନୀୟ ସେବନ ବନ ବିଭାଗ ଆଭିଜାତ୍ୟର ଏକ ପାରମ୍ପରିକ ପରିପ୍ରକାଶ ।

ନବରଂଗପୁରରେ ମୋର ଡି.ଏଫ୍.ଓ. ଚାକିରି ସେତେବେଳକୁ ମାତ୍ର ଚାରିମାସ । ଏସବୁ ହାଇଫାଇ, କାରବାରରେ ମୁଁ ଅଭ୍ୟସ୍ତ ହୋଇ ନଥାଏ । ତେଣୁ ଚୁପ୍ ଚାପ୍ ଗୋଟିଏ କୋଣକୁ ବସି କିଛି ମୃଦୁ ପାନୀୟ (କୋଲ୍‌ଡ ଡ୍ରିଙ୍କ୍ସ) ଗଳାଧଃକରଣ କରୁଥାଏ । ଲକ୍ଷ୍ୟ କଲି, ଅନ୍ୟ ଜଣେ ଅଫିସର୍ ମଧ୍ୟ ମଦିରାପାନ କରୁନାହାନ୍ତି । ସେ ହେଉଛନ୍ତି, ଜୟପୁର ବନ ନିଗମର ଡିଭିଜନାଲ୍ ମ୍ୟାନେଜର ଶ୍ରୀ ଷ୍ଟିଫେନ୍ ବେହେରା । ବୟସରେ ମୋ ଠାରୁ ଯଥେଷ୍ଟ ବଡ଼ । ଚାକିରିରେ ମଧ୍ୟ ଅଧିକ ଅନୁଭୂତି ସଂପନ୍ନ । ତେଣୁ ଏ ସର୍ବଭକ୍ଷ ଅଭିଯାନରେ ଅନ୍ୟ ଜଣେ ନିରାମିଷାଶୀ ସାଥୀଙ୍କୁ ପାଇଲା ପରେ ମୋ ମନରେ ସାମାନ୍ୟ ଦମ୍ଭ ପଶିଲା ।

କିଛି ସମୟ ଆସର ଚାଲିଲା ଭିତରେ ଆମ ଦୁହିଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ଶ୍ରୀ ପାଢ଼ୀ ଗମ୍ଭୀର କଣ୍ଠରେ ପଚାରିଲେ, ତୁମେ ଦୁହେଁ କାହିଁକି କିଛି ନେଉନ । ମୁଁ କିଛି କହିବା ପୂର୍ବରୁ ଷ୍ଟିଫେନବାବୁ ଉତ୍ତରଦେଲେ– ଆମେ ଦୁହେଁ ଡ୍ରିଙ୍କ୍ କରୁନା । ଏହି ସିଧାସଳଖ ଉତ୍ତରରେ ଉତ୍ତେଜିତ ହୋଇଗଲେ ପାଢ଼ୀ ସାହେବ । ପୁନଶ୍ଚ ପ୍ରଶ୍ନବାଣ, କ'ଣ ଏଇଟା ତୁମ ନିଜ ହୃଦୟର ନିର୍ଦ୍ଦେଶରେ ପିଉନାହିଁ, ନା ଘରେ ସ୍ତ୍ରୀମାନେ ପିଇବାକୁ ବାରଣ କରିଛନ୍ତି ।

ପୂର୍ବପରି ନିର୍ଲିପ୍ତ ଭାବେ ଉତ୍ତର ଦେଲେ ଷ୍ଟିଫେନ୍‌ବାବୁ–ଏଇଟା ଆମ ହୃଦୟର ନିର୍ଦ୍ଦେଶ । ଆମେ ନିଜ ଇଚ୍ଛାରେ ପିଉନୁ ।

ମୁଁ କେବଳ ମୁହଁ ତଳକୁ ପୋତି ଚୁପଚାପ୍ ବସିଥାଏ । ଯାହାହେଉ ଷ୍ଟିଫେନ୍ ବାବୁ ଜଣେ ସିନିୟର ଅଫିସର୍ ହୋଇଥିବାରୁ କଥା ସେଇଠି ରହିଲା । ଆଉ ଆଗକୁ ବଢ଼ିଲା ନାହିଁ । ଏହି ଘଟଣା ପରଠାରୁ ଜୀବନରେ ଅଦ୍ୟାବଧି ମଦିରା ରସସିକ୍ତ ହେବାର ଅବକାଶ ଆସିନାହିଁ; କି ତଥାକଥିତ ମିଥ୍ୟା ଆଭିଜାତ୍ୟର ଘଟାଟୋପ ଭିତରେ ଆବଦ୍ଧ ହେବାର ସୁଯୋଗ ବା ଦୁର୍ଯୋଗ ମୋ ଜୀବନରେ ଏ ପର୍ଯ୍ୟନ୍ତ ଆସିନାହିଁ ।

ଶ୍ରୀଯୁକ୍ତ ସୁବାସ ପାଢ଼ୀ ବ୍ରହ୍ମପୁର ବନନିଗମ ଜୋନ୍‌ର ମୁଖ୍ୟ କାର୍ଯ୍ୟନିର୍ବାହୀ ଥିବା ସମୟରେ ଅନ୍ୟ ଏକ ଘଟଣା ଘଟିଥିଲା । ସେତେବେଳେ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦାସ, ଓଡ଼ିଶାର ମୁଖ୍ୟ ବନ ସଂରକ୍ଷକ ଥିଲେ । ଜଙ୍ଗଲ ବିଭାଗର ସର୍ବୋଚ୍ଚ ଅଧିକାରୀ । ସେ ସମୟରେ ଜଙ୍ଗଲରୁ କାଠ କାଟିବା କାମ ବନ ନିଗମ ଦ୍ୱାରା କରାଯାଉଥାଏ । ଏଥିପାଇଁ ପ୍ରତିବର୍ଷ ବିଭିନ୍ନ 'କୁପ' ମାନଙ୍କର ରୟାଲ୍‌ଟି ବା ରାଜସ୍ୱ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ସ୍ଥିର କରାଯାଏ । ତାହାକୁ ଉଭୟ ଡି.ଏଫ୍.ଓ. ଏବଂ ଡିଭିଜନାଲ ମ୍ୟାନେଜର ସହମତ ହୋଇ ଦସ୍ତଖତ କରନ୍ତି । ଯଦି ଏ ଦୁହିଁଙ୍କ ଭିତରେ ସହମତି ନ ହୁଏ, ତେବେ କଞ୍ଜରଭେଟର ଅର୍ଥାତ୍ ବନ ସଂରକ୍ଷକ ଏବଂ ନିଗମର ମୁଖ୍ୟ କାର୍ଯ୍ୟନିର୍ବାହୀ ଆଲୋଚନା କରି ରାଜସ୍ୱ ସ୍ଥିର କରିଥାନ୍ତି । ସେ ବର୍ଷ କୌଣସି କାରଣରୁ ମୁଖ୍ୟ ବନ ସଂରକ୍ଷକ ସଚ୍ଚିଦାନନ୍ଦବାବୁ ସର୍କୁଲାର କରିଥିବା ଫର୍ମୁଲା ଅନୁସାରେ ନିର୍ଣ୍ଣିତ ହୋଇଥିବା ରୟାଲ୍‌ଟି ପ୍ରସ୍ତାବରେ ଡିଭିଜନାଲ୍ ମ୍ୟାନେଜର ଶ୍ରୀ ବେହେରା ସମ୍ମତ ହେଲେ ନାହିଁ । ତେଣୁ ପ୍ରପୋଜାଲ୍‌ଟି କଞ୍ଜରଭେଟରଙ୍କ ନିକଟକୁ ପଠାଇ ଦିଆଗଲା । ସେ ବନନିଗମର ଜୋନାଲ୍ ମୁଖ୍ୟ କାର୍ଯ୍ୟନିର୍ବାହୀଙ୍କ ସହିତ ଆଲୋଚନା କରି ରୟାଲ୍‌ଟି ଫାଇନାଲ୍ କରିଥାନ୍ତେ ।

କିଛି ଦିନ ପରେ ବ୍ରହ୍ମପୁର ବନ ନିଗମ ଜୋନ୍ ଅଫିସ୍‌ରୁ ପତ୍ର ଆସିଲା, ମୁଖ୍ୟ କାର୍ଯ୍ୟନିର୍ବାହୀଙ୍କ ଅଫିସ୍‌ରେ (ନିୟମାନୁସାରେ ଏହା କୋରାପୁଟ କଞ୍ଜରଭେଟରଙ୍କ ଅଫିସ୍‌ରେ ହେବାକଥା) ନବରଂଗପୁର ଡିଭିଜନ୍‌ର ରୟାଲଟି ପ୍ରସ୍ତାବ ଆଲୋଚନା କରାଯିବ । ନବରଂଗପୁରରୁ ମୁଁ ଓ ଡି.ଏମ୍. ଶ୍ରୀ ବେହେରା ଏବଂ କୋରାପୁଟରୁ ବନସଂରକ୍ଷକ ଶ୍ରୀ ଦାସ ବ୍ରହ୍ମପୁର ଗଲୁ । ସେଠି ଆଲୋଚନା ପ୍ରସଙ୍ଗରେ ମୁଁ ମୁଖ୍ୟ ବନସଂରକ୍ଷକ ଦେଇଥିବା ନିର୍ଦ୍ଦେଶନାମା ଅନୁସାରେ କିପରି ଏବର୍ଷ ରୟାଲ୍‌ଟି ଆକଳନ କରାଯାଇଛି, ତାହା ପ୍ରାଞ୍ଜଳଭାବେ ବୁଝାଇ ଦେଲି । ମୋର ସବୁ ଯୁକ୍ତି ଶୁଣି ସାରିବା ପରେ ମୁଖ୍ୟ କାର୍ଯ୍ୟନିର୍ବାହୀ ଶ୍ରୀ ପାଢ଼ୀ, ତାଙ୍କର ବଂଧୁ କୋରାପୁଟ କଞ୍ଜରଭେଟରଙ୍କୁ ସମ୍ବୋଧନ

କରି କହିଲେ, 'ଗୌର ଗୋବିନ୍ଦ ! ଏ ବର୍ଷର ରୟାଲ୍‌ଟି ନୂଆ ଫର୍ମୁଲାରେ ଆକଳନ ନକରି ଗତବର୍ଷ ଅନୁସରଣ କରାଯାଇଥିବା ପଦ୍ଧତି ଅନୁସାରେ କରାଯାଉ । ସଂଗେ ସଂଗେ ଆମ କଞ୍ଜରଭେଟର ସିଧାସଳଖ ମୋତେ ପଚାରିଲେ, 'ବିଜୟ, କ'ଣ କହୁଛ ? ପାଢ଼ୀ କଥା ମାନିଯିବା ।'

ମୁଁ ଉତ୍ତର ଦେଲି, ସାର୍ । ମୋର ଏଥିରେ ହଁ ବା ନା କରିବାର କ'ଣ ଅଛି ? ଏହି ନିର୍ଦ୍ଦେଶ ଆଗରୁ ମିଳିଥିଲେ ମୁଁ ଓ ଡି.ଏମ୍. ନବରଂଗପୁରରେ ହିଁ ରୟାଲଟି ଫାଇନାଲ୍ କରି ଦେଇଥାନ୍ତୁ । ଏଠିକି କାହିଁକି ଆସିଥାନ୍ତେ । ଶେଷକୁ ରୟାଲଟି ବଢ଼ାଇବା ପ୍ରସ୍ତାବ ସେଇଠି ରହିଲା । ବନ ନିଗମକୁ ସେ ସମୟରେ କଥା କଥାକେ କିପରି ପ୍ରାଧାନ୍ୟ ଦିଆଯାଉଥିଲା, ଏହା ଏକ ନିଛକ ଉଦାହରଣ ।

କିଛିଦିନ ଉପରାନ୍ତେ ବ୍ରହ୍ମପୁର ଜୋନ୍‌ର ମୁଖ୍ୟ କାର୍ଯ୍ୟନିର୍ବାହୀ ପଦବୀରୁ ଶ୍ରୀ ପାଢ଼ୀଙ୍କର ବଦଳି ହେଲା । ତାଙ୍କ ସ୍ଥାନରେ ବନ ବିଭାଗର ଅନ୍ୟତମ ଅଫିସ୍‌ର ଶ୍ରୀ ଶିବରାମ ମହାପାତ୍ର ଜଏନ୍ କଲେ । ଶିବରାମ ବାବୁ ଓ ଆମ କଞ୍ଜରଭେଟର ଗୌର ଗୋବିନ୍ଦବାବୁ ଜିଗରିଦୋସ୍ତ । ଏହାର ସୁଯୋଗ ନେଇ ନିଗମର ଡି.ଏମ୍. ସାମାନ୍ୟ ସାମାନ୍ୟ କଥାରେ, ମୋ ସହିତ ଆଉ ଆଲୋଚନା ନକରି ସିଧାସଳଖ ଶିବରାମ ବାବୁଙ୍କ ଦୃଷ୍ଟିକୁ ଆଣୁଥିଲେ ଏବଂ ତାଙ୍କ ଜରିଆରେ ବଂଧୁତ୍ୱର ଫାଇଦା ନେଇ ଆମ କଞ୍ଜରଭେଟରଙ୍କୁ ପ୍ରେସରାଇଜ କରି କାମ ହାସଲ କରି ନେଉଥିଲେ । ଏମିତି ଏକ ଘଟଣାର ଅବତାରଣା ଏଠି କରୁଛି ।

ସେତେବେଳେ ବନ ନିଗମକୁ ଉମରକୋଟ ଓ ଝରିଗାଁ ଜଙ୍ଗଲରେ ସାଲ୍‌ଭେଜ କାଠ ବ୍ୟବହାର କରି, କାଠରୁ କୋଇଲା ପ୍ରସ୍ତୁତ କରିବାକୁ ଅନୁମତି ମିଳିଥାଏ । ଏଥିପାଇଁ କିଛିଟା କଟକଣା ଇମ୍ପୋଜ କରାଯାଇଥିବାରୁ ନିଗମ ଏକ ନିର୍ଦ୍ଦିଷ୍ଟ ଅବଧିପାଇଁ ବନ ବିଭାଗ ଅଫିସରୁ ଅନୁମତିପତ୍ର ପାଇଲା ପରେ ଜଙ୍ଗଲରେ କୋଇଲା ପୋଡେଇଥାଏ । ସେହି ବର୍ଷ ଲାଇସେନ୍‌ସ ଅବଧି ସମାପ୍ତ ହୋଇଗଲା ପରେ ମଧ୍ୟ ନିଗମ ଏହାକୁ ପୁନଃ ନବୀକରଣ କରାଇ ନଥାଏ । ମୁଁ ଡିଭିଜନାଲ ମ୍ୟାନେଜରଙ୍କୁ ଏ ସଂପର୍କରେ ଲିଖିତ ଭାବେ ପୁନଃ ଦରଖାସ୍ତ ଦେବାପାଇଁ ଅନୁରୋଧ ଜଣାଇ ସାରିଥାଏ । ଥରେ ଦୁଇଥର କହିଲା ପରେ ମଧ୍ୟ ସେମାନେ ନିୟମ କାନୁନ୍ ପ୍ରତି କର୍ଣ୍ଣପାତ କଲେନି ବା ଲାଇସେନ୍‌ସ ନବୀକରଣ ପାଇଁ ପୁନଃ ଦରଖାସ୍ତ ଦେଲେନି । ମୋତେ ଲାଗିଲା, ନିଗମ ଅଧିକାରୀମାନେ ଯେପରି

ଦିନକୁ ଦିନ ବେପରବାୟ ହୋଇ ଯାଉଛନ୍ତି । ଏହି ପରିପ୍ରେକ୍ଷୀରେ ବିନା ପରମିଟ୍‌ରେ ଆସୁଥିବା ଦୁଇଟା କୋଇଲା ବୋଝେଇ ଟ୍ରକ୍, ପାପଡ଼ାହାଣ୍ଡି ଫରେଷ୍ଟ ଚେକ୍‌ଗେଟ୍‌ଠାରେ ସିଜ୍ ହୋଇଗଲା ଏବଂ ରାସ୍ତା କଡ଼ର ଗୋଟିଏ ଖୋଲା ଜାଗାରେ କୋଇଲା ଅନ୍‌ଲୋଡ କରି ଟ୍ରକ୍ ଦୁଇଟିକୁ ରିଲିଜ୍ କରିଦିଆଗଲା ।

ଏହି ଘଟଣାର କିଛିଦିନ ପରେ ବନ ନିଗମର ବ୍ରହ୍ମପୁର ଜୋନ୍ ମୁଖ୍ୟ କାର୍ଯ୍ୟନିର୍ବାହୀ ଶିବରାମ ବାବୁ ଓ କୋରାପୁଟ ବନ ସଂରକ୍ଷକ ଗୌରଗୋବିନ୍ଦ ବାବୁ ଏକତ୍ର ମିଶି ନବରଂଗପୁର ଟୁର୍‌ରେ ଆସିଲେ । ପରେ ଜାଣିଲି, ଏହା ଏକ ପ୍ରି-ଆରେଞ୍ଜଡ ଟୁର୍ ଥିଲା । ନବରଂଗପୁରରେ ମଧ୍ୟାହ୍ନ ଭୋଜନ ପରେ ଅପରାହ୍ନରେ ସେମାନଙ୍କର ଭାବନୀପାଟଣା ଯିବାର ଥିଲା । ସେମାନଙ୍କ ସହିତ ନବରଂଗପୁର ଡିଭିଜନ ସୀମାନ୍ତ 'ମୈଦଲପୁର' ଯାଏ ଯିବାପାଇଁ ମୋତେ ଓ ବନନିଗମ ଡି.ଏମ୍.ଙ୍କୁ ନିର୍ଦ୍ଦେଶ ଦିଆଗଲା । ଆମ୍ବାସେଡ଼ର କାର୍‌ର ପଛସିଟ୍‌ରେ କଞ୍ଜରଭେଟର ଓ ମୁଖ୍ୟ କାର୍ଯ୍ୟନିର୍ବାହୀ ବସିଥାନ୍ତି । ଆଗପଟେ ମୁଁ ଓ ଡି.ଏମ୍. ବସିଥାଉ । ପାପଡ଼ାହାଣ୍ଡିଠାରେ ଗାଡ଼ି ମୈଦଲପୁର ଆଡ଼କୁ ବାଙ୍କ ମୋଡ଼ିଲାବେଳେ ହଠାତ୍ କ'ଣ ଦେଖି ଶିବରାମବାବୁ ଗାଡ଼ି ଅଟକେଇବାକୁ ନିର୍ଦ୍ଦେଶ ଦେଲେ ଏବଂ ଆମ କଞ୍ଜରଭେଟରଙ୍କୁ କହିଲେ, ଗୌର ଗୋବିନ୍ଦ, ଦେଖିଲ ଏଠି ରାସ୍ତାକଡ଼ରେ ପାହାଡ଼ ଭଳି କୋଇଲା ଗଦା ହୋଇ ନିହାତି ଅପରିଷ୍କାର ଓ କଦର୍ଯ୍ୟ ଦିଶୁନି ?  ମୁଁ କିଛି କହିବା ଆଗରୁ ବନ ନିଗମର ଡି.ଏମ୍. କହିଲେ ଏହି କାଠ କୋଇଲା ଉମରକୋଟରୁ ସେମାନେ ଆଣୁଥିଲାବେଳେ ଫରେଷ୍ଟ ଷ୍ଟାଫ୍ ସିଜ୍ କରିଛନ୍ତି ।

ପ୍ରଶ୍ନବାଣ ମୋ ଆଡ଼କୁ ବୁଲିଗଲା । ମୁଁ ଉତ୍ତର ଦେଲି, ଲାଇସେନ୍‌ସ ନଥାଇ ସେମାନେ କୋଇଲା ପୋଡୁଥିଲେ । ଡି.ଏମ୍. କହିଲେ ଲାଇସେନ୍‌ସ ପାଇଁ ସେମାନେ ଦରଖାସ୍ତ କରିଛନ୍ତି; କିନ୍ତୁ ଏ ଯାଏ ମିଳିନି । ମୁଁ ଯୁକ୍ତି କଲି ଆଜି ପର୍ଯ୍ୟନ୍ତ ମଧ୍ୟ ସେମାନଙ୍କର ଆପ୍ଲିକେସନ ଡିଭିଜନ ଅଫିସର୍‌ରେ ପହଞ୍ଚି ନାହିଁ । ଆମ ଭିତରେ ଏମିତି କଥା କଟା କଟି ଚାଲିଥିଲାବେଳେ, କଞ୍ଜରଭେଟର ସାହେବ, ଯିଏ କି କାର୍ ପଛପଟେ ଚୁପ୍‌ଚାପ୍ ବସି ସବୁ ଶୁଣୁଥିଲେ; କିଛି  କହୁନଥିଲେ, ହଠାତ୍ ଚିତ୍କାର କଲାପରି କହିଲେ; କ'ଣ କଳ୍ପତରୁ (ଡି.ଏମ୍.) କହୁଛି, ସେମାନେ କେବେଠୁଁ ଦରଖାସ୍ତ କଲେଣି, ତୁମେ କିପରି ନାହିଁ କରୁଛ ? କାଗଜପତ୍ର ବୋଧହୁଏ ଠିକ୍‌ଠାକ୍ ଦେଖୁନ ।

ମୁଁ ଅଗତ୍ୟା ଆଉ କୌଣସି ଉତ୍ତର ନଦେଇ ଚୁପ୍ ରହିଲି । ମୈଦଲପୁରଠାରୁ ଆମେ ଦୁହେଁ ଫେରିଆସିଲୁ । ଶିବରାମବାବୁ ଓ କଞ୍ଜରଭେଟର ଦୁହେଁ ଭବାନୀପାଟଣା ଗଲେ ।

ଏହି ଘଟଣାରେ ମୁଁ ଏତେ ଅପମାନିତ ହୋଇଥିଲି ଯେ, କଞ୍ଜରଭେଟରର ସା'ବ କୋରାପୁଟ ଫେରିବା ପରେ କୋଇଲା ଲାଇସେନ୍‌ସ ସଂକ୍ରାନ୍ତୀୟ ସମସ୍ତ କାଗଜପତ୍ର ଥିବା ଫାଇଲ୍‌ଟି ଏ.ସି.ଏଫ୍. ଙ୍କ ହାତରେ ତାଙ୍କ ଅଫିସ୍‌କୁ ପଠେଇ ଦେଲି । ତାଙ୍କୁ ନିଜ ତରଫରୁ ଫୋନ୍ କଲିନି । କିଛିଦିନ ପର୍ଯ୍ୟନ୍ତ ତାଙ୍କ ଅଫିସ୍‌କୁ ମଧ୍ୟ ଗଲିନି ।

ଏକଥା ବୋଧହୁଏ ମିସେସ୍ କଞ୍ଜରଭେଟରଙ୍କ କାନରେ ପଡ଼ିଲା । ସେ ଭଦ୍ରମହିଳା ଅତ୍ୟନ୍ତ ସ୍ନେହୀ । କେହି ଡି.ଏଫ୍.ଓ. କୋରାପୁଟ ଆସିଥିଲେ, ତାକୁ ଘରକୁ ଡାକି ଦହିବରା କରି ଖୁଆଇବା ତାଙ୍କର ଗୋଟିଏ ସଉକ୍ । ମୋ ଉପରେ କଞ୍ଜରଭେଟର ଅଯଥା ବିରକ୍ତ ହୋଇଛନ୍ତି ବୋଲି ଅଭିମାନ କରି ମୁଁ କୋରାପୁଟ ଯାଉନି; ଏକଥା ସେ ଅନ୍ୟ ଡି.ଏଫ୍. ଓ .ମାନଙ୍କଠାରୁ ଜାଣିବାକୁ ପାଇ ଫୋନ୍ କରି ମୋତେ ଡକାଇଲେ । ମୁଁ ତାଙ୍କ ଘରେ ପହଞ୍ଚିବା ପରେ, ମୋ ଆଗରେ ନିଜ ସ୍ୱାମୀଙ୍କ ଉପରେ ବିରକ୍ତ ପ୍ରକାଶ କରି କହିଲେ; ତମେ ସେ ଶିବରାମ କଥାରେ ମାତି ପିଲାମାନଙ୍କୁ (ଅର୍ଥାତ୍ ଆମଭଳି ଯୁବ ଡି.ଏଫ୍.ଓ. ମାନଙ୍କୁ) ଗାଳି କରୁଛ । ମୁଁ ଯାହା ଶୁଣିଛି ପିଲାମାନେ ଠିକ୍ କହୁଛନ୍ତି ଏବଂ ଠିକ୍ କାମ ବି କରୁଛନ୍ତି । ମିସେସ୍ କଞ୍ଜରଭେଟରଙ୍କର ସ୍ନେହ ତଥା.ମମତାର ପୁଟଦିଆ ଏଇ କଥାପଦକ ଏ ପର୍ଯ୍ୟନ୍ତ ମୋର ମନେ ଅଛି ।

ନବରଂଗପୁର ଡି.ଏଫ୍.ଓ.ଙ୍କ ବାସଗୃହ, ଅନ୍ୟାନ୍ୟ ଟେରିଟୋରିଆଲ୍ ଡି.ଏଫ୍.ଓ.ଙ୍କ ବାସଗୃହ ତୁଳନାରେ ଯଥେଷ୍ଟ ଛୋଟ । ସଂଲଗ୍ନ ଅଫିସ୍‌ଟି ମଧ୍ୟ ଅପେକ୍ଷାକୃତ ଛୋଟ । କିନ୍ତୁ ମୋର ପ୍ରଥମ ଡିଭିଜନ ପୋଷ୍ଟିଙ୍ଗ୍‌ରେ ମିଳିଥିବା ଏଇ ଘରଟି, ମୋ ଚାକିରି ଜୀବନର ଅୟମାରମ୍ଭରେ ବେଶ୍ ଶୁଭ ସାବ୍ୟସ୍ତ ହୋଇଛି । ଏବେ ବି ନବରଂଗପୁରର ସ୍ଥାନୀୟ ବାସିନ୍ଦାମାନେ ମନେ ପକାଇ କୁହନ୍ତି; ବି.କେ. ପଟ୍ଟନାୟକ ଡି.ଏଫ୍.ଓ. ଥିଲାବେଳେ ଆମେ ତାଙ୍କ ଘରେ ତିନି ତିନି ଥର ଭଲ ଭୋଜି ଖାଇଛୁ ।

ଆମେ ପ୍ରଥମଥର ଭୋଜି ଦେଇଥିଲୁ ପୁଅର ବର୍ଷ ପୂରଣିରେ । ଅକ୍ଟୋବର ଦୁଇ ତାରିଖ ୧୯୮୦ ମସିହାରେ । ପ୍ରିମାଚ୍ୟୁର ଚାଇଲ୍‌ଡ ହୋଇଥିବାରୁ, ପୁଅର ଏକୋଇଶା ଉତ୍ସବ ଆଡ଼ମ୍ବରପୂର୍ଣ୍ଣ ନକରି କେବଳ ପୋଥିପାଲା ପୂଜା, ଶିରିଣି ଭୋଗ ଏବଂ କିଛି ଘନିଷ୍ଠ ସଂପର୍କୀୟଙ୍କ ମଧ୍ୟରେ ସୀମିତ ଥିଲା । ଏହି କାରଣରୁ ବର୍ଷ ପୂର୍ତ୍ତି ଉତ୍ସବ ଖୁବ୍ ଧୁମ୍‌ଧାମ୍‌ରେ ଆୟୋଜନ କରାଯାଇଥିଲା । ନବରଂଗପୁରର ସବଡିଭିଜନ ସ୍ତରୀୟ ସମସ୍ତ ଅଫିସର, ସ୍ଥାନୀୟ ଭଦ୍ରବ୍ୟକ୍ତି ତଥା ତାଙ୍କ ପରିବାର ଏବଂ ମୁଁ ଓ ମୋ ସ୍ତ୍ରୀଙ୍କ ପରିବାରର ପ୍ରାୟ ସବୁ

ସଦସ୍ୟ ଏହି ଉତ୍ସବରେ ଯୋଗ ଦେଇଥିଲେ । ନବରଂଗପୁରର ତତ୍କାଳୀନ ବିଧାୟକ ଏବଂ ମନ୍ତ୍ରୀ ଜନାବ୍ ହବିବୁଲ୍ଲା ଖାଁ ଉତ୍ସବରେ ଉପସ୍ଥିତ ରହି ପୁଅକୁ ଆଶୀର୍ବାଦ କରିଥିଲେ ।

ସେହିବର୍ଷ ଦୋଳ ପର୍ବକୁ, ଗୋଟିଏ ଭଡ଼ା ଟାକ୍‌ସି କରି ଆମେ ସମସ୍ତେ ଗାଁକୁ ଆସିଲୁ । ଆମ ଗାଁରେ ଦୋଳପର୍ବ ଓ ଦଶଦୋଳ ଯାତ୍ରା ଖୁବ୍ ଜାକଜମକରେ ପାଳନ କରାଯାଏ । ବାଜା, ରୋଶଣି, ନାଗାନାଚ, ଘୋଡ଼ାନାଚ, ବାଘନାଚ ଆଦି ପ୍ରସେସନ ସହ ଗାଁର ଠାକୁରମାନେ ବିମାନ ଆରୂଢ଼ ହୋଇ ମେଳଣ ପଡ଼ିଆକୁ ଯାନ୍ତି । ସେହି ସମୟରେ ସାହି ପଡ଼ିଶାଙ୍କର ଘରେ ବଂଧୁବାନ୍ଧବ ମାନେ ଭିଡ଼ ଜମାନ୍ତି । ଭାବିଥିଲି ଦଶଦୋଳ ମେଳଣକୁ ଉପଭୋଗ କରିବା ଅବସରରେ ଅନେକଦିନ ପରେ ଚିହ୍ନା, ପୁରୁଣା, ବଂଧୁବାନ୍ଧବଙ୍କ ସହିତ ଦେଖାସାକ୍ଷାତ ମଧ୍ୟ ହୋଇଯିବ । ବାଣୀବିହାରରେ ପଢ଼ିଲା ପରଠାରୁ ଗାଁର ଦଶଦୋଳ ମେଳଣ ଓ ଯାତ୍ରା ସହିତ ମୋର ସଂପର୍କ ଧୀରେ ଧୀରେ ନିଷ୍ପ୍ରାଣ ହୋଇ ଆସୁଥିଲା । ଏଥର ଗାଁରେ ପହଞ୍ଚି ବୋଉଠାରୁ ଯାହା ଶୁଣିଲି, ସେଥିରେ ମୋ ମନରେ ଥିବା ସବୁତକ ସରାଗ ମଉଳିଗଲା ।

ବୋଉ ଦୁଃଖରେ ଭାଙ୍ଗିପଡ଼ି କହୁଥିଲା, ସାହି ପଡ଼ିଶାର ସ୍ତ୍ରୀ ଲୋକ, ବନ୍ଧୁବାନ୍ଧବ ସମସ୍ତେ ତାକୁ ଦେଖେଇଶିଖେଇ ଅନେକକଥା କହୁଛନ୍ତି; 'ଘରେ ବଢ଼ିଲା ଝିଅ । ଅନେକ ଦିନରୁ ଘରେ ବସି ରହିଲାଣି । ତା' ବାହାଘର ନ ବୁଝି, ପୁଅ ବାହାଘର ଆଗ କରିଦେଲ ଯେ ପୁଅ ଯାଇ ଆରାମରେ ରହିଲା ବାହାରେ, ସ୍ତ୍ରୀ, ପିଲାଙ୍କୁ ନେଇ । ଝିଅ ବାହାଘର କଥା ବୁଝୁଛି କିଏ ।' ଟିପିକାଲ ଗାଉଁଲି ସ୍ତ୍ରୀ ଲୋକମାନଙ୍କର ମନ୍ତବ୍ୟ । ଗାଁରେ ଏମିତି ଲଗେଇ, ଜୁଟେଇ, ଦେଖେଇ ଶିଖେଇ କହିବା କଥା ମୁଁ ଶୁଣିଛି । କିନ୍ତୁ ଆକ୍ଷେପର ବାଣଟା ମୋ ଦିଗକୁ ମୁହାଁଇ ଥିବାରୁ ମୁଁ ଦୁଃଖରେ ଯେମିତି ଭାଙ୍ଗି ପଡିଲି, ତାଠୁ ଅଧିକ ମର୍ମାହତ ହେଲି ।

ବିଗତ ବର୍ଷମାନଙ୍କରେ ଯେତେ ଯେତେ ବଂଧୁବାନ୍ଧବ ତଥା ଶୁଭେଚ୍ଛୁ ମୋ ପାଇଁ ବିବାହ ପ୍ରସ୍ତାବ ଆଣୁଥିଲେ, ମୁଁ ସେମାନଙ୍କୁ କେତେ ନେହୁରା ହୋଇ କହିଛି । ଆଗ ଭଉଣୀ ପାଇଁ ବାହାଘର ପ୍ରସ୍ତାବଟିଏ ବୁଝନ୍ତୁ ତା'ପରେ ମୋ ବାହାଘର କଥା ଉଠିବ । ପୁରୁଷ ପିଲା ମୁଁ । ସର୍ବଭାରତୀୟ ସ୍ତରରେ ସରକାରୀ ପଦାଧିକାରୀ । ମୋ ପାଇଁ କନ୍ୟାପାତ୍ରୀ ଯେବେ ବି ଖୋଜିଲେ ମିଳିବେ । କିନ୍ତୁ ସବୁ ନଈ ଯେପରି ସମୁଦ୍ରକୁ ମୁହାଁଇ ଥାଏ, ସେ ସମୟରେ ଯେତେସବୁ ବିବାହ ପ୍ରସ୍ତାବ ଆସିଲା, ସେ ସବୁ ମୋ ପାଇଁ ହିଁ ଉଦ୍ଦିଷ୍ଟ ଥିଲା । କେବଳ ମୋ ପାଇଁ । କଥାରେ ଅଛି...

'ନଈ କୂଳିଆ ଗାଁ
ଝଡ଼ ବତାସରେ ଲୁଚିଯାଏ ଯା'ର ନାଁ
ବାପ ଛେଉଣ୍ଡ ଛୁଆ
ସାହା ଭରସା ନାହିଁ ଯାହାର
କହିବାକୁ ପଦେ ଆହା ।'

ବାପା ବଞ୍ଚିଥିଲେ, ପ୍ରଥମେ ନିଶ୍ଚିତ ଭାବେ ଝିଅର ବାହାଘର କରେଇଥାନ୍ତେ । ମଧ୍ୟସ୍ଥି ହୋଇ, ବାହାଘର ଜୁଟାଇବାରେ ବା ବିବାହ ପ୍ରସ୍ତାବ ଯୋଡ଼ିବାରେ ପାଖ ଆଖ ଅଞ୍ଚଳରେ ତାଙ୍କର ବେଶ୍ ପ୍ରଶସ୍ତି ଥିଲା । ପିଲାଦିନେ ହାଇସ୍କୁଲରେ ପଢୁଥିବା ସମୟର ଗୋଟିଏ କଥା ମନେ ପଡୁଛି । ରାତି ପ୍ରାୟ ବାରଟା ହେବ । ଆମେ ସମସ୍ତେ ଶୋଇଥାଉ । କେତେଜଣ ଭଦ୍ରଲୋକ ଆସି  ଦୁଆର ବାଡେଇ ବାପାଙ୍କୁ ଉଠାଇଲେ । କଥାବାର୍ତ୍ତାରୁ ଜାଣିଲି, ସେମାନେ ଖୋର୍ଦ୍ଧା ସନ୍ନିକଟ କଲ୍ୟାଣପୁର ଗାଁ, ମୋ ମାମୁ ଘର ଗାଁ'ର । ସେ ଗାଁରେ କାହାର ଝିଅ ବାହାଘର ଆଜିଥିଲା, କିନ୍ତୁ କୌଣସି କାରଣରୁ ବର ଫେରିଗଲା । ଝିଅ ବରପୂର୍ବା । ମଙ୍ଗୁଳା କନ୍ୟାକୁ ଘରେ ରଖି ହେବନି । ଯେମିତି ହେଲେ ବାହା କରେଇ ବିଦା କରିବାକୁ ହେବ ।

ବାପା ସଂଗେସଂଗେ ଧୋତିକୁର୍ତ୍ତା ପିନ୍ଧି ସେମାନଙ୍କ ସହିତ ବାହାରିଗଲେ । ପରଦିନ ଶୁଣିଲୁ, ନିକଟସ୍ଥ ଗୁରୁଜଙ୍ଗ ଗାଁର କୁଳୀନ ପରିବାରରୁ ବରଟିଏ  ଯୋଗାଡ଼ କରି ସକାଳ ପୂର୍ବରୁ ବିବାହ କାର୍ଯ୍ୟ ସଂପନ୍ନ କରାଗଲା । ତେଣୁ ମୋ ବାପାଙ୍କ ଭଳି ବିବାହ ବଜାରର ଜଣେ କରିତ୍କର୍ମା ଲୋକ ଯଦି ଆଜି ଥାନ୍ତେ, ମୋତେ କ'ଣ ଏ ନିନ୍ଦା ଅପମାନର ବୋଝ ମୁଣ୍ଡାଇବାକୁ ପଡ଼ିଥାନ୍ତା ?

ବୋଉ ସହିତ ଏକାନ୍ତରେ ବିଚାରବିମର୍ଶ କରି ଠିକ୍ କଲୁ ନବରଂଗପୁର ଫେରିଲାବେଳେ ଭଉଣୀକୁ ସାଙ୍ଗରେ ନେଇଯିବି । ବି.ଏ.ପାସ୍ କରିଛି  । ସିଲେଇରେ ମଧ୍ୟ ଧୁରନ୍ଧର । ସବୁ ସାର୍ଟିଫିକେଟ ଧରି ମୋ ସହିତ ଚାଲୁ । ନବରଂଗପୁରରେ ସବ୍‌ଡିଭିଜନାଲ୍ ଅଫିସ୍‌ର୍ ମହାପ୍ରଶସ୍ତ ବାବୁଙ୍କୁ କହି, କେଉଁ ଏକ ସ୍କୁଲରେ ଚାକିରି କରେଇ ଦେଇ ହେବ ବା ଅନ୍ୟ କିଛି ଗୋଟାଏ କାର୍ଯ୍ୟରେ ତାକୁ ଏନ୍‌ଗେଜ୍ କରିଦେଇ ହେବ । ସାହି ପଡ଼ିଶାଙ୍କଠାରୁ କଥା କଥାକେ ଗଞ୍ଜଣା ଶୁଣୁଥିବା ବୋଉ ସଂଗେ ସଂଗେ ମୋ କଥାରେ ରାଜି ହୋଇଗଲା । ଏଥର ଫେରିଲାବେଳେ ଭଉଣୀ 'ବିବି' ମଧ୍ୟ ଆମ ସହିତ

ନବରଂଗପୁର ଆସିଲା । ସାଥିରେ ନେଇ ଆସିଥାଏ ମାଟ୍ରିକୁଲେସନ୍‌ଠାରୁ ବି.ଏ. ପର୍ଯ୍ୟନ୍ତ ସମସ୍ତ ସାର୍ଟିଫିକେଟ୍ ଓ ମାର୍କସିଟ୍ ।

ସଂଯୋଗ ବଶତଃ ନବରଂଗପୁରରେ ଚାକିରି କରିବାର ଅବକାଶ ତା' ପାଇଁ ଆଉ ଆସିଲାନି । ପ୍ରାୟ ସପ୍ତାହକ ଭିତରେ ଡିଭିଜନ୍ ଅଫିସର୍ ଆକାଉଣ୍ଟାଣ୍ଟ ରାଓବାବୁ ଭଉଣୀ ପାଇଁ ବିବାହ ପ୍ରସ୍ତାବଟିଏ ଆଣିଲେ । ପୁଅଟି ଡାକ୍ତର । ବ୍ରହ୍ମପୁର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡ଼ିକାଲ କଲେଜରୁ ଛଅ, ସାତ ବର୍ଷ ହେଲା ପାସ୍ କରି କିଛିଦିନ କୋଟପାଡ଼ ବ୍ଲକ୍ ମହକୁମାରେ ପ୍ରାଇମେରୀ ହେଲଥ୍ ସେଣ୍ଟରରେ ଚାକିରି କରିଥିଲା । ଏବେ ବ୍ରହ୍ମପୁର ସବ୍‌ଡିଭିଜନ୍ ହସ୍‌ପିଟାଲକୁ ବଦଳି ହୋଇଛି । ପୈତୃକ ଘର ତାଙ୍କର ନବରଂଗପୁର ।

ଏକେ ତ ଡାକ୍ତର ଚାକିରି । ତା' ପରେ କୋରାପୁଟିଆ ଲୋକ । ହୁଏତ ବେଶୀ ଯାନି ଯଉତୁକ ଦାବି କରିପାରନ୍ତି । ଏହି ଭାବନାରେ ଦୋ ଦୋ ପାଞ୍ଚ ହୋଇ ମୁଁ, ମୋ ସ୍ତ୍ରୀ ଏବଂ ରାଓବାବୁ ବିବାହ ପ୍ରସ୍ତାବ ନେଇ ତାଙ୍କ ଜୟପୁର କ୍ୱାଟର୍ସକୁ ଗଲୁ ।

ବରପାତ୍ରଙ୍କର ପିତା ଶ୍ରୀ ମଧୁସୂଦନ ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀ ଘରେ ଥିଲେ । ଆମ ଯିବା ଖବର ଅବଶ୍ୟ ଆଗରୁ ତାଙ୍କୁ ଦିଆଯାଇଥିଲା । ନିହାତି ସାଦାସିଧା, ଅମାୟିକ, ମିଷ୍ଟଭାଷୀ ଭଦ୍ରବ୍ୟକ୍ତି । ଶିକ୍ଷକ ଚାକିରିରୁ ଅବସର ଗ୍ରହଣ କରିଛନ୍ତି । କଥାବାର୍ତ୍ତା ବେଶ୍ ମାପଚୁପ ଏବଂ ମାର୍ଜିତ । ରୋକ୍‌ଠୋକ୍ ମଧ୍ୟ । ପ୍ରସ୍ତାବ ଉତ୍‌ଥାପନ ଉପରାନ୍ତେ ଆମଠୁ ଝିଅର ଜାତକ ଏବଂ ଫଟୋ ଖଣ୍ଡେ ନେଲେ । ପ୍ରତିଶ୍ରୁତି ଦେଲେ, ଜାତକ ଶୁଝିଲା କି ନାହିଁ ଆସନ୍ତା ସପ୍ତାହରେ ନିଶ୍ଚେ ଜଣାଇବେ ।

ସାତ, ଆଠ ଦିନ ଭିତରେ ଖବର ମିଳିଗଲା, ଜାତକ ଭଲ ଶୁଝିଛି । ବରପିତା ନିଜେ ଫୋନ୍ କରିଥିଲେ । ମୁଁ ଟୁର୍‌ରେ ବାହାରକୁ ଚାଲି ଯାଇଥିବାରୁ ସ୍ତ୍ରୀ ଫୋନ୍ ଧରିଲେ । ଝିଅ ଦେଖିବା ପାଇଁ ଗୋଟିଏ ଶୁଭଦିନ ସେ ନିଜେ ପାଞ୍ଜି ଦେଖି ସ୍ଥିର କରିସାରିଥିଲେ । ଏଥିରେ ଆମର କ'ଣ ଆପତ୍ତି ଅଛି କି ନାହିଁ ପଚାରିଲେ । ଆମେ ତ ଝିଅପଟ ଲୋକ । ଆମର କ'ଣ ଆପତ୍ତି ଥାଇପାରେ ବୋଲି ସ୍ତ୍ରୀ ଉତ୍ତର ଦେଲେ ।

କୌଣସି ବାଗାଡ଼ମ୍ବର ନକରି ମଧୁସୂଦନ ବାବୁ କହିଲେ, 'ମୋର ଆଠପୁଅ, ଚାରିଝିଅ । ସମସ୍ତଙ୍କ ପାଖକୁ ଚିଠି ଦେଇ ଜଣେଇ ଦେଇଛି । ଯୋଉଠିକି ସମ୍ଭବ ଫୋନ୍ ମଧ୍ୟ କରି ଦେଇଛି । 'ଉମେଶ' ପାଇଁ କନ୍ୟା ଦେଖିବାକୁ ଆମେ ଅମୁକ ତାରିଖ ସ୍ଥିର

କରିଛୁ । (କହିବା ବାହୁଲ୍ୟ ବରପାତ୍ରଟିର ନାଁ ଥିଲା ଡ. ଉମେଶ ଚନ୍ଦ୍ର ପଟ୍ଟନାୟକ) ଯାହାର କନ୍ୟା ଦେଖିବାର ଅଛି, ସେଦିନ ଆସି ତିନିଟା ବେଳେ ପହଞ୍ଚ । ଥରକରେ ସମସ୍ତେ ଝିଅ ଦେଖିବେ ଏବଂ ଯାହାର କିଛି କହିବାର ଥାଏ ଜଣାଇବେ । ହେଡମାଷ୍ଟର ହୁକୁମ୍ ଦେଲାଭଳି ପିଲାମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ-ଥର ଥର କରି ଝିଅ ଦେଖିବାକୁ କିଏ ଚାହିଁଲେ ମୁଁ ସମ୍ମତ ନୁହେଁ ।

ସ୍ତ୍ରୀଙ୍କୁ ଅନୁରୋଧ କଲେ, ଆମ ପାଇଁ ସେଦିନ ଯାହା କିଛି ବନ୍ଦୋବସ୍ତ କରିବେ । ମୋ ସ୍ତ୍ରୀ ମଧ୍ୟ ସ୍ପଷ୍ଟବାଦିନୀ । ବରପିତାଙ୍କର ଏପରି ଖୋଲାଖୋଲି କଥା ତାଙ୍କୁ ବେଶ୍ ଭଲ ଲାଗିଥିଲା ।

ସୁଯୋଗ ପଛେ ପଛେ ଦୁର୍ଯୋଗ ଓର ଉଣ୍ଡି ପହଞ୍ଚିଗଲା ପରି, ଆମର ସବୁ ଆୟୋଜନ ଠିକ୍‌ଠାକ୍ ଚାଲିଥିଲା ବେଳକୁ ଅଚାନକ ଅସୁବିଧା ହାବୁଡ଼ିଗଲା । ବରପକ୍ଷ ଜ୍ଞାତି, କୁଟୁମ୍ବ ସହ ଝିଅ ଦେଖିବା ପାଇଁ ଯେଉଁ ଦିନ ଧାର୍ଯ୍ୟ କରିଥିଲେ, ସେହିଦିନ ଗୋଟିଏ ଜରୁରୀ ମିଟିଙ୍ଗ୍ ପାଇଁ ଡକରା ପଡ଼ିଲା କୋରାପୁଟ । ଜନୈକ କେନ୍ଦ୍ରମନ୍ତ୍ରୀ କୋରାପୁଟ ଜିଲ୍ଲାର କାର୍ଯ୍ୟକ୍ରମ ରିଭ୍ୟୁ କରିବାକୁ ଆସିଥାନ୍ତି । ମୁଁ ଏବଂ ଏସ.ଡି.ଓ. ମହାପ୍ରଶସ୍ତ ବାବୁ ସେହି ମିଟିଙ୍ଗ୍‌କୁ ଯିବା ନିହାତି ଜରୁରୀ ଥିଲା । ତାରିଖ ଘୁଞ୍ଚାଇବା ପାଇଁ କହିଲେ, ମଧୁସୂଦନ ବାବୁ ହୁଏତ ଏହାକୁ ଅନ୍ୟଥା ଭାବିପାରନ୍ତି । ତେଣୁ ଅନ୍ୟ ଜଣେ ପାରିବାରିକ ବଂଧୁ ନବରଂଗପୁର ସବ୍‌ଡିଭିଜନାଲ୍ ହସ୍‌ପିଟାଲର ଡାକ୍ତର କ୍ଷେତ୍ରମୋହନ ସ୍ୱାଇଁଙ୍କୁ କାମ ଚଳେଇ ନେବା ପାଇଁ ଦାୟିତ୍ୱ ଦିଆଗଲା । ହଠାତ୍ ଜରୁରୀ ମିଟିଙ୍ଗ୍ ପଡୁଥିବାରୁ ମୁଁ ରହିପାରିବିନି ବୋଲି ମଧୁସୂଦନ ବାବୁଙ୍କୁ ଜଣେଇ ଦେଇ କ୍ଷମା ମାଗିନେଲି ।

ଡାକ୍ତର ସ୍ୱାଇଁ ନିଜ ଲୋକ ଭଳି କାମ ସୁରୁଖୁରୁରେ ଚଳେଇ ନେଲେ । ମୋ ସ୍ତ୍ରୀ, ମହାପ୍ରଶସ୍ତ ଏବଂ ଡାକ୍ତର ସ୍ୱାଇଁଙ୍କ ସ୍ତ୍ରୀ ମିଳିମିଶି ଅତିଥିମାନଙ୍କ ଚର୍ଚ୍ଚାରେ ଲାଗି ପଡ଼ିଲେ । ସାହି, ପଡ଼ିଶାରେ କୁଟୁମ୍ବମାନଙ୍କଠାରୁ ଯେତେଟା ସହଯୋଗ ଆମେ ପାଇ ନଥାନ୍ତୁ, ତାଠାରୁ ଅଧିକ ସହଯୋଗ ଆମକୁ ଏଠି ମିଳିଥିଲା । ବରପିତା ମଧୁସୂଦନ ବାବୁ, ତାଙ୍କ ପତ୍ନୀ, ଅଧିକାଂଶ ପୁଅ, ବୋହୂ ଓ ଝିଅ ଜ୍ୱାଇଁ ଆସି ଆମ ଘରେ ଝିଅ ଦେଖିଲେ ଏବଂ ଅତିଥି ସତ୍କାରରେ ଆପ୍ୟାୟିତ ହୋଇ ଫେରିଲେ । ସେହିଦିନ ସଂଧ୍ୟାବେଳେ କୋରାପୁଟରୁ ଫେରିଆସି ମୁଁ କିପରି କ'ଣ ସବୁ ଘଟିଲା ସ୍ତ୍ରୀଙ୍କ ସହ ଆଲୋଚନା କରୁଛି, ହଠାତ୍ ଜୟପୁରରୁ ମଧୁସୂଦନବାବୁଙ୍କର ଫୋନ୍ ଆସିଲା । ସେ ଫୋନ୍ କରିଥିଲେ, ଝିଅ

ସେମାନଙ୍କ ପସନ୍ଦ ହୋଇଛି ଏବଂ ଆସନ୍ତା ସପ୍ତାହରେ ଗୋଟିଏ ଭଲ ଦିନ ଦେଖି ସେମାନେ ଝିଅକୁ ଶାଢ଼ି ପିନ୍ଧାଇବାକୁ ଯିବେ ।

ନିଜ କାନକୁ ମୁଁ ବିଶ୍ୱାସ କରି ପାରୁନଥିଲି । ଅମୃତ ସଦୃଶ ଲାଗୁଥିଲା କଥାପଦକ । ଯାହା ଶୁଣିବା ପାଇଁ କାନ ମୋର ତରସି ଯାଇଥିଲା ଗତ ଦୁଇବର୍ଷ କାଳ । ଭଉଣୀର ବାହାଘର କରି ପାରୁନଥିବା ଅପଦାର୍ଥ ଭାଇର ମୁଣ୍ଡରୁ ଗ୍ଲାନିର ବୋଝ ଅଧାଅଧି ଉତାରି ଦେଇ ଥିଲା ଯେଉଁ କଥା ପଦକ । ସମୟ ସ୍ରୋତରେ ଫିକା ପଡ଼ି ଆସୁଥିବା କାନ୍‌ଭାସ୍‌ରେ କିଏ ଯେପରି ନୂଆ ରଂଗ ଭରି ଦେବାକୁ ଲାଗିଲା ।

ସତରେ ଯେଉଁ ଭଉଣୀର ବିଭାଘର ପାଇଁ ମୁଁ ଓ ମୋ ପରିବାର ମୋ' ବିବାହ ପୂର୍ବରୁ ମଧ୍ୟ ଅତ୍ୟନ୍ତ ବ୍ୟସ୍ତତା ଓ ବ୍ୟଗ୍ରତାର ସହିତ ପ୍ରସ୍ତାବ ସନ୍ଧାନରେ ଲାଗି ପଡ଼ିଥିଲୁ, ତାହାର ସଂଧାନ ଯେ ଏପରି ଅପ୍ରତ୍ୟାଶିତ ଭାବେ, ଗାଁଠୁ ପାଞ୍ଚଶ କିଲୋମିଟର ଦୂରରେ ଆମକୁ ପ୍ରାପ୍ୟ ହେବ, ଏକଥା କିଏ କ'ଣ କେବେ ଭାବିଥିଲେ । କୁହାଯାଏ ବିବାହ ବନ୍ଧନ ବିଧି ନିର୍ଦ୍ଧାରିତ । ମନୁଷ୍ୟ ନିମିତ୍ତ ମାତ୍ର । ସେ ଚେଷ୍ଟା କରି ଚାଲିଥିବ । କିନ୍ତୁ ଥରେ ବାହାପାଞ୍ଜି ଖୋଲିଗଲେ  କେହି ତାକୁ ଅଟକେଇ ପାରିବେନି । ବାହାଘର ଏକ ଦୈବୀ ସଂଯୋଗ ନୁହେଁ ତ ଆଉ କ'ଣ ? ମୋର ଏ ଉପାନ୍ତ ଅଞ୍ଚଳ ନବରଂପୁରରେ ପୋଷ୍ଟିଂ ନ ହୋଇଥିଲେ, ଏଠି ଭଉଣୀର ବିବାହ ପ୍ରସ୍ତାବ କେମିତି ଜୁଟିଥାନ୍ତା ।

ପିଲାବେଳର କଥାଟିଏ ମନେ ପଡ଼ିଗଲା । ସେତେବେଳେ ବୋଧହୁଏ ଖୋର୍ଦ୍ଧା ବକ୍ସି ଜଗବନ୍ଧୁ ବିଦ୍ୟାଧର ହା.ଇ.ସ୍କୁଲରେ ସପ୍ତମ ବା ଅଷ୍ଟମ ଶ୍ରେଣୀରେ ପଢୁଥାଏ । କୁଟୁମ୍ବର ଜଣେ ଭାଇଙ୍କର ବ୍ରହ୍ମପୁର ସହରରେ ବାହାଘର ପ୍ରସ୍ତାବ ଠିକ୍ ହେଲା । ଏହି ଅବସରରେ ମୁଁ ଯେଉଁ ବାହାଘର ଗୀତିକାଟି ଲେଖିଥିଲି, ତାର ପ୍ରଥମ ପଦଟି ଏହିପରି ଥିଲା:

'ତୁମେ ଅଛ ତେଣେ ଦକ୍ଷିଣ ମୁଲକେ<br>
ଆମେ ଖୋଜୁଅଛୁ ଏଣେ ରହି<br>
ଏମିତିକା ଲୋକ 'ନୂଆବୋଉ' ତୁମେ<br>
ଚିଠି ଖଣ୍ଡେ ଲେଖି ଦେଲ ନାହିଁ ।'

ସେତେବେଳେ ଖୋର୍ଦ୍ଧା ବା ଆମ ଗାଁ ମୁକୁନ୍ଦପ୍ରସାଦଠାରୁ ବ୍ରହ୍ମପୁର ସହର ମଧ୍ୟ ଦକ୍ଷିଣ ମୁଲକ ବୋଲି ଧରାଯାଉଥିଲା । ତା' ତୁଳନାରେ କାହିଁ କେତେଦୂର ନବରଂଗପୁର-ବିଲକୁଲ୍ ଉପାନ୍ତ ଦକ୍ଷିଣ ରାଇଜ । ସେତେବେଳେ ବୋହୂ ଖୋଜୁଥିଲୁ; ଏବେ ବର ଖୋଜି ପାଇଛୁ ।

ଖୁସି ଓ ସଂପ୍ରୀତିର ଏହି ସଂବାଦଟିକୁ ଗୌରଭାଇ, ଅପା, ଡାକ୍ତର ସ୍ୱାଇଁ ଏବଂ ନବରଂଗପୁରରେ ଥିବା ଆମର ଅନ୍ୟାନ୍ୟ ଶୁଭେଚ୍ଛୁମାନଙ୍କୁ ଜଣେଇ ଦେଲୁ । ଅଫିସ୍‌ର ଜଣେ କର୍ମଚାରୀଙ୍କୁ ସମସ୍ତ ବିଷୟ ଲେଖି, ପତ୍ରଟିଏ ଦେଇ ଗାଁକୁ ପଠେଇଲି ବୋଉକୁ ଏ ଶୁଭ ଖବରଟା ଜଣେଇବା ପାଇଁ । ବୋଉକୁ ମଧ୍ୟ ସାଙ୍ଗରେ ନବରଂଗପୁର ନେଇ ଆସିବାକୁ ପରାମର୍ଶ ଦେଲି ।

ବରପିତା ମଧୁସୂଦନ ବାବୁ ଆନୁଷ୍ଠାନିକ ଭାବେ ନିର୍ବନ୍ଧ କରିବା ସପକ୍ଷରେ ନଥିଲେ । ସେ ସ୍ପଷ୍ଟ ଭାବରେ କହିଲେ, ପୁରୀ, କଟକ ଆଡ଼େ ଏ ନିର୍ବନ୍ଧ ପ୍ରଥା ବେଶୀ ଚଳେ । କାରଣ ସେଠି ଅନେକ ସମୟରେ ବରପକ୍ଷ ବା କନ୍ୟାପକ୍ଷ କଥାଦେଇ କଥା ରଖନ୍ତି ନାହିଁ । ଆମେ କୋରାପୁଟିଆ; ଥରେ କଥା ଦେଇଦେଲେ ସେଥିରୁ କସ୍ମିନ୍ କାଳେ ଓହରିବାର ନାହିଁ । କଥାରେ ତାଙ୍କର କୋରାପୁଟ ପ୍ରତି ଯେତିକି ଆସକ୍ତି ପ୍ରକାଶ ପାଇଥିଲା; ଦୃଢ଼ତା ଓ ସ୍ପଷ୍ଟବାଦିତାର ଗନ୍ଧ ମଧ୍ୟ ସେତିକି ବାରି ହୋଇପଡୁଥିଲା ।

ପାରମ୍ପରିକ ବିଧି ମୁତାବକ ନିର୍ବନ୍ଧ ହେଲାନାହିଁ ସତ; କିନ୍ତୁ ଗୋଟିଏ ଦିନ ବରପକ୍ଷର ଦଶ, ବାରଜଣ ସ୍ତ୍ରୀ ଲୋକ ଢୋଲ, ମହୁରୀ, ଚାଙ୍ଗୁବାଦ୍ୟ ତଥା ଆନୁଷଙ୍ଗିକ କର୍ମାନୁଷ୍ଠାନ ପରେ ଝିଅକୁ ହଳଦୀ, ଚନ୍ଦନ, ସିନ୍ଦୂର ପିନ୍ଧାଇବା ସହ ସାଙ୍ଗରେ ଆଣିଥିବା ଶାଢ଼ି ଓ ଗହଣା ମଧ୍ୟ ପିନ୍ଧାଇଲେ ।

ଶୁଭସ୍ୟ ଶୀଘ୍ରଂ । ଅଳ୍ପଦିନର ବ୍ୟବଧାନ ପରେ ୧୯୮୧ ମସିହା ବୈଶାଖ ମାସରେ, ମୋର ଭଉଣୀ ଉଷାକିରଣ (ବିବି) ସହିତ ଡାକ୍ତର ଉମେଶଙ୍କର ଶୁଭପରିଣୟ ଅନୁଷ୍ଠିତ ହେଲା । ଗାଁରୁ କୁଟୁମ୍ବ ତଥା ସାହି ପଡ଼ିଶା, ଅନେକ ବଂଧୁ ବାନ୍ଧବ ଆସିଥିଲେ । ସେମାନଙ୍କୁ ଆଣିବା ପାଇଁ ଗାଡ଼ିର ବନ୍ଦୋବସ୍ତ ମୁଁ କରିଥିଲି । ସେମାନେ ଆସନ୍ତୁ ଦେଖନ୍ତୁ । ଅପାରଗ ବା ନିପାରିଲା ପଣିଆର ଯେଉଁ ଅପବାଦର ବୋଝ ମୋ ଉପରେ ସେମାନଙ୍କ କର୍ତ୍ତୃକ ଲଦି ଦିଆ ହୋଇଥିଲା, ମୁଁ ଏକ ସମର୍ଥ ପୁରୁଷ ଭାବେ କିପରି ତାହାକୁ ମୁଣ୍ଡ ଉପରୁ ଓହ୍ଲାଇ ଦେବାକୁ ସମର୍ଥ ହୋଇଛି ।

ଖୋର୍ଦ୍ଧାରୁ ମୋର ସ୍କୁଲବେଳର ଦୁଇ ଅନ୍ତରଂଗ ବଂଧୁ ବୁଦ୍ଧ ଦେବ ଓ ଦୁଃଶାସନ ଆସିଥିଲେ । ବରଯାତ୍ରୀମାନଙ୍କର ଦେଖାଶୁଣା ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ କରିଦେଇ ମୁଁ ନିଶ୍ଚିନ୍ତ ହୋଇଗଲି । ଡି.ଏଫ୍.ଓ.ଙ୍କ ହତାଟି ଅପେକ୍ଷାକୃତ ଛୋଟ ହୋଇଥିବାରୁ ସେଠି କେବଳ ବରଯାତ୍ରୀମାନଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କରାଯାଇଥାଏ । ଅନ୍ୟ ଅତିଥି

ତଥା ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ପାଇଁ ଏସ୍.ଡି.ଓ.ଙ୍କ ବିରାଟ କମ୍ପାଉଣ୍ଡ ହତାରେ ପ୍ରୀତିଭୋଜନ ଆୟୋଜିତ ହୋଇଥିଲା ।

ବରଯାତ୍ରୀ ଆସିଥିଲେ ପାଖାପାଖି ଦୁଇଶହ । ବ୍ୟାଣ୍ଡ ପାର୍ଟି, ଚାଙ୍ଗୁ ବାଦ୍ୟ, ବାଣ, ରୋଶଣିର ପଟୁଆର ଭିତରେ ବାହାଘର ପ୍ରସେସନ ବେଶ୍ ଜମି ଯାଇଥିଲା । ତହିଁ ପରଦିନ ଜୟପୁରରୁ ବାହାରୁଥିବା ଗୋଟିଏ ସାପ୍ତାହିକ ପତ୍ରିକାରେ ପ୍ରକାଶ ପାଇଥିବା ରୋଚକ ସମ୍ବାଦଟିଏ ଏହିପରି ଥିଲା । 'ଜୟପୁର ମହାରାଜାଙ୍କ ଝିଅ ବାହାଘର ପରଠାରୁ, ବିଗତ ପନ୍ଦର ବର୍ଷ ଭିତରେ ଏମିତି ବାଜା, ରୋଶଣି ଓ ପ୍ରସେସନ ଆମେ ଦେଖି ନଥିଲୁ । ଏହା କମ୍ପ୍ଲିମେଣ୍ଟ ଥିଲା ନା ଆକ୍ଷେପୋକ୍ତି, ତାହା ପାଠକେ ବିଚାର କରିବେ ।

ପରଦିନ ଅପରାହ୍ଣରେ ଝିଅ ବିଦାହେବାର ବେଳ ଆସିଗଲା । ବାହାଘର ଜୁଟୁନି ବୋଲି ଗତ ଦୁଇବର୍ଷରୁ ଅଧିକ କାଳ ଯେଉଁ ଯନ୍ତ୍ରଣାରେ ମୁଁ ଛଟପଟ ହେଉଥିଲି, ପ୍ରତୀକ୍ଷିତ ବିଦାୟ ମୁହୂର୍ତ୍ତର ଯନ୍ତ୍ରଣା ତାଠୁ ଅନେକ ଅଧିକ ଥିଲା । ମୁଁ ଭାଙ୍ଗି ପଡୁଥିଲି । ସ୍ତ୍ରୀ କିନ୍ତୁ ସାନ୍ତ୍ୱନା ଦେଉଥିଲେ । ଏଇଠି ତ ପାଖରେ ରହିବେ । ଜୟପୁର ଅବା କେତେ ବାଟ । ଆମେ ଯେତେବେଳେ ଚାହିଁବା ମଝିରେ ମଝିରେ ଯାଇ ତାଙ୍କ ଆଡୁ ବୁଲି ଆସିବା ।

ଏ ବାହାଘର ପରେ ପରେ ସାନ ଭଉଣୀ ଛବି ପାଇଁ ମଧ୍ୟ ଜୟପୁରରୁ ଗୋଟିଏ ଦୁଇଟା ପ୍ରସ୍ତାବ ଆସିଲା । ମନେ ହେଉଥିଲା, ଥରେ କେଉଁଠି ବନ୍ଧ ଭାଙ୍ଗି ବାଟ ଫିଟିଗଲେ, ସବୁ ପାଣି ବୋହି ନଗଲା ପର୍ଯ୍ୟନ୍ତ ନିସ୍ତାର ନାହିଁ । ଆମେ ପ୍ରସ୍ତାବରେ ଆଗେଇବା ପୂର୍ବରୁ ବୋଉ ଚେତେଇ ଦେଲା, ବାପା ବଞ୍ଚି ଥାଉ ଥାଉ ଛବିର (ମୋ ସାନ ଭଉଣୀ) ବାହାଘର ୰ ନିତ୍ୟାନନ୍ଦ ମହାନ୍ତିଙ୍କ ସାନପୁଅ ସହିତ ସ୍ଥିର କରି ସାରିଛନ୍ତି । ନିତ୍ୟାନନ୍ଦ ମଉସା ଅନେକ ଦିନ ପୂର୍ବରୁ ମୁକୁନ୍ଦପ୍ରସାଦ ସେଲସ୍ ଟ୍ୟାକ୍ସ ଚେକଗେଟ୍‌ରେ ଇନସ୍‌ପେକ୍‌ଟର ଭାବରେ ଅବସ୍ଥାପିତ ହୋଇଥିଲେ ଏବଂ ଆମ ଗାଁ'ରେ ଭଡ଼ାରେ ରହୁଥିଲେ । ସେତିକିବେଳେ ତାଙ୍କର ସାନ ପୁଅ ସୁନୁ (ଅଶୋକ କୁମାର) ସହିତ ତ ଭବିଷ୍ୟତରେ ଝିଅ ଛବିକୁ ବିବାହ ଦେବାପାଇଁ ଦୁଇବଂଧୁ ସମ୍ଭବତଃ ପରସ୍ପରକୁ ବଚନ ଦେଇ ସାରିଥିଲେ । ଏକଥା ବୋଉ ଜାଣିଥିଲା । ଛବି ନିଜେ ମଧ୍ୟ ଏ ପ୍ରସ୍ତାବରେ ରାଜିଥିଲା । ତେଣୁ ଅନ୍ୟ କୌଣସି ପ୍ରସ୍ତାବରେ ନ ଆଗେଇ କଟକ ସାଆନ୍ତ ସାହିରେ ଥିବା ସେମାନଙ୍କ ଘର ସହିତ ଯୋଗସୂତ୍ର କରାଗଲା, ଦୁଇ ସ୍ୱର୍ଗବାସୀ ବଂଧୁଙ୍କର ଇଚ୍ଛାକୁ ସମ୍ମାନ ଜଣାଇ, ମାଉସୀ ଏବଂ ତାଙ୍କର ବଡ଼ ଦୁଇପୁଅଙ୍କ ସହିତ କଥାବାର୍ତ୍ତା କରି ବିବାହ ତିଥି ସ୍ଥିର କରାଗଲା ।

ଅସୁବିଧା ସୃଷ୍ଟି ହେଲା, ଯେତେବେଳେ ବରପକ୍ଷ ଏତେବାଟ ଅର୍ଥାତ୍ କଟକରୁ ନବରଂଗପୁର ଆସିବେ ନାହିଁ ବୋଲି ଜିଦ୍ ଧରି ବସିଲେ । ମୋ ପକ୍ଷରେ ମଧ୍ୟ ଏତେ ଶୀଘ୍ର ଆଉ ଥରେ ଛୁଟି ନେଇ ଗାଁକୁ ଯାଇ ସେଠି ବିବାହର ଆୟୋଜନ କରିବା ଏକରକମ ଅସଂଭବ ଥିଲା । ଏକେ ତ ଗାଁର ଶତ୍ରୁତାପୂର୍ଣ୍ଣ ପରିବେଶ । ତାଛଡ଼ା ସାହାଯ୍ୟ କରିବାକୁ ଗାଁର କେହି ସ୍ୱତଃପ୍ରବୃତ୍ତ ଆଗଭର ହୋଇ ଆସିବେ, ଏ ବିଶ୍ୱାସ ମୋର ନଥିଲା । ସହଯୋଗର ହାତ ବଢ଼ାଇଲେ, ମୋର ପିଲାଦିନର ସେହି ଘନିଷ୍ଠତମ ବନ୍ଧୁ ବୁଧନ-ବୁଦ୍ଧଦେବ ଅଗ୍ରୱାଲା । ସେ ଓ ତାଙ୍କର ବାପା କଟକ ଯାଇ ସେଠାରେ ବରପକ୍ଷକୁ ବୁଝାବୁଝି କରି, ବର ଓ ବରଯାତ୍ରୀ ଦଳ ନବରଂଗପୁର ଆସିବା ପାଇଁ ଆବଶ୍ୟକ ବନ୍ଦୋବସ୍ତ କରିଦେଲେ । ପ୍ରଥମ ବିଭାଘରର ଅଭିଜ୍ଞତା ଭିତ୍ତିରେ ଦ୍ୱିତୀୟ ବିଭାଘର ମଧ୍ୟ ସୁରୁଖୁରୁରେ ସେହି ବର୍ଷ ଜୁଲାଇ ମାସରେ ଅନୁଷ୍ଠିତ ହୋଇଗଲା ।

ଘରର ବଡ଼ପୁଅ ହିସାବରେ ପାରିବାରିକ ଦାୟିତ୍ୱ ବୋଝରୁ ମୁକୁଳିଯିବା ପରେ ବେଶ୍ ହାଲ୍‌କା ଲାଗିଲା ନିଜ ଚାରିପଟର ପରିବେଶ । ଅଣ୍ଟା ସଳଖି ବସି ପାରିଲି ଓ ନିଜ ପରିବାର ଆଡ଼କୁ ମୁହାଁଇଲି । ପୁଅକୁ ଚାହୁଁ ଚାହୁଁ ଏ ଭିତରେ ଦେଢ଼ ବର୍ଷ ପୂରି ଦୁଇବର୍ଷ ଛୁଇଁବାକୁ ବସିଲାଣି । ଗୁରୁଣ୍ଡି ଗୁରୁଣ୍ଡି ସେ ଏଘର ସେଘର ବୁଲିବା, କାନ୍ଥ ବାଡ଼କୁ ଆଶ୍ରା କରି ଛିଡ଼ା ହେବା ପର୍ଯ୍ୟନ୍ତ ଅତିକ୍ରମ କରି କେତେବେଳେ ସେ ନିଜ ଗୋଡ଼ରେ ସଳଖି ଚାଲିଗଲାଣି ଏବଂ ପକ୍ଷୀ ଶାବକ ଖଣ୍ଡି ଉଡ଼ା ଦେଲାଭଳି ମଝିରେ ମଝିରେ କୁନି କୁନି ପାଦରେ ପାହୁଲ ପକାଇ ଦୌଡ଼ିଲାଣି । ପୁଅ ଗୁରୁଣ୍ଡିବାର ଚପଳତା, ଦରୋଟି କଥା କହିବାର ମାଦକତା ଓ ତା'ର ଶୈଶବକୁ ମୁଁ ଠିକ୍ ଭାବେ ଉପଭୋଗ କରି ପାରି ନଥିଲି ।

ପୁଅକୁ ସନ୍ତର୍ପଣରେ ନିରେଖି, ନିରେଖି ଦେଖୁଥିଲି । ସମୟ କାହାକୁ ଅପେକ୍ଷା ନକରି ଆଗେଇ ଚାଲିଥିଲା । ସମତାଳରେ ପ୍ରିମାଚ୍ୟୁର ଚାଇଲଡ୍‌ଟି ମଧ୍ୟ ବଡ଼ ହେବାରେ ଲାଗିଛି । ଏବେ ଗେହ୍ଲେଇ ହୋଇ ସ୍ପଷ୍ଟ କଥା କହୁଛି । ପୂରା ବାକ୍ୟ ବେଳେବେଳେ କହୁଛି । 'ଝିଟିପିଟି କାନ୍ଥରେ ଚାଲୁଛି ।' 'ବାଘ ଛୁଆ ଖେଳୁଛି' । କାମବାଲୀ 'ମୁକ୍ତା' ପାଖରେ ବେଶୀ ସମୟ ରହୁଥିବାରୁ ଆମକୁ ଦୁର୍ବୋଧ୍ୟ ମନେ ହେଉଥିବା ଖଣ୍ଡି ଖଣ୍ଡି ତେଲୁଗୁ ମଧ୍ୟ କହିବା ଆରମ୍ଭ କରିଛି ।

କିଛିଦିନ ପୂର୍ବରୁ ନବରଂଗପୁର ଉପକଣ୍ଠରେ ଥିବା 'ତାରାଗାଁ ଜଙ୍ଗଲରୁ ଗାଈଆଳ ପିଲା ବାଘଛୁଆଟିଏ ପାଇଥିଲା । ଖବର ପାଇ ବନ ବିଭାଗର କର୍ମଚାରୀମାନେ ଜବତ

କରି ଆଣି ବାଘ ଛୁଆଟିକୁ ଡି.ଏଫ୍. ଓ. ଙ୍କ ଘରେ ରଖିଥିଲେ । ପ୍ରାଣୀ ଉଦ୍ୟାନ 'ନନ୍ଦନକାନନ' କୁ ପଠାଇବା ପାଇଁ ଆନୁଷଙ୍ଗିକ ବନ୍ଦୋବସ୍ତ କରିବା ପୂର୍ବରୁ ବାଘ ଛୁଆଟି କିଛିଦିନ ପାଇଁ ଆମ ଘରେ ରହିଥିଲା । ସାତ ଆଠ ଦିନ ବା ଅତି ବେଶି ହେଲେ ଦଶଦିନର ଛୁଆ ହେବ ବୋଧହୁଏ । ଗୁଲୁଗୁଲିଆ, କଉତୁକିଆ ବିଲେଟିଏ ପରି ଦେଖାଯାଉଥିଲା । କିନ୍ତୁ କୌଣସି କାରଣ ବଶତଃ ରାଗିଗଲେ, ମୁହଁରେ ତାର କ୍ରୂରତାର ଛାପ ସ୍ପଷ୍ଟ ବାରି ହୋଇ ପଡୁଥିଲା ।

ବାସଗୃହ ଓ ଅଫିସ୍ ବିଲକୁଲ୍ ପାଖାପାଖି ହୋଇଥିବାରୁ ଏବଂ କମ୍ପାଉଣ୍ଡ ଭିତରେ ଥିବାରୁ, ମୋ ପଛେ ପଛେ ସବୁବେଳେ ଖୋଲାରେ ବୁଲୁଥିବା ବାଘ ଛୁଆଟି ଯାଇ ଅଫିସ୍ ରୁମ୍‌ରେ ହାଜର ହୋଇଯାଏ, ତା ପଛେ ପଛେ ଦୋହଲି ଦୋହଲି କୁନିପୁଅ 'ଟିକନ' ମଧ୍ୟ ହାଜର । ସେହି ଅଳ୍ପ କିଛି ଦିନ ପାଇଁ ବାଘ ଛୁଆଟି ପୁଅର ଖେଳସାଥୀ ପାଲଟି ଯାଇଥିଲା । ବାଘ ଛୁଆକୁ ଫିଡିଙ୍ଗ୍ ବଟଲ୍‌ରେ ପୂରାଇ ଦୁଧ ପିଇବାକୁ ଦେଲେ ଯାଇ ଟିକନ ଖାଦ୍ୟ ଖାଉଥିଲା । ଅନ୍ୟଥା ଖାଇବାକୁ ସମସ୍ତଙ୍କୁ ନାକେଦମ୍ କରେ । ଆଠ, ଦଶ ଦିନ ପରେ ବାଘ ଛୁଆଟିକୁ ନନ୍ଦନକାନନ ପଠାଇ ଦିଆଗଲା । ଏହାପରେ ବେଶ୍ କିଛିଦିନ ବିମର୍ଷ ଟିକନ । ଖେଳନା କଣ୍ଢେଇ, ଟୟ ଟ୍ରେନ୍ କୋଉଥିରେ ସେ ସନ୍ତୁଷ୍ଟ ନଥିଲା । ଜୀବନ୍ତ ଖେଳନାରେ ସ୍ୱାଦ ଯେ ଅନୁଭବ କରିଛି, ତାକୁ ଏସବୁ ଭଲ ଲାଗିବ କେମିତି ?

ଏ ଭିତରେ ଶୀତ ଅପସରି ଯାଇ ବସନ୍ତ ଆଗମନର ପ୍ରାକ୍ ସୂଚନା ମିଳି ସାରିଥିଲା । ଦାଣ୍ଡପଟ ପାଚେରିକଡ଼ ଆମ୍ବଗଛରେ ପେନ୍ଥାପେନ୍ଥା ବଉଳ ଭରିଯାଇଥିଲା । ମଳୟ ପବନରେ କଷି ଆମ୍ବ ପେନ୍ଥା ଗୁଡିକ ଦୋଳି ଖେଳୁଥିଲେ । ଆଗକୁ ଥିଲା ରଂଗର ପର୍ବ 'ହୋଲି' । ଏଥର ହୋଲିରେ ଆମେ କଟକ କିମ୍ବା ଖୋର୍ଦ୍ଧା ନଯାଇ ନବରଂଗପୁରରେ ରହିବାକୁ ମନସ୍ଥ କରିଥିଲୁ । ଏ ସ୍ଥାନରେ ଏହା ହେବ ଆମର ପ୍ରଥମ ହୋଲି । ସବ୍‌ଡିଭିଜନ୍‌ରେ ଡି.ଏଫ୍.ଓ. ଏକମାତ୍ର ସର୍ବଭାରତୀୟ ସ୍ତରର ଅଫିସର୍ ହୋଇ ଥିବାରୁ, ହୋଲି ଖେଳିବାକୁ ଏଠିକାର ସମସ୍ତ ଅଫିସର୍ ଆସିବେ । ଅଫିସ୍ ଷ୍ଟାଫ୍ ତ ନିଶ୍ଚୟ ଆସିବେ । ହୋଲି ଅବସରରେ ସମସ୍ତଙ୍କୁ ଆପ୍ୟାୟିତ କରିବା ପାଇଁ ଦହିବରା, କାକରାପିଠା, ଲଡୁ, ରସଗୋଲା ଓ ଲୁଣିଗଜା ଆଦି ଯଥେଷ୍ଟ ପରିମାଣରେ ପୂର୍ବଦିନଠାରୁ ପ୍ରସ୍ତୁତ କରି ସ୍ତ୍ରୀ ରଖିଥାନ୍ତି ।

ହୋଲି ଦିନ ନାଲି, ନେଳି, ହଳଦିଆ ରଂଗର ଅବିର ଓ ବିଭିନ୍ନ ପାଣି ରଂଗରେ ରଂଗିନ୍ ହୋଇଗଲା ଆମ ଦାଣ୍ଡ ବାରଣ୍ଡା ଓ ବାରଣ୍ଡା ତଳର ଅପ୍ରଶସ୍ତ ଖୋଲା ଜାଗା । ମୁଁ ଓ

ମୋ ସ୍ତ୍ରୀ ରଂଗରେ ବୁଡି ଯାଇଥାଉ । ମୁହଁରେ ହରରଂଗୀ ଅବିରର ଛାପ । ଦାଣ୍ଡ ଦୁଆର କବାଟ ପାଖରେ ଚୁପ୍‌ଚାପ୍ ଛିଡା ହୋଇ ଆନନ୍ଦ ଉଲ୍ଲାସର ରଂଗ ଖେଳକୁ ମିଟିମିଟି ହୋଇ ଲକ୍ଷ୍ୟ କରୁଥିଲା ପୁଅ ଟିକନ । ଦୁର୍ବଳିଆ ଚେହେରାର ଛୋଟ ପିଲାଟିଏ ହୋଇଥିବାରୁ କେହି ତାକୁ ରଂଗ ପକଉ ନଥାନ୍ତି । ଟିକେ ତା' ଆଡ଼କୁ ଅନେଇ ହସି ଦିଅନ୍ତି କେବଳ । ବାହାର ଲୋକମାନେ ଚାଲିଗଲା ପରେ ପୁଅ ଆସି ମୋ ପାଖରେ ଛିଡ଼ା ହେଲା । ହଠାତ୍ କ'ଣ ଭାବିଲା କେଜାଣି, ବାରଣ୍ଡାରେ ବିଞ୍ଚି ହୋଇ ପଡ଼ିଥିବା ମୁଠା ମୁଠା ଅବିରକୁ ତା'ର କୁନି କୁନି ହାତ ପାପୁଲିରେ ସାଉଁଟି ଆଣି ନିଜ ମୁହଁ ସାରା ବୋଳି ପକାଇଲା ଓ ପରେ ପରେ ଅବିର ବିଞ୍ଚା ପିଣ୍ଡା ଉପରେ ଗଡ଼ିବାକୁ ଲାଗିଲା । ପୁଅର ଭାବଭଂଗୀ ଦେଖି ମୁଁ ହୋ, ହୋ, ହୋଇ ହସୁଥିଲି ଏବଂ ସ୍ତ୍ରୀଙ୍କୁ ବଡ଼ ପାଟିରେ 'ଦେଖିବ ଆସ' ବୋଲି ଡାକ ପକେଇଲି ।

ସ୍ତ୍ରୀ କିଛି ସମୟ ପୁଅର କାର୍ଯ୍ୟକଳାପକୁ ମୁଗ୍ଧ ଭାବେ ଲକ୍ଷ୍ୟ କଲେ ଏବଂ ମୋ ମୁହଁରୁ ଛିଟ୍‌କି ପଡୁଥିବା ଖୋଲା ହସ ଉପରେ ତୀର୍ଯ୍ୟକ୍ ମନ୍ତବ୍ୟଟି ରଖିଲେ-ଯାହା ହେଉ, ବାହାଘରର ତିନିବର୍ଷ ପରେ ତୁମେ ଏମିତି ମନଖୋଲା, ହୃଦୟ ଖୋଲା ହସ ହସିବାର ମୁଁ ଆଜି ପ୍ରଥମ ଦେଖିଲି ।

ମୁଁ ମନେ ମନେ ଭାବୁଥିଲି, ଦାୟିତ୍ୱବୋଧ ପାହାଡ଼ ତଳେ ଯାହାର ମୁଣ୍ଡଟା ଚାପି ହୋଇ ରହିଥିଲା, ସେ ମନଖୋଲା ହସି ପାରିବ କେମିତି ? ହେଲେ ଆଜି ମୁଁ ପୂରାପୂରି ମୁକ୍ତ । ଓହ୍ଲେଇ ଯାଇଛି ଦାୟିତ୍ୱବୋଧର ଶୃଙ୍ଖଳ । ମୁଁ ଏବେ ହାଲୁକା ହୋଇ ପକ୍ଷୀପରି ନୀଳ ଆକାଶରେ ଡେଣା ମେଲି ଉଡ଼ିଯିବାକୁ ଚାହେଁ । ସାଙ୍ଗରେ ମୋର ଥିବେ ସାଥୀ ପକ୍ଷିଣୀ ଓ ନୂଆ ନୂଆ ଡେଣା ଫଡ଼ ଫଡ଼ କରି ଉଡ଼ି ଶିଖୁଥିବା ପକ୍ଷୀ ଶାବକ ।



## ନବରଂଗପୁର-
## ବିଦାୟବେଳାର ଖେଳ!



ନବରଂଗପୁର ଡିଭିଜନ୍‌ରେ ମୋର ରହଣି ଠିକ୍ ତିନି ବର୍ଷ ପାଞ୍ଚମାସ । ମୋ କାର୍ଯ୍ୟକାଳ ଭିତରେ ସେଠାରେ ଦୁଇ ଦୁଇଟା ବୃହତ୍ ଜଳବିଦ୍ୟୁତ୍ ପ୍ରକଳ୍ପ କାର୍ଯ୍ୟ ଆରମ୍ଭ ହୋଇଥିଲା । ବୃହତ୍ ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନା ଓ ଜଳବିଦ୍ୟୁତ୍ ପ୍ରକଳ୍ପ ଏବଂ ଅନ୍ୟଟି ଉପର କୋଲାବ ଜଳବିଦ୍ୟୁତ୍ ପ୍ରକଳ୍ପ । ଏହି ଧରଣର ବଡ଼ ବଡ଼ ନଦୀବନ୍ଧ ପ୍ରକଳ୍ପ କର୍ଯ୍ୟକାରୀ କରିବାକୁ ଗଲାବେଳେ ପ୍ରଥମେ ଆସେ ବିସ୍ଥାପନ ସମସ୍ୟା । ବିସ୍ଥାପିତମାନେ ବିଶେଷତଃ ଆଦିବାସୀ ସଂପ୍ରଦାୟର-କୋରାପୁଟର ଆଦିମ ଅଧିବାସୀ । କନ୍ଧ, ସଉରା ଓ ପରଜା ଜାତିର । ବିସ୍ଥାପିତମାନଙ୍କୁ ଥଇଥାନ କରିବା ପାଇଁ ସ୍ଥାନ ନିରୂପଣ କଲାବେଳେ ପ୍ରଥମ ହାଣ-କଟୁରି ଜଙ୍ଗଲ ବିଭାଗ ବେକରେ ପଡ଼େ । ଘଞ୍ଚ ଜଙ୍ଗଲକୁ କାଟି ସଫାକରି ସେଠି ରିହାବିଲିଟେସନ୍ କଲୋନୀ ଗଢ଼ାଯାଏ । ହଜାର ହଜାର ଏକର ଜଙ୍ଗଲ ଜଳଭଣ୍ଡାର ପାଣିରେ ବୁଡ଼ିଯାଏ ।

ପ୍ରଥମଥର ପାଇଁ ମୁଁ ଯେଉଁ ବିସ୍ଥାପନ ସମସ୍ୟାର ସମ୍ମୁଖୀନ ହେଲି, ତାହା ହେଉଛି ଉପର କୋଲାବ ପ୍ରକଳ୍ପ ଜନିତ ବିସ୍ଥାପନ । ଚିହ୍ନଟ କରାଯାଇଥିବା ଜଳମଗ୍ନ ଅଞ୍ଚଳରୁ

ବିକ୍ଷିପ୍ତ ଭାବରେ ଗଢ଼ିଉଠିଥିବା ଆଦିବାସୀ ବସତିଗୁଡ଼ିକୁ ଭାଙ୍ଗିଦେଇ, ସେମାନଙ୍କୁ ବୋରିଗୁମ୍ମା-କୋଟପାଡ଼ ରାସ୍ତାକଡ଼କୁ ଲାଗିଥିବା କୋଟପାଡ଼ ରିଜର୍ଭ ଜଙ୍ଗଲରେ ଥଇଥାନ କରିବାକୁ ସ୍ଥିର ହୋଇଥାଏ । ପ୍ରସ୍ତାବଟିକୁ ଯଥାଶୀଘ୍ର କାର୍ଯ୍ୟକାରୀ କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତଥାଏ । ନବରଂଗପୁର ବନନିଗମକୁ ଜଙ୍ଗଲଟି ହସ୍ତାନ୍ତର କରିଦେଲେ, ସେମାନେ ମାସକ ମଧ୍ୟରେ ଜଙ୍ଗଲ କାଟି ସଫା କରିଦେବା ପାଇଁ ପ୍ରସ୍ତୁତ ହୋଇବସିଥାନ୍ତି । ଜଙ୍ଗଲ କାଟିବାକୁ ଅନୁମତି ପାଇବା ପାଇଁ ନିଗମ ମଧ୍ୟ ବେଶ୍ ଉତ୍ସୁକତାର ସହିତ ଅପେକ୍ଷା କରିଥାଏ । କାରଣ ଜଙ୍ଗଲଟି ଥିଲା, ପେନ୍‌ସିଲ ଭଳି ସିଧା ସିଧା ଡେଙ୍ଗା ହୋଇ ବଢ଼ିଥିବା ମୂଲ୍ୟବାନ ଶାଳ ଗଛର ଜଙ୍ଗଲ । ସବୁ ଗଛର ଗୋଲେଇ ଚାରି, ପାଞ୍ଚ ଫୁଟରୁ ଅଧିକ । ମୂଲ୍ୟବାନ ଗଛଗୁଡ଼ିକ । ମାର୍କେଟରେ ମଧ୍ୟ ଏଭଳି ଗଛର ଚାହିଦା ବେଶ୍ ଅଧିକ ଥିଲା ।

ନବରଂଗପୁର ଡିଭିଜନ୍‌ର ଦାୟିତ୍ୱ ନେବାର ପ୍ରାୟ ସାତ, ଆଠ ମାସ ଭିତରେ ହିଁ ମୋତେ ଏହି ବିସ୍ଥାପନ ଓ ଥଇଥାନ ନିମନ୍ତେ ଅତି ମୂଲ୍ୟବାନ ଘଞ୍ଚ ଜଙ୍ଗଲ କାଟିବା ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଜଙ୍ଗଲ ବିଭାଗରେ ନୂଆନୂଆ ଚାକିରି କରୁଥାଏ । ଜଙ୍ଗଲ ସମ୍ପଦ ଓ ଜଙ୍ଗଲ ଅଧିବାସୀମାନଙ୍କ ପାଇଁ କେମିତି ଏକ ଅହେତୁକ ମମତାବୋଧ ମନରେ ଗଢ଼ି ଉଠୁଥାଏ । ଦିନେ ବିସ୍ଥାପିତ ହେବାକୁ ଥିବା ଓ ଛୋଟ ଛୋଟ 'ହାମ୍‌ଲେଟ୍' ରେ ରହୁଥିବା ଆଦିବାସୀମାନଙ୍କୁ ଭେଟିବାକୁ ମନସ୍ଥ କରି ସେଠାକୁ ଗଲି । କିଛି ସମୟ ସେମାନଙ୍କ ସହିତ କଥାବାର୍ତ୍ତା କରିବାରୁ ଜାଣିଲି, ସେମାନେ କେହି ଭିଟାମାଟି ଛାଡ଼ି ସମତଳ ଅଂଚଳରେ ରହିବାକୁ ଚାହାନ୍ତି ନାହିଁ । ବରଂ ସେମାନଙ୍କର ଘରଦ୍ୱାର ଜଳଭଣ୍ଡାର ପାଣିରେ ବୁଡ଼ିଗଲେ ସେମାନେ ଦୁଇପଟର ପାହାଡ଼ କାନ୍ଥିରେ ଛୋଟ ଛୋଟ କୁଡ଼ିଆ ତେରି ରହିବାକୁ ପସନ୍ଦ କରିବେ । ପାହାଡ଼ ଢାଲୁରେ ପୋଡୁଚାଷ କରିବେ । ସେଇଟା ହିଁ ସେମାନଙ୍କର ଜୀବନ-ଜୀବିକା ।

ସେମାନଙ୍କ ସହ କଥାବାର୍ତ୍ତା କରି ଫେରିବା ପରେ ମୁଁ ନିଶ୍ଚିନ୍ତ ହୋଇଯାଇଥିଲି, ବିସ୍ଥାପନ ନାଁରେ ଶହେ ଦେଢ଼ଶହ ଏକର ପରିମିତ ଶାଳ ଜଙ୍ଗଲଟିଏ କାଟି ନଷ୍ଟ କରିବା କେବଳ ସାର ହେବ । ପ୍ରକୃତ ବାସଚ୍ୟୁତ ଆଦିବାସୀମାନେ କସ୍ମିନ୍ କାଳେ ସେଠି ଆସି ଥଇଥାନ ହେବେ ନାହିଁ । ଏହାପରେ ମୁଁ ଥରେ ଦୁଇଥର କୋଟପାଡ଼ ରିଜର୍ଭ ଜଙ୍ଗଲକୁ ଆକଳନ ପାଇଁ ଯାଇଛି । ଫରେଷ୍ଟ ଅଫିସର୍ ହୋଇଥିବାରୁ କି କ'ଣ, ମୋର ଏ ନିଘଞ୍ଚ,

ଅକ୍ଷତ ଶାଳ ଜଙ୍ଗଲଟି ପ୍ରତି କେମିତି ଏକ ମାୟା ଜନ୍ମି ଯାଇଥିଲା । ହୁଏତ ଏହି କାରଣରୁ ଗଛ କାଟିବା ନିମନ୍ତେ ଜଙ୍ଗଲଟିକୁ ବନନିଗମକୁ ହସ୍ତାନ୍ତର କରିବାରେ ମୁଁ ଜାଣିଶୁଣି ବିଳମ୍ବ କରୁଥିଲି ।

ଅଚାନକ ଏମିତି ଘଟଣାଟି ଘଟିଗଲା, ଯାହାକି ମୋତେ ଆଉ କାଳକ୍ଷେପଣ ନକରି ଜଙ୍ଗଲଟିକୁ ବନନିଗମକୁ ତୁରନ୍ତ ହସ୍ତାନ୍ତର କରିବାକୁ ବାଧ୍ୟକଲା । ଉପର କୋଲାବ ପ୍ରକଳ୍ପ ନିମନ୍ତେ ଜମି ଅଧିଗ୍ରହଣ ଓ ବିସ୍ଥାପିତ ସମସ୍ୟାର ରିଭ୍ୟୁ କରିବାପାଇଁ ଦକ୍ଷିଣାଞ୍ଚଳ ଡିଭିଜନାଲ୍ କମିଶନର୍ କୋରାପୁଟ ଗସ୍ତ କରିଥିଲେ । କମିଶନର୍ ଥିଲେ ଶ୍ରୀଯୁକ୍ତ ନୃସିଂହ ଚରଣ ବେହୁରିଆ । ସେ ମହାଶୟ, ଏହା ପୂର୍ବରୁ ଜଙ୍ଗଲ ବିଭାଗର ସଚିବ ଭାବେ ମଧ୍ୟ ଅବସ୍ଥାପିତ ହୋଇଥିଲେ ।

ରିଭ୍ୟୁ ସମୟରେ ଯାହା ଆଶା କରାଯାଉଥିଲା, ତାହାହିଁ ଘଟିଲା । ବିସ୍ଥାପିତମାନଙ୍କ ଥଇଥାନ ପାଇଁ ଜଙ୍ଗଲ ନିଗମ ଡିଭିଜନାଲ ମ୍ୟାନେଜର ଫେରାଦ କଲେ, ଡି.ଏଫ୍.ଓ. ଏପର୍ଯ୍ୟନ୍ତ ସେମାନଙ୍କୁ କୋଟପାଡ ରିଜର୍ଭ ଜଙ୍ଗଲ ହସ୍ତାନ୍ତର କରିନାହାନ୍ତି । ଥରେ ଡେଲିଭରି ମିଳିଗଲେ, ନିଗମକୁ ଜଙ୍ଗଲ କାଟି ସଫା କରିବାକୁ ମାତ୍ର ଦୁଇ ତିନିମାସ ସମୟ ଲାଗିବ । ବିସ୍ଥାପିତ ଆଦିବାସୀମାନେ ଏଠାକୁ ଆସି ଥଇଥାନ ହେବାକୁ ଚାହୁଁ ନାହାନ୍ତି ବୋଲି ମୁଁ ସଫେଇ ଦେଲେ ମଧ୍ୟ, ମୋ କଥା ରହିଲା ନାହିଁ ।

କମିଶନର ମହୋଦୟ ବ୍ରହ୍ମପୁର ଫେରିଗଲା ପରେ, ତତ୍‌କାଳୀନ ବନବିଭାଗ ସେକ୍ରେଟାରୀଙ୍କୁ ଏ ବିଷୟରେ ଏକ ରିପୋର୍ଟ ପ୍ରଦାନ କଲେ । ଠିକ୍ ସପ୍ତାହକ ମଧ୍ୟରେ ସରକାରୀ ନିର୍ଦ୍ଦେଶ ଆସି ପହଞ୍ଚିଗଲା । ଯଥାଶୀଘ୍ର କୋଟପାଡ଼ ରିଜର୍ଭ ଜଙ୍ଗଲ ବନନିଗମକୁ ହସ୍ତାନ୍ତର କରି ନିର୍ଦ୍ଦେଶ ଅନୁପାଳନର ରିପୋର୍ଟ ପ୍ରଦାନ କର । ଅଗତ୍ୟା ଜୋକ ମୁହଁରେ ଲୁଣ ଦେଲାପରି ଚୁପ୍‌ଚାପ୍ ଆଦେଶ ପାଳନ କଲି ।

ଦୁଇମାସ ଭିତରେ ସୁନ୍ଦର ଶାଳ ଜଙ୍ଗଲଟି ସଂପୂର୍ଣ୍ଣ କଟିଯାଇ ପଦା ହୋଇଗଲା । ମୂଳ ମଧ୍ୟ ତାଡ଼ି ନିଆଗଲା । ପରେ ବୁଲଡୋଜର ଲଗାଇ ସଂପୂର୍ଣ୍ଣ ଜାଗାଟିକୁ ସମତଳ କରି ଦିଆଗଲା । ଯେପରି ଫୁଟବଲ୍ ପଡ଼ିଆଟିଏ । ବର୍ଷେ ନ ପୂରୁଣୁ ସେଠି ବାସଚ୍ୟୁତମାନଙ୍କ ପାଇଁ ଛୋଟଛୋଟ ବାସଗୃହ ଓ ପଡ଼ିଆ ମଝାମଝି ସ୍କୁଲ୍ ତଥା କମ୍ୟୁନିଟି ହଲ୍ ଗଢ଼ା ହୋଇଗଲା । ହେଲେ ଅସଲ ଲୋକମାନେ କାହାନ୍ତି, ଯେଉଁ ବାସଚ୍ୟୁତ ଆଦିବାସୀମାନଙ୍କ ପାଇଁ ଏହି ଥଇଥାନ କେନ୍ଦ୍ର ପ୍ରସ୍ତୁତ ହୋଇଥିଲା, ସେମାନେ କେହି ଆସି ଉଦ୍ଦିଷ୍ଟ ବାସଗୃହରେ ରହିଲେ ନାହିଁ । କାଳକ୍ରମେ ଘରଗୁଡ଼ିକରୁ କବାଟ, ଝରକା ଚୋରି ହୋଇଗଲା ।

୨୦୦୩ ମସିହାରେ ମୁଁ ଯେବେ ଜଙ୍ଗଲ ଓ ପରିବେଶ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଭାବରେ ଅବସ୍ଥାପିତ ଥିଲି, ସେତେବେଳେ ଦିନେ ଆଲୋଚନାରେ କୋଟପାଡ଼ର ରିଜର୍ଭ ଶାଳ ଜଙ୍ଗଲ ନଷ୍ଟ ହେବା ପ୍ରସଙ୍ଗ ଉଠିଥିଲା । ଉପସ୍ଥିତ ସମସ୍ତଙ୍କର ମତଥିଲା, ଯଦି ବାସଚ୍ୟୁତମାନେ ଆସି ସେଠି ଥଇଥାନ ହେବାପାଇଁ ରାଜି ନଥିଲେ, ତାହାଲେ ନବରଂଗପୁର ଡି.ଏଫ୍.ଓ. କାହିଁକି ଜଙ୍ଗଲ କାଟିବାକୁ ଅନୁମତି ଦେଲେ । ସୌଭାଗ୍ୟକୁ ମୁଁ ସେହି ଆଲୋଚନାବେଳେ ଉପସ୍ଥିତ ଥିଲି ଏବଂ ବିନମ୍ରତାର ସହିତ ଜଣେଇଲି, ମୁଁ ହିଁ ସେ ସମୟରେ ନବରଂଗପୁର ଡି.ଏଫ୍.ଓ. ଥିଲି । ଯଦିଓ ସେହି ସୁନ୍ଦର, ଘଞ୍ଚ, ଅକ୍ଷତ ଶାଳ ଜଙ୍ଗଲ ନ କାଟିବା ପାଇଁ ମୁଁ ଅଡ଼ି ବସିଥିଲି, କିନ୍ତୁ ତତ୍‌କାଳୀନ ଦକ୍ଷିଣାଞ୍ଚଳ ରେଭେନ୍ୟୁ ଡିଭିଜନାଲ୍ କମିଶନରଙ୍କ ରିପୋର୍ଟ ଉପରେ, ଉକ୍ତ ଜଙ୍ଗଲକୁ ବନ ନିଗମକୁ ତୁରନ୍ତ ହସ୍ତାନ୍ତର କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା ।

ବୃହତ୍ ଇନ୍ଦ୍ରାବତୀ ଜଳ ବିଦ୍ୟୁତ୍ ପ୍ରକଳ୍ପରେ ମଧ୍ୟ ଠିକ୍ ଅନୁରୂପ ପରିସ୍ଥିତି ଉପୁଜିଥିଲା । ଅବଶ୍ୟ ଏହି ପ୍ରକଳ୍ପରେ ଜମି ହରେଇଥିବା ଉଦ୍‌ବାସ୍ତୁମାନଙ୍କୁ ଥଇଥାନ କରିବାପାଇଁ ଜଙ୍ଗଲ କଟାଯାଇ ନଥିଲା । କାରଣ ପ୍ରତ୍ୟେକଟି ବିସ୍ଥାପିତ ପରିବାର ନିଜେ ନିଜର ଥଇଥାନ ବ୍ୟବସ୍ଥା କରିବା ପାଇଁ ଉଦ୍ଦିଷ୍ଟ ପରିମାଣର କ୍ଷତିପୂରଣ ଟଙ୍କା ନେଇଥିଲେ । ତେନ୍ତୁଳିଖୁଣ୍ଟି ବ୍ଲକର ଉପରମୁଣ୍ଡରେ ଥିବା ବୁଡ଼ି ଅଂଚଳର ଲୋକମାନେ, ସେମାନଙ୍କର ଜମିବାଡ଼ି, ଘରଦ୍ୱାର ପାଣିରେ ବୁଡ଼ିଯିବା ପରେ ନିଜନିଜର କ୍ଷତିପୂରଣ ଟଙ୍କା ଧରି ଚାଲି ଆସିଲେ, ଉମରକୋଟ ଓ ରାଇଘର ଜଙ୍ଗଲକୁ । ସେଠି ଜଙ୍ଗଲ ସଫାକରି ଜବରଦଖଲରେ ବସବାସ କରି ରହିଲେ ।

ସେ ସମୟକୁ ଉମରକୋଟ ଓ ରାଇଘର ଅଂଚଳର ଶାଳ, ଅସନ ଜଙ୍ଗଲ ସବୁ ଉଣା ଅଧିକେ କଟି ସାରିଥିଲା । କାରଣ ପୂର୍ବ ବଙ୍ଗରୁ ପଳାଇ ଆସିଥିବା ଶତାଧିକ ଶରଣାର୍ଥୀ ପରିବାରଙ୍କୁ ଏହି ଦୁଇ ଅଞ୍ଚଳରେ ଥଇଥାନ କରାଯାଇଥିଲା । ପୂର୍ବ ସମୟର ରେକର୍ଡପତ୍ର ଅନୁଧ୍ୟାନ କରିବାରୁ ଜାଣିବାକୁ ମିଳିଲା ୧୯୬୩ ମସିହାରେ ଦଣ୍ଡକାରଣ୍ୟ ଉନ୍ନୟନ କର୍ତ୍ତୃପକ୍ଷଙ୍କ ମାଧ୍ୟମରେ ପୂର୍ବବଙ୍ଗର ଶରଣାର୍ଥୀମାନଙ୍କୁ ଥଇଥାନ କରିବା ଉଦ୍ଦେଶ୍ୟରେ ଉମରକୋଟରେ ପ୍ରାୟ ୨୦,୦୦୦ ଏକର, ରାଇଘର ଅଂଚଳର ୩୩,୦୦୦ ଏକର ଜମି ଚିହ୍ନଟ କରାଯାଇ ହସ୍ତାନ୍ତର କରାଯାଇଥିଲା । ଏଥିରୁ ଅଧିକାଂଶ ଭାଗ ଜମିଥିଲା ଅକ୍ଷତ, ପରିପୂର୍ଣ୍ଣ ଶାଳ ଜଙ୍ଗଲ । ଏବେ କିନ୍ତୁ ଦୂରରୁ ସୁନ୍ଦର ଦେଖାଯାଉଥିବା ଶାଳ ଜଙ୍ଗଲ

ଭିତରକୁ ପଶିଗଲେ, ମାଇଲ୍ ମାଇଲ୍ ଧରି ଦୃଶ୍ୟମାନ ହେଉଥିଲା ମକାକ୍ଷେତ । ବଙ୍ଗୀୟ ଶରଣାର୍ଥୀମାନେ, ସେମାନଙ୍କୁ ମିଳିଥିବା ଜମିରେ ମୁଖ୍ୟତଃ ମକାଚାଷ କରୁଥିଲେ ।

ସେହିଦିନଠାରୁ ସ୍ଥାନୀୟ ଆଦିବାସୀ ଓ ବଂଗୀୟ ଶରଣାର୍ଥୀମାନଙ୍କ ଭିତରେ କଳି ମଞ୍ଜି ବୁଣି ଦିଆଗଲା । କାଁ ଭାଁ ସେମାନଙ୍କ ଭିତରେ ଗଣ୍ଡଗୋଳର ସୂତ୍ରପାତ ହେଉଥିଲା ଜମିର ମାଲିକାନାକୁ ନେଇ । ତିନିବର୍ଷ, ସାଢ଼େ ତିନିବର୍ଷ ତଳେ ଦୁଇ ଗୋଷ୍ଠୀ ଭିତରେ କୁହୁଳୁଥିବା ଏଇ ନିଆଁ ଉଗ୍ରରୂପ ବିସ୍ତାର କରି ପ୍ରତିଭାତ ହେଲା । ଆଦିବାସୀମାନେ ନିଜକୁ ଭୂମିପୁତ୍ର ବୋଲି ଦାବିକରି, ନିଜ ଜବରଦଖଲରେ ଥିବା ଜମି ଉପରେ ମାଲିକାନା ସ୍ୱତ୍ୱ ଜାହିର୍ କରିବାକୁ ଚାହିଁଲେ । ବଙ୍ଗୀୟ ଶରଣାର୍ଥୀମାନେ ବି ହାର ମାନିବେ କାହିଁକି ? ସେମାନଙ୍କୁ ଖୋଦ୍ ସରକାର ଜମି ଦଖଲ ଦେଇ ଥଇଥାନ କରିଛନ୍ତି । ଜମିର ପଟ୍ଟା, ପାଉତି ସେମାନଙ୍କ ପାଖରେ ଅଛି । ଆଦିବାସୀ ଓ ଅଣଆଦିବାସୀମାନଙ୍କ ଭିତରେ ଏଇ ସଂଘର୍ଷ ବେଶ୍ କିଛି ଦିନ ଧରି ଚାଲିଲା । ଏବେ ଅବସ୍ଥା ଶାନ୍ତ ପଡ଼ିଛି ସତ, କିନ୍ତୁ ମନେ ହେଉଛି, ନିଆଁ ସଂପୂର୍ଣ୍ଣ ଲିଭିନି । ଭିତରେ ଭିତରେ ଏବେ ବି କୁହୁଳୁଛି ।

ନବରଂଗପୁର ରାଜନୈତିକ ବାତାବରଣରେ ମଧ୍ୟ ସେତେବେଳେ କମ୍ ଉଷ୍ମତା ନଥିଲା । ସଦର ନିର୍ବାଚନ ମଣ୍ଡଳୀର ବିଧାୟକ ଥିଲେ ଜନାବ୍ ହବିବୁଲ୍ଲା ଖାଁ । ଯେତେଦୂର ମନେପଡ଼େ, ମୁଁ ନବରଂଗପୁର ଡିଭିଜନ୍ ଦାୟିତ୍ୱ ନେବାର ଅଳ୍ପଦିନ ପରେ ସ୍ୱର୍ଗୀୟା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସେଠାରେ ଏକ ବିରାଟ ନିର୍ବାଚନୀ ସଭାରେ ଭାଷଣ ଦେଇଥିଲେ । ବସ୍ତୁତଃ ଓଡ଼ିଶାର ନିର୍ବାଚନ ପ୍ରଚାର ଶ୍ରୀମତୀ ଗାନ୍ଧୀ ନବରଂଗପୁରଠାରୁ ହିଁ ଆରମ୍ଭ କରିଥିଲେ । ଜନାବ୍ ହବିବୁଲ୍ଲା ଖାଁ ଙ୍କ ଦାୟିତ୍ୱ ତଥା ନେତୃତ୍ୱରେ ଏହି ସଭାରେ ହଜାର, ହଜାର ଜନସାଧାରଣ, ବିଶେଷକରି ରଂଗବେରଂଗ ଶାଢ଼ୀ ପିନ୍ଧି, ସଂଖ୍ୟାଧିକ ଆଦିବାସୀ ରମଣୀ ଯୋଗ ଦେଇଥିଲେ । ଏପରି ଅଭୂତପୂର୍ବ ଜନ ସମାଗମ ଶ୍ରୀମତୀ ଗାନ୍ଧୀଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲା ଏବଂ ସେ ହବିବୁଲ୍ଲାଙ୍କୁ ସାଧାରଣରେ ପ୍ରଶଂସା କରି ଏହା ସୂଚାଇବାକୁ ମଧ୍ୟ ପଛାଇ ନଥିଲେ । ସେ ବର୍ଷ ବିପୁଳ ସଂଖ୍ୟାରେ ବିଜୟୀ ହୋଇ, କଂଗ୍ରେସ ଓଡ଼ିଶାର ଶାସନଭାର ହାତକୁ ନେଲା ଏବଂ ନବରଂଗପୁର ବିଧାୟକ ଜନାବ ହବିବୁଲ୍ଲା ଖାଁ ରାଜ୍ୟ ମନ୍ତ୍ରିମଣ୍ଡଳରେ ସାମିଲ୍ ହେଲେ ।

୧୯୮୦ ମସିହାଠାରୁ ଏପର୍ଯ୍ୟନ୍ତ ଯେତେଥର ରାଜ୍ୟ ବିଧାନସଭାକୁ ନିର୍ବାଚନ ହୋଇଛି, ସବୁଥର ଜନାବ ହବିବୁଲ୍ଲା ଖାଁ ନିର୍ବାଚିତ ହୋଇଛନ୍ତି । ସେହିଦିନଠାରୁ ଏ

ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ଖାନ୍ ସାହେବ ରାଜ୍ୟ ବିଧାନସଭାର ସଦସ୍ୟ ରହି ଆସିଛନ୍ତି । ନବରଂଗପୁର ତାଙ୍କର କର୍ମସ୍ଥଳୀ । ତାଙ୍କର ହୃଦୟସ୍ପନ୍ଦନ କହିଲେ ଅତ୍ୟୁକ୍ତି ହେବନାହିଁ । ସେଠିକାର ଯେ କୌଣସି ଲୋକର ସୁଖ ଦୁଃଖ, ହାନି ଲାଭରେ ସେ ଭାଗୀଦାର ହୁଅନ୍ତି । ନିର୍ବାଚନମଣ୍ଡଳୀର କାହାର ବିବାହ, ବ୍ରତ, ମେଳା, ମଉଛବ, ଦଶାହ, ଶୁଦ୍ଧିକ୍ରିୟା ଆଦି ଯେ କୌଣସି ଅନୁଷ୍ଠାନ ହେଉନା କାହିଁକି, ତାଙ୍କୁ କେହି ଡାକୁ ବା ନ ଡାକୁ, ଜନାବ ନିଶ୍ଚିତ ଭାବେ ସେଠି ପହଞ୍ଚି ଉତ୍ସବରେ ସାମିଲ୍ ହେବେ ଓ ପରିବାର ସହିତ ବେଶ୍ କିଛି ସମୟ କଟାଇବେ । ଏହା ଥିଲା ତାଙ୍କର ଜନସଂପର୍କର ଆଧାର ଓ ତାଙ୍କ ଲୋକପ୍ରିୟତାର ଆଧାରଶୀଳା ।

ମୁଁ ଅନେକ ସମୟରେ ତାଙ୍କୁ ଥଟ୍ଟାରେ କୁହେ, ସାର୍ ଆପଣ ଓଡ଼ିଶା ରାଜ୍ୟର ମନ୍ତ୍ରୀ ନୁହନ୍ତି । ଆପଣ କେବଳ ନବରଂଗପୁରର ମନ୍ତ୍ରୀ । କାରଣ ଆପଣଙ୍କୁ ବର୍ଷର ଅଧିକାଂଶ ଦିନ ଏଇ ସହରରେ ଦେଖିବାକୁ ମିଳୁଛି । ହବିବୁଲ୍ଲା କିଛି ଉତ୍ତର ଦିଅନ୍ତି ନାହିଁ । କେବଳ ହସି ଦିଅନ୍ତି ।

ଜନାବ୍ ହବିବୁଲ୍ଲାଙ୍କ ବ୍ୟତୀତ ପାଖ କୋଡ଼ିଙ୍ଗା ନିର୍ବାଚନ ମଣ୍ଡଳୀର ବିଧାୟକ ଶ୍ରୀ ଡମ୍ବୁର ମାଝି ଏବଂ ଉମରକୋଟ ବିଧାୟିକା ଶ୍ରୀମତୀ ପରମା ପୂଜାରୀ ଏକଦା ରାଜ୍ୟର ମନ୍ତ୍ରୀପଦ ଅଳଙ୍କୃତ କରିଥିଲେ । ନବରଂଗପୁର ସଂସଦୀୟ କ୍ଷେତ୍ରରେ, ସାଂସଦ ଶ୍ରୀଯୁକ୍ତ ଖଗପତି ପ୍ରଧାନୀ ମଧ୍ୟ ଲଗାତର ପାଞ୍ଚଥର ନିରବଚ୍ଛିନ୍ନ ଭାବେ ନିର୍ବାଚିତ ହୋଇଥିଲେ । ଏହା ସେ ସମୟରେ ପାର୍ଲାମେଣ୍ଟ ଇତିହାସରେ ଏକ ରେକର୍ଡ ବୋଲି କୁହାଯାଉଥିଲା ।

ନବରଂଗପୁର ସହର ମଧ୍ୟଦେଇ ଯାଉଥିବା ରାଜପଥ ଉମରକୋଟ, ରାଇଘର ଦେଇ ମଧ୍ୟପ୍ରଦେଶର (ସଂପ୍ରତି ଛତିଶଗଡ଼) ରାୟପୁର ପର୍ଯ୍ୟନ୍ତ ଲମ୍ବିଥିଲା । ଏହି ରାସ୍ତାରେ ନବରଂଗପୁରଠାରେ ଦଶ କିଲୋମିଟର ଗଲେ ଶାଖା ରାସ୍ତାଟିଏ ବାହାରି ଯାଇଥିଲା, ମୈଦଲପୁର ଦେଇ କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା ପର୍ଯ୍ୟନ୍ତ । ସେହି ଛକ ନିକଟରେ ଥିଲା ପାପଡ଼ାହାଣ୍ଡିର ପ୍ରସିଦ୍ଧ ଶିବମନ୍ଦିର । ନବରଂଗପୁରର ଶ୍ରୀ ଚୈତନ୍ୟ ଦେଓ, ପାପଡ଼ାହାଣ୍ଡିର ଏକ ବିରାଟ ପୁରାତନ ପୁଷ୍କରିଣୀରୁ କଳା ଗ୍ରାନାଇଟ୍ ପଥରର ଲିଙ୍ଗ ଉଦ୍ଧାର କରି ସ୍ଥାପନା କରିଥିଲେ ଏବଂ ଏହି ଶିବ ମନ୍ଦିର ତୋଳାଇଥିଲେ । ରାସ୍ତାର ଦୁଇ କଡ଼ରେ ସୁଉଚ୍ଚ ଚମ୍ପା ଗଛର ବଣ । ଚମ୍ପା ଫୁଲର ବାସ୍ନାରେ ମହକି ଉଠୁଥାଏ ଖଣ୍ଡ ମଣ୍ଡଳ । ପ୍ରତ୍ୟହ ସକାଳୁ ରାସ୍ତା କଡ଼ରେ ଆଦିବାସୀ ଲଳନାମାନେ ପତ୍ରଠୋଲାରେ ଚମ୍ପାଫୁଲ ରଖି ବିକିବାକୁ ପସରା

ମେଲାଇ ଦିଅନ୍ତି । ସତେ ଯେପରି ପ୍ରଭୁ ଶିବଙ୍କ ମସ୍ତକରେ ଲାଗି ହେବା ପାଇଁ ସୃଷ୍ଟି ହୋଇଛି ଏଇ ଚମ୍ପା ବଣ ।

ସମୟ ଗଡ଼ି ଚାଲିଥାଏ । ମୁଁ ନବରଂଗପୁର ଡି.ଏଫ୍.ଓ. ହିସାବରେ କାର୍ଯ୍ୟଭାର ଗ୍ରହଣ କରିବାର ଦୁଇବର୍ଷରୁ ଉର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ ହୋଇ ସାରିଥାଏ । ଏ ଭିତରେ ଜୟପୁର ଏବଂ ରାୟଗଡ଼ା ଡିଭିଜନ୍‌ର ପ୍ରେକ୍ଷାପଟ ମଧ୍ୟ ବଦଳି ସାରିଥାଏ । ମୁଁ ନବରଂଗପୁରରେ ଜଏନ୍ କରିବା ସମୟରେ ଜୟପୁର ଡି.ଏଫ୍.ଓ. ଥିଲେ ଶ୍ରୀ ନୀଳମାଧବ ମିଶ୍ର । ୧୯୮୧ ମସିହାରେ ସେଠାକୁ ଆସିଲେ, ୧୯୭୬ ଅର୍ଥାତ୍ ଆମ ତଳ ବ୍ୟାଚ୍‌ର ଆଇ.ଏଫ୍.ଏସ୍. ଅଫିସର କେ. କୁଡ୍ଡେ ଶେଖର । ସେ ଜଣେ ତାମିଲିଆନ୍ । କିନ୍ତୁ ସୁନ୍ଦର ଓଡ଼ିଆ କହୁଥାନ୍ତି । ଓଡ଼ିଆ ଖବରକାଗଜ ମଧ୍ୟ ଦୈନିନ୍ଦିନ ଅଭ୍ୟାସ କରି ପଢ଼ନ୍ତି । ୧୯୭୮ ମସିହାଠାରୁ ରାୟଗଡ଼ ବନଖଣ୍ଡର ଡି.ଏଫ୍.ଓ. ଭାବେ ଦାୟିତ୍ୱ ନେଇଥିଲେ ୧୯୭୪ ବ୍ୟାଚ୍‌ର ଆଇ.ଏଫ୍.ଏସ୍. ଅଫିସର୍ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ମହାନ୍ତି । ୧୯୮୨ ମସିହା ବେଳକୁ ତାଙ୍କଠାରୁ ଦାୟିତ୍ୱ ଗ୍ରହଣ କଲେ ଶ୍ରୀ ପ୍ରିୟନାଥ ପାଢ଼ୀ, ୧୯୭୭ ବ୍ୟାଚ୍‌ର ଅଫିସର୍ ଆମର ଗ୍ରାଣ୍ଡ ଜୁନିୟର୍ ।

ଏହି ସମୟ ଭିତରେ କୋରାପୁଟ ବନମଣ୍ଡଳାଧୀଶଙ୍କର ମଧ୍ୟ ବଦଳି ହୋଇଗଲା ୧୯୮୨ ମସିହା ମାର୍ଚ୍ଚ ମାସରେ । କୋରାପୁଟ କଞ୍ଜରଭେଟର ଶ୍ରୀଯୁକ୍ତ ଗୌର ଗୋବିନ୍ଦ ଦାସ ପଦୋନ୍ନତି ପାଇ ଅତିରିକ୍ତ ମୁଖ୍ୟ ବନସଂରକ୍ଷକ ପଦବୀରେ କଟକରେ ଅବସ୍ଥାପିତ ହେଲେ । ସେ ସମୟରେ ବିଭାଗର ମୁଖ୍ୟ ନିର୍ଦ୍ଦେଶାଳୟ କଟକ କ୍ୟାଣ୍ଟେନମେଣ୍ଟ ରୋଡର ପୁରୁଣା ସେକ୍ରେଟାରିଏଟ୍‌ଠାରେ ଥିଲା । ତାଙ୍କ ସ୍ଥାନରେ ଆସିଲେ ବନ ବିଭାଗର ଅନ୍ୟଜଣେ ବରିଷ୍ଠ ବନ ବିଭାଗୀୟ ଅଫିସର୍ ଶ୍ରୀଯୁକ୍ତ ଗୌର ମୋହନ ଦାଶ । କୋରାପୁଟ ଆସିବା ପୂର୍ବରୁ ସେ ବନ ଉନ୍ନୟନ କଞ୍ଜରଭେଟର ଭାବେ କଟକଠାରେ ଅବସ୍ଥାପିତ ଥିଲେ । ଉନ୍ନୟନ କଞ୍ଜରଭେଟର ପୋଷ୍ଟ ଏକ ସମ୍ମାନଜନକ ପଦବୀ ଥିଲା ଏବଂ ବରିଷ୍ଠତା ଭିତ୍ତିରେ କଞ୍ଜରଭେଟରମାନଙ୍କୁ ସେଠାରେ ପୋଷ୍ଟିଂ କରାଯାଉଥିଲା । ସେହିଭଳି ଏକ ପଦବୀରୁ କୋରାପୁଟ ପରି ସୁଦୂର ଉପାନ୍ତ ଅଞ୍ଚଳକୁ ବଦଳିହେବା, ପନିସ୍‌ମେଣ୍ଟ ପୋଷ୍ଟିଂ ଭାବି ଗୌର ମୋହନ ଦାସ କିଛିଦିନ ଛୁଟିରେ ରହିଥିଲେ ମଧ୍ୟ ପରେ ଏକା ଏକା ଆସି ମାର୍ଚ୍ଚମାସରେ କାର୍ଯ୍ୟଭାର ଗ୍ରହଣ କଲେ । ପ୍ରଥମେ ସାଙ୍ଗରେ ସ୍ତ୍ରୀଙ୍କୁ ଆଣି ନଥିଲେ । କିଛିଦିନ ପରେ ମିସେସ୍ ଦାସ କୋରାପୁଟ ଆସିଲେ ।

କୋରାପୁଟ ବନମଣ୍ଡଳାଧୀଶ ଭାବରେ ଗୌର ମୋହନବାବୁ ରହିଥିଲେ ମାତ୍ର ନଅ ମାସ । ପୁନଶ୍ଚ ତାଙ୍କୁ ତାଙ୍କର ପୂର୍ବ ପଦବୀକୁ କଟକ ଫେରାଇ ନିଆଯାଇଥିଲା । ଏହି ସ୍ୱଳ୍ପ ସମୟ ମଧ୍ୟରେ ତାଙ୍କର ଏବଂ ତତ୍‌କାଳୀନ କଟକର ଉନ୍ନୟନ କଞ୍ଜରଭେଟର ଶ୍ରୀ ବିହାରୀଲାଲ ଦାସ (ସ୍ୱଗତ)ଙ୍କ ମିଳିତ ଉଦ୍ୟମରେ କୋରାପୁଟଠାରେ ଏକ ଜାତୀୟ ସ୍ତରର 'ପାଇନ୍' ସେମିନାର ଆୟୋଜିତ ହୋଇଥିଲା । ଜଣେ ଏ.ସି.ଏଫ୍.ଙ୍କ ତତ୍ତ୍ୱାବଧାନରେ କୋରାପୁଟଠାରେ ପାଇନ୍ ଗବେଷଣା କେନ୍ଦ୍ର ପ୍ରତିଷ୍ଠା ହୋଇଥିଲା । ସେ ସମୟରେ କୋରାପୁଟର ସିଲ୍‌ଭିକଲଚରାଲ୍ ଗାର୍ଡେନ୍ ଓ ତତ୍‌ସଂଲଗ୍ନ ନଣ୍ଡା ପାହାଡ଼ ଗୁଡ଼ିକରେ ଏବଂ ପଟାଙ୍ଗି ନିକଟରେ ରାଜପଥ ପାର୍ଶ୍ୱ ପାହାଡ଼ ତଥା ପଟାଙ୍ଗି ଫାର୍ମରେ ଶତାଧିକ ଏକର ପାଇନ୍ ବୃକ୍ଷ ରୋପଣ କରାଯାଇଥିଲା । ଏବେ କୋରାପୁଟ ଗଲେ ଦେଖିବାକୁ ମିଳିବ, ଚାରିପଟର ବୃକ୍ଷଶୂନ୍ୟ ନଣ୍ଡା ପାହାଡ଼ ମଧ୍ୟରେ ଏହି ପାଇନ୍ ଜଙ୍ଗଲତକ ହିଁ ଅକ୍ଷତ ଅବସ୍ଥାରେ ଅଦ୍ୟାବଧି ମୁଣ୍ଡ ଟେକି ରହିଛି ।

ଭାରତ ସରକାରଙ୍କ ତରଫରୁ ମଧ୍ୟ କୋରାପୁଟଠାରେ 'କେନ୍ଦ୍ରୀୟ ପାଇନ୍ ରିସର୍ଚ୍ଚ ଅନୁଷ୍ଠାନ' ପ୍ରତିଷ୍ଠା କରାଯାଇଥିଲା ଏବଂ ପ୍ରଥମକରି ସେ ଅନୁଷ୍ଠାନର ଦାୟିତ୍ୱ ନେଇଥିଲେ ଉତ୍ତରପ୍ରଦେଶ ବନବିଭାଗରୁ ଡେପୁଟେସନ୍‌ରେ ଆସିଥିବା ଜଣେ ଯୁବ ଓଡ଼ିଆ ଆଇ.ଏଫ୍.ଏସ୍. ଅଫିସର ଶ୍ରୀ ବିଜୟ କୁମାର ପଟ୍ଟନାୟକ । ବିଜୟବାବୁ ଓଡ଼ିଶା ଲୋକ । ଖୋର୍ଦ୍ଧା ପାଖାପାଖି ତାଙ୍କର ଗାଁ । ସଂପ୍ରତି ସେ ଉତ୍ତରପ୍ରଦେଶ ବନବିଭାଗ ପ୍ରଧାନ ମୁଖ୍ୟ ବନ ସଂରକ୍ଷକ (ପି.ସି.ସି.ଏଫ୍.) ପଦବୀ ଅଳଂକୃତ କରିଛନ୍ତି ।

ବନୀକରଣ କରି ନଣ୍ଡା ପାହାଡ଼ଗୁଡ଼ିକ ଆଚ୍ଛାଦିତ କରିବା ପାଇଁ ପାଇନ୍ ବୃକ୍ଷ ରୋପଣ ଏକ ପ୍ରକୃଷ୍ଟ ମାଧ୍ୟମ ଥିଲା । ସାଧାରଣତଃ ସ୍ଥାନୀୟ ଲୋକମାନେ ଜାଳେଣି ପାଇଁ ପାଇନ୍ ଗଛଗୁଡ଼ିକୁ କାଟୁ ନଥିଲେ, କିନ୍ତୁ ମଧ୍ୟ ପ୍ରଦେଶର (ବର୍ତ୍ତମାନ ଛତିଶଗଡ଼) ବସ୍ତର ଜିଲ୍ଲାରେ ବନ ବିଭାଗ ଅଧିକ ଉତ୍ସାହିତ ହୋଇ ବା ଅନ୍ୟ କୌଣସି କାରଣରୁ ପାଇନ୍ ଲଗାଇବା ପାଇଁ ପୂର୍ବରୁ ସେଠାରେ ଥିବା ମୂଲ୍ୟବାନ ଶାଳ ଜଙ୍ଗଲଗୁଡ଼ିକୁ କାଟି ସଫା କରିଦେଲେ । ଶାଳଗଛ ଥିଲା  ବସ୍ତର ଅଂଚଳର ଆଦିବାସୀମାନଙ୍କର ଜୀବନ ନାଟିକା । ଶାଳବଣରୁ ସେମାନେ ଜାଳକାଠ, ଶାଳପତ୍ର ବ୍ୟତୀତ ଅନେକ କିସମର ଲଘୁ ବନଜାତ ଦ୍ରବ୍ୟ ଝୁଣା ଇତ୍ୟାଦି ସଂଗ୍ରହ କରୁଥିଲେ । ତେଣୁ ଶାଳ ଜଙ୍ଗଲ କାଟି, ପାଇନ୍ ଜଙ୍ଗଲ ସୃଷ୍ଟି କରିବା ବିରୁଦ୍ଧରେ ପ୍ରବଳ ପ୍ରତିବାଦର ସ୍ୱର ଉଠିଲା । ବିଶେଷ କରି ଆଦିବାସୀମାନଙ୍କ

ପାଇଁ କାର୍ଯ୍ୟ କରୁଥିବା ସ୍ୱେଚ୍ଛାସେବୀ ସଂଗଠନମାନେ ବିଭିନ୍ନ ଫୋରମ୍‌ରେ ଏହି ଉଦ୍ୟମକୁ ବିରୋଧ କଲେ । ଫଳସ୍ୱରୂପ ପାଇନ୍ ପ୍ରକଳ୍ପ କାର୍ଯ୍ୟ କ୍ରମଶଃ ଧିମେଇଗଲା ଏବଂ ପରିଶେଷରେ ସଂପୂର୍ଣ୍ଣ ବନ୍ଦ ହୋଇଗଲା ।

କୋରାପୁଟ ଜିଲ୍ଲାର ବନ ବିଭାଗ ଅଫିସର୍‌ମାନଙ୍କ ବଦଳି ସହିତ ତାଳଦେଇ ବଦଳି ଯାଉଥିଲା ନବରଂଗପୁର-ପାପଡ଼ାହାଣ୍ଡି ମୁଖ୍ୟ ରାସ୍ତା ଦୁଇ କଡ଼ର ସବୁଜ ଦୃଶ୍ୟପଟ । ନବରଂଗପୁର ସହରର ଗୋଟିଏ ପ୍ରାନ୍ତରେ ଥିଲା ମିଶନ୍ ହସ୍ପିଟାଲ୍ । ନବରଂଗପୁର ସରକାରୀ ସବ୍‌ଡିଭିଜନ୍ ହସ୍‌ପିଟାଲ୍ ତୁଳନାରେ ଏଠାରେ ଚିକିତ୍ସାର ମାନ ଯଥେଷ୍ଟ ଉଚ୍ଚକୋଟୀର ଥିଲା । ରାଜ୍ୟ ବାହାରର ଅନେକ ଖ୍ରୀଷ୍ଟିଆନ୍ ବିଶେଷଜ୍ଞ ଡାକ୍ତର ସେଠାରେ ମୁତୟନ ହୋଇଥିଲେ ।

ମିଶନ୍ ହସ୍‌ପିଟାଲ୍‌ର ବିରାଟ କମ୍ପାଉଣ୍ଡ ହତା, ପାଞ୍ଚ ଛଅ ଫୁଟରୁ ଊର୍ଦ୍ଧ୍ୱ ଗୋଲେଇ ବିଶିଷ୍ଟ ଏବଂ ଷାଠିଏ ଫୁଟ ଉଚ୍ଚା, ଡେଙ୍ଗା ଡେଙ୍ଗା ଶାଳ ଗଛରେ ଭରି ରହିଥିଲା । ହୁଏତ ଶହେ ବର୍ଷର ପୁରୁଣା ଶାଳଗଛ ହୋଇପାରେ । ମୋର ମନେଅଛି, ସେ ସମୟରେ ଗୋଟିଏ କଲରାପତରିଆ ବାଘଛୁଆ ମଧ୍ୟ ଏହି ଜଙ୍ଗଲରୁ ଉଦ୍ଧାର କରାଯାଇଥିଲା । କାଠର ବଡ଼ ପିଞ୍ଜରାଟିଏ ତିଆରି କରି, ଏହି କଲରାପତରିଆ ବାଘ ଛୁଆଟିକୁ ଭୁବନେଶ୍ୱର ସ୍ଥିତ ନନ୍ଦନକାନନ ପ୍ରାଣୀ ଉଦ୍ୟାନକୁ ପଠାଇବା ପୂର୍ବରୁ, କିଛିଦିନ ତାହାକୁ ଡି.ଏଫ୍.ଓ.ଙ୍କ ବାସଭବନରେ ରଖାଯାଇଥିଲା । ବୋତଲରେ ଦୁଧ ବା ଗ୍ଲାକ୍‌ସୋ ପିଉଥିବା କୁନି ବାଘଛୁଆଟି ପୋଷା ବିଲେଇପରି ଘରସାରା ଦଉଡୁ ଥିଲା ଏବଂ ବେଳେବେଳେ ଏକା ହତା ଭିତରେ ଥିବା ମୋ' ଅଫିସ୍ ରୁମ୍‌କୁ ମଧ୍ୟ ଦଉଡ଼ି ପଶିଯାଉଥିଲା । ତା' ପଛେ ପଛେ ବିଭଙ୍ଗଠାଣୀରେ ନସର ପସର ହୋଇ ଦୌଡୁଥିଲା ମୋର ଦୁଇ ବର୍ଷର କୁନି ପୁଅ । କୁନି ବାଘ ଛୁଆଟି ଗୋଟାଏ ସପ୍ତାହ ପାଇଁ ପୁଅର ରୋଚକ ଖେଳ ସାଥୀଟିଏ ବନି ଯାଇଥିଲା ।

ମିଶନ କମ୍ପାଉଣ୍ଡରେ ଥିବା ଗଛଗୁଡ଼ିକର ଉପସ୍ଥିତି ସୂଚାଇ ଦେଉଥିଲା ଯେ ଦିନେ ନବରଂଗପୁର, ତାରାଗାଁ ଓ ପାପଡ଼ାହାଣ୍ଡି ପର୍ଯ୍ୟନ୍ତ ସୁବିସ୍ତୃତ ଅଂଚଳ ଶାଳ ଜଂଗଲ ପରିପୂର୍ଣ୍ଣ ଥିଲା । କାଳକ୍ରମେ ଉଭୟ ତାରାଗାଁ ଫରେଷ୍ଟ ବ୍ଲକ୍ ଏବଂ ପାପଡ଼ାହାଣ୍ଡି ସଂରକ୍ଷିତ ଜଂଗଲ ଅବକ୍ଷୟ ହୋଇ କେବଳ ଗଜା ଶାଳ ଜଂଗଲରେ ସୀମିତ ଥିଲା । କିନ୍ତୁ ରାସ୍ତାର ଉଭୟ ପାର୍ଶ୍ୱରେ, ଅତୀତରେ ଥିବା ଘଞ୍ଚ ଜଂଗଲର ମୂକସାକ୍ଷୀ ରୂପେ ରହିଯାଇଥିଲା ଏକାଧିକ ବିରାଟ ବିରାଟ ପୁରାତନ ଶାଳଗଛ ।

ସମୟକ୍ରମେ କାଠ ଓ ଜାଳକାଠରେ ସମସ୍ୟା ଏତେ ଉତ୍କଟ ହେଲା ଯେ ଏହି ମୂଲ୍ୟବାନ ଶାଳଗଛଗୁଡ଼ିକ ମଧ୍ୟ ସ୍ଥାନୀୟ ଲୋକମାନେ ଜାଳେଣି ପାଇଁ କାଟି ନେଇଗଲେ । ରାତି ଅନ୍ଧାରରେ ଚାଳିଶ, ପଚାଶ ଲୋକ ଏକତ୍ର ହୋଇ ଗଛଟିକୁ କାଟି ତଳେ ପକାଇ ଦିଅନ୍ତି । ତା'ପରେ ଗୁଡ଼କୁ ପିମ୍ପୁଡ଼ି ବୋହିଲା ପରି, ସମସ୍ତେ ଏକା ସାଙ୍ଗରେ ଝାମ୍ପି ପଡୁଥିଲେ ଭୂପତିତ ବିରାଟକାୟ ଗଛ ଉପରେ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଦେଢ଼ ଫୁଟ ଲମ୍ବର ଜାଳକାଠ ବିଡାମାନ ବନେଇ ଘରକୁ ବୋହି ନେଉଥିଲେ । ସକାଳ ହେଲା ବେଳକୁ ସବୁ ସାଫ, ପରିଷ୍କାର । କାଠ ବା ପଟା ଆକାରରେ ବିକିଲେ ଯେଉଁ ଶାଳଗଛର ମୂଲ୍ୟ ପଚାଶ, ଷାଠିଏ ହଜାର ଟଙ୍କା ହୋଇଥାନ୍ତା, ତାକୁ ମାତ୍ର ପାଞ୍ଚଶହ, ଛଅଶହ ଟଙ୍କାର ଜାଳକାଠ ଭାବରେ ଶାଗମାଛ ଦରରେ ବଜାରରେ ବିକିଦେଇ ବା ନିଜର ଆବଶ୍ୟକତା ପାଇଁ ବ୍ୟବହାର କରି ସନ୍ତୁଷ୍ଟ ହେଉଥିଲେ ।

ଆମେ ଥରେ, ଦୁଇଥର ଶାଳଗଛର ମୂଲ୍ୟ ତଥା ଅବଦାନ ବୁଝାଇବା ପାଇଁ ପାଖ ଆଖ ଗାଁରେ ସଭା ସମିତି କରିଛୁ । କିନ୍ତୁ ଏବେ ଯେପରି ଜନସାଧାରଣ ବିଶେଷତଃ ଜଙ୍ଗଲ ନିକଟରେ ବସବାସ କରୁଥିବା ଅଧିବାସୀମାନେ ବନସଂରକ୍ଷଣ ସଂପର୍କରେ ସଚେତନ, ସେ ସମୟରେ ସେତେଟା ନଥିଲେ । ତା' ଛଡ଼ା ଯେଉଁଠି ଲୋକମାନଙ୍କ ପାଖରେ ଚାଉଳ ଅଛି, ଡାଲି ଅଛି, ଅଥଚ ତାକୁ ରାନ୍ଧି କରି ଖାଇବା ପାଇଁ ଜାଳେଣି କାଠ ବା ଇନ୍ଧନ ନାହିଁ, ସେଠି ମୂଲ୍ୟବାନ ଶାଳଗଛ, ଫଳନ୍ତି ଆମ୍ବଗଛ ବା ଅନ୍ୟ କେଉଁ ଗଛ କାଟି ଜାଳେଣି କରାଯାଉଛି, ସେ କଥାକୁ କିଏ ପଚାରେ ?

ନବରଂଗପୁର ଡିଭିଜନରେ ବାଉଁଶ ପ୍ରାୟ ନାହିଁ କହିଲେ ଚଳେ । ତେବେ କାଠ, ଜାଳକାଠ ବ୍ୟତୀତ ଲଘୁ ବନଜାତ ଦ୍ରବ୍ୟ ଭିତରେ ମୂଲ୍ୟବାନ ଥିଲା ଶାଳମଞ୍ଜି ଓ କେନ୍ଦୁପତ୍ର । ଏପ୍ରିଲ୍, ମେ, ଜୁନ ମାସରେ ଯେତେବେଳେ ଅନ୍ୟକିଛି କାମଧନ୍ଦା ମିଳୁ ନଥାଏ, ସେ ସମୟରେ ଜଙ୍ଗଲ ନିକଟରେ ବସବାସ କରୁଥିବା ଗରିବ ଅଧିବାସୀମାନେ ଶାଳମଂଜି ଗୋଟାଇ ବା କେନ୍ଦୁପତ୍ର ସଂଗ୍ରହ କରି ଗୁଜୁରାଣ ମେଣ୍ଟାଇ ପାରୁଥିଲେ । ଅନ୍ୟ ଏକ ଲଘୁ ବନଜାତ ଦ୍ରବ୍ୟ, ଯାହା ବିଶେଷକରି ନବରଂଗପୁର ଡିଭିଜନ୍‌ରେ ମିଳୁଥିଲା, ତାହା ହେଉଛି ଲାଖ । ଝରିଗାଁ ପାଖ ଜଙ୍ଗଲରେ ଶତାଧିକ କୁସୁମଗଛ ରହିଥିଲା । ଲାଖ ଚାଷ ପାଇଁ ଏହି ଗଛ ଉପଯୁକ୍ତ । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପ୍ରତିଟି ପରିବାର ପିଛା ପାଞ୍ଚଟି କୁସୁମ ଗଛ ଲାଖ ଚାଷ କରିବା ପାଇଁ ଚିହ୍ନଟ କରାଯାଇ ସେମାନଙ୍କୁ ବନ ବିଭାଗ

ତରଫରୁ ମାଗଣାରେ ଲାଖ ବିହନ ଯୋଗାଇ ଦିଆଯାଇଥିଲା । ସେତେବେଳେ ଲାଖ କାମପାଇଁ ନବରଂଗପୁର ସହର ବେଶ୍ ପ୍ରସିଦ୍ଧି ଲାଭ କରିଥିଲା । ଏଠାରୁ ଲାଖ ପ୍ରସ୍ତୁତ ପେଡ଼ି, ଚୁଡ଼ି, କଣ୍ଢେଇ ଏବଂ ଖେଳନା ଆଦି ବାହାରକୁ ବିକ୍ରୟ ପାଇଁ ପଠାଯାଉଥିଲା ।

ସମୟ ବିତିବା ସଂଗେ ସଂଗେ ସେଠିକାର ଦୁଇ, ତିନିଜଣ ଯୁବ ଅଫିସରଙ୍କ ସହିତ ମୋର ବେଶ୍ ଦୋସ୍ତି ଜମିଯାଇଥିଲା । ସେମାନଙ୍କ ଭିତରୁ ଜଣେ ଥିଲେ ଓଡ଼ିଶା ବାହାରର ଅଫିସର ମିଃ ମାଥୁର । ସିଏ ଜାତୀୟ ରେଶମ ବୋର୍ଡର ଆଞ୍ଚଳିକ ଅଧିକାରୀ ରୂପେ ନବରଂଗପୁରଠାରେ ଅବସ୍ଥାପିତ ଥିଲେ । ଅନ୍ୟ ଜଣକ ଥିଲେ ଶ୍ରୀ ଶରତ ଚନ୍ଦ୍ର ମିଶ୍ର, ଇଲେକ୍ଟ୍ରିକାଲ ସବଡିଭିଜନାଲ୍ ଅଫିସର୍ । ସେ ସମୟରେ ନବରଂଗପୁରରେ କୌଣସି ସିନେମା ହଲ୍ ନଥିଲା । ଟେଲିଭିଜନ ଯୁଗ ଆରମ୍ଭ ହୋଇନଥିଲା । ତେଣୁ ନିତିଦିନିଆ ମନୋରଂଜନ ସାଧନ କିଛି ପ୍ରାୟ ନଥିଲା କହିଲେ ଚଳେ । ଆମେ କେତେଜଣ ବଂଧୁ ସଂଧ୍ୟାବେଳେ ହତା ଭିତରେ ବ୍ୟାଡ଼ମିଣ୍ଟନ ଖେଳୁ, ନହେଲେ ଚା' ପିଇବା ଅବସରରେ ଗୁଲି ଜମାଉ ।

ଏମିତି ଦିନେ ଅପରାହ୍ଣରେ ଆମ ଘର ସାମ୍ନାରେ ଥବା ବିସ୍ତୃତ ବାରଣ୍ଡାରେ ବସି ଚା' ପିଉଛୁ । ହଠାତ୍ ବନନିଗମ ଡିଭିଜନାଲ୍ ମ୍ୟାନେଜରଙ୍କ ପତ୍ନୀ ଫୋନ୍ କରି ଜଣାଇଲେ, ନିଗମ ଅଫିସରେ ନିଆଁ ଲାଗିଯାଇଛି । ଡିଭିଜନାଲ୍ ମ୍ୟାନେଜର ବେହେରାବାବୁ ଟୁର୍‌ରେ କୋରାପୁଟ ଯାଇଥିବାରୁ ସେ ମୋତେ ନିଗମ ଅଫିସ୍‌ରେ ପହଞ୍ଚି ପରିସ୍ଥିତି ସମ୍ଭାଳିବାକୁ ଅନୁରୋଧ କରିଥିଲେ । ପାଞ୍ଚ ମିନିଟ୍ ଭିତରେ ମୁଁ ଓ ମୋର ଅନ୍ୟ ତିନିଜଣ ବନ୍ଧୁ ସେଠି ପହଞ୍ଚି ଯାଇଥିଲୁ । ଅଫିସ୍ ରୁମ୍‌ର ଗୋଟେ ପଟ ଅଂଶ ସାମାନ୍ୟ ପୋଡ଼ି ଯାଇଥିଲା; କିନ୍ତୁ ଅନେକ ଫାଇଲ୍ ପତ୍ର ପୋଡ଼ି ନଷ୍ଟ ହୋଇଯାଇଥିଲା ।

ନିଗମ କର୍ମଚାରୀମାନେ ସଫେଇ ଦେଉଥିଲେ ନିଆଁ ଇଲେକ୍ଟ୍ରିକ୍ ସର୍ଟ ସର୍କିଟ ଯୋଗୁଁ ଲାଗିଛି । କାରଣ କୋଠରିର ଯେଉଁ ପଟ କାନ୍ଥରୁ ନିଆଁ ଧରିଛି, ସେପଟ କାନ୍ଥ କାଠରେ ନିର୍ମିତ । ବାହାରୁ ଦେଖିଲେ ଆପାତତଃ ମନକୁ ଆସୁଥିଲା, ଏହା ଏକ ସୁଚିନ୍ତିତ ଅନ୍ତର୍ଘାତୀ କାର୍ଯ୍ୟ । କାରଣ ଘରର ଆସବାବପତ୍ର, କବାଟ ଝରକା ନିଆଁରେ ପୋଡ଼ି ଯେତେଟା ନଷ୍ଟ ହୋଇ ନଥିଲା ତାଠୁ ଅଧିକ ନଷ୍ଟ ହୋଇଥିଲା ଅଫିସ୍ ଫାଇଲ୍ ପତ୍ର । ସତେ ଯେପରି କିଏ ଜାଣିଶୁଣି ଗୁରୁତ୍ୱପୂର୍ଣ୍ଣ ନଥିପତ୍ର ଗୁଡ଼ିକୁ ପୋଡ଼ି ନଷ୍ଟ କରିଦେଇଛି ।

ଯାହାହେଉ ଡି.ଏମ୍.ଙ୍କ ପତ୍ନୀଙ୍କ କହିବା ମୁତାବକ ଆମେ ଜଣେ ମାଜିଷ୍ଟ୍ରେଟ୍ ହିସାବରେ ଏସ.ଡି.ଓ ମହାପ୍ରଶସ୍ତବାବୁଙ୍କୁ ତୁରନ୍ତ ସରଜମିନ୍ ତଦନ୍ତ କରିବାକୁ ଅନୁରୋଧ

କଲୁ । ମହାପ୍ରଶସ୍ତବାବୁ ପ୍ରଥମେ ତଦନ୍ତ କରିବା ପାଇଁ ଅନିଚ୍ଛା ପ୍ରକାଶ କରୁଥିଲେ । କାରଣ ଡି.ଏମ୍. ବେହେରାବାବୁଙ୍କ ସହିତ ତାଙ୍କର ମଧ୍ୟ ସୁସଂପର୍କ ନଥିଲା । କିନ୍ତୁ ଆମ ଅନୁରୋଧକୁ ଏଡ଼ି ନପାରି ସେ ଆମ ସହିତ ନିଗମ ଅଫିସ୍‌କୁ ଗଲେ ଏବଂ ସରଜମିନ୍ ତଦନ୍ତ ପରେ ଏହା ଏକ ଆକସ୍ମିକ୍ ଦୁର୍ଘଟଣା ଓ ଇଲେକ୍ଟ୍ରିକାଲ୍ ସର୍ଟ ସର୍କିଟ ଯୋଗୁ ହୋଇଛି ବୋଲି ମନ୍ତବ୍ୟ ଦେଇ ରିପୋର୍ଟ ଦେଲେ । ପରେ ଡି.ଏମ.ଙ୍କ ବିରୁଦ୍ଧରେ ବିଭାଗୀୟ କାର୍ଯ୍ୟାନୁଷ୍ଠାନ ଓ ଭିଜିଲାନ୍‌ସ ତଦନ୍ତ ବେଳେ ଏହି ତଦନ୍ତ ରିପୋର୍ଟ ଯଥେଷ୍ଟ ସାହାଯ୍ୟ କରିଥିଲା ।

୧୯୮୨ ମସିହା ଅକ୍‌ଟୋବର ମାସ ବେଳକୁ ମୋର କାର୍ଯ୍ୟକାଳ ତିନିବର୍ଷ ପୂରିସାରିଥାଏ । ପାରିବାରିକ ଦାୟିତ୍ୱବୋଧ ଓ ଜଞ୍ଜାଳ ମୁଣ୍ଡରୁ ଓହ୍ଲେଇ ଯାଇଥିବାରୁ ବେଶ୍ ହାଲ୍‌କା ଲାଗୁଥିଲା । ସେଥର ପୂଜାଛୁଟିରେ ସପରିବାର ଗାଁକୁ ଆସିଥିଲୁ । ଗାଁରେ କିଛିଦିନ ରହିବା ପରେ କଟକ ଶ୍ୱଶୁରାଳୟକୁ ଯାଇଥିଲୁ ଏବଂ ସେଠି ମନଭରି ଦଶହରା ପର୍ବ ତଥା ଭସାଣି ଉତ୍ସବ ଉପଭୋଗ କଲୁ । ପ୍ରତିଦିନ ରାତିରେ ସାହି ସାହି ବୁଲି, ଦୁର୍ଗା ବା ହରପାର୍ବତୀ ମେଢ଼ ସାମ୍‌ନାରେ ହେଉଥିବା 'ମେଲୋଡ଼ି' ଶୁଣୁଥିଲୁ ।

ପୂଜା ଛୁଟିରେ ମୁଁ ନବରଂଗପୁରରେ ନଥିବା ସମୟରେ ଗୋଟିଏ ଅଘଟଣ ଘଟିଗଲା । କୋରାପୁଟର ତତ୍‌କାଳୀନ ଜିଲ୍ଲାପାଳ ଓ ଏସ.ପି. କୋଟପାଡ଼ ଓ ଚାନ୍ଦିଲି ଦେଇ ମଧ୍ୟପ୍ରଦେଶର ଜଗଦଲପୁର ସହରକୁ ଯାଉଥିଲେ । ଆଗରୁ କୁହାଯାଇଛି, ଓଡ଼ିଶା ଓ ମଧ୍ୟପ୍ରଦେଶ ସୀମାନ୍ତର 'ଚାନ୍ଦିଲି' ଠାରେ ବନବିଭାଗର ଏକ ସୁନ୍ଦର ଡାକବଂଗଳା ରହିଛି । ଡାକ ବଂଗଳା ହତାରେ ବିଗତ ଦିନମାନଙ୍କରେ ଚୋରା ଚାଲାଣ ବେଳେ ଧରା ପଡ଼ିଥିବା କାଠ, ପଟା ଓ ପ୍ରଚୁର ବହ୍ଲା ଆଦି ଜମା ହୋଇ ରହିଥାଏ ।

ଉଭୟ ପଟୁ ଅର୍ଥାତ୍ ମଧ୍ୟପ୍ରଦେଶ ପଟୁ ଓଡ଼ିଶାକୁ ଏବଂ ଓଡ଼ିଶାରୁ ମଧ୍ୟପ୍ରଦେଶକୁ ସେ ସମୟରେ କାଠ ଓ ଅନ୍ୟାନ୍ୟ ଲଘୁବନଜାତ ଦ୍ରବ୍ୟ ଯଥା ଶାଳମଞ୍ଜି, ତେନ୍ତୁଳି ଆଦି ଚୋରା ଚାଲାଣ ହେଉଥିଲା । କେତେକ କେସ୍‌ରେ ଆସାମୀ ଧରା ପଡୁନଥିଲେ । ଯେଉଁ କେସ୍‌ରେ ଧରା ପଡୁଥିଲେ ସେମାନଙ୍କୁ କୋର୍ଟ ଚାଲାଣ କରାଯାଉଥିଲା ଏବଂ ବାଜ୍ୟାପ୍ତ କାଠ, ବାଉଁଶ ଇତ୍ୟାଦି ଡାକବଂଗଳା ହତାରେ ରଖାଯାଉଥିଲା ।

ବିପୁଳ ପରିମାଣର ଜମା ହୋଇଥିବା କାଠ ଗଦାକୁ ଦେଖି ଜିଲ୍ଲାପାଳ ମହାଶୟ, ତୁରନ୍ତ ସରକାରଙ୍କୁ ଗୋପନୀୟ ରିପୋର୍ଟରେ ଏହା ଜଣେଇ ଦେଲେ । ସରକାରଙ୍କ ତରଫରୁ ମୋତେ ଏ ବିଷୟରେ ସ୍ପଷ୍ଟୀକରଣ ଦେବା ପାଇଁ ନିର୍ଦ୍ଦେଶ ମିଳିବାରୁ ଘଟଣାଟି ଜଣା

ପଡ଼ିଲା । ତୁରନ୍ତ ସରଜମିନ ତଦନ୍ତ କରି, ବିଗତ ଏକ ବର୍ଷ ଭିତରେ 'ଚାନ୍ଦିଲି' ସେକ୍‌ସନ୍‌ରେ ଧରାଯାଇଥିବା ସମସ୍ତ କେସ୍‌ର ବିବରଣୀ ଓ ଜବତ ହୋଇଥିବା କାଠ, ବହ୍ଲର ଏକ ତାଲିକା ପ୍ରସ୍ତୁତ କରି ମୁଁ କୋରାପୁଟ କଞ୍ଜରଭେଟରଙ୍କ ଜରିଆରେ ସରକାରଙ୍କୁ ଜଣାଇଦେଲି । ଏହାର ଏକକିତା ·ନକଲ ଜିଲ୍ଲାପାଳଙ୍କୁ ପ୍ରଦାନ କରି ତାଙ୍କ ସହିତ ସାକ୍ଷାତ ଆଲୋଚନା ମଧ୍ୟ କଲି ।

ଜିଲ୍ଲାପାଳଙ୍କ ଉତ୍ତର ଥିଲା, ସେ ଏବଂ କୋରାପୁଟ ଏସ.ପି.ଙ୍କ ଯୁଗ୍ମ ଗସ୍ତ ଅବସରରେ ସୀମାନ୍ତ ଅଂଚଳରେ ଚୋରି, ଡକାୟତି, ରାହାଜାନି ହେଉଛି ବୋଲି ଏକ ସବିସ୍ତୃତ ବିବରଣୀ ସରକାରଙ୍କୁ ପେସ୍ କରି, ଚାନ୍ଦିଲିଠାରେ ଏକ ଥାନା ଖୋଲିବା ପାଇଁ ସେ ପ୍ରସ୍ତାବ ଦେଇଥିଲେ । ଅନ୍ୟାନ୍ୟ ଚୋରି ଭିତରେ ଜଙ୍ଗଲରୁ କାଠ ଚୋରି ମଧ୍ୟ ଏକ ପ୍ରସଙ୍ଗ ଥିଲା । ଏଥିରେ ବନବିଭାଗର କାର୍ଯ୍ୟକୁ ଆକ୍ଷେପ କରାଯିବାର ବା କାହାକୁ ବ୍ୟକ୍ତିଗତ ଭାବେ ଦୋଷୀ ସଜେଇବାର ଉଦ୍ଦେଶ୍ୟ ନଥିଲା । ତେଣୁ ଏ ପ୍ରସଙ୍ଗଟିକୁ ଏତେ ଗୁରୁତ୍ୱର ସହ ନନେଇ, ସହଜ ହେବା ପାଇଁ ଜିଲ୍ଲାପାଳ ମୋତେ ପରାମର୍ଶ ଦେଇଥିଲେ ।

ସେହିବର୍ଷ ଅର୍ଥାତ୍ ୧୯୮୨ ମସିହା ଡିସେମ୍ବର ମାସରେ କଞ୍ଜରଭେଟର ଗୌରମୋହନ ଦାସଙ୍କ ବଦଳି ହୋଇଗଲା । ସେ ତାଙ୍କର ପୂର୍ବସ୍ଥାନ କଟକକୁ ଫେରିଗଲେ । ନୂଆ ବନସଂରକ୍ଷକ ପଦବୀରେ କୋରାପୁଟ ବନମଣ୍ଡଳରେ ଯୋଗଦେଲେ ଶ୍ରୀ ସଦାନନ୍ଦ ପତି (ସ୍ୱର୍ଗତ) । ପ୍ରଥମ ଦେଖାରେ ହାବଭାବରୁ ବେଶ୍ ଗମ୍ଭୀର ପ୍ରକୃତିର ବ୍ୟକ୍ତିଭଳି ଜଣା ପଡୁଥିଲେ । ବେଶ୍ ମପାଚୁପା କଥା । ମନେ ହେଉଥିଲା, ନିଶ୍ଚୟ କଡା ମିଜାଜ୍‌ର ହୋଇଥିବେ । କିନ୍ତୁ ଉପରୁ ଟାଣ ମନେ ହେଉଥିବା ବ୍ୟକ୍ତି ହୃଦୟ ଯେ କଠିନ ଖୋଳପା ଭିତରେ ଥିବା ନଡ଼ିଆ ଶସ ପରି କୋମଳ ହୋଇପାରେ, ଏ କଥା ତାଙ୍କ ସହିତ ବାରମ୍ବାର ମିଶିଲା ପରେ ହିଁ ଅନୁଭବ କଲି ।

ନବରଂଗପୁର ବନଖଣ୍ଡ ଅଧିକାରୀ ହିସାବରେ ମୁଁ ଓ କୋରାପୁଟ ସର୍କଲର ସମସ୍ତ ଡି.ଏଫ୍.ଓ. ପତିସାହେବଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣେଇବାକୁ କୋରାପୁଟରେ ପହଞ୍ଚିଥିଲୁ । ଦେଖିଲି, ତିନିବର୍ଷ ଭିତରେ ସବୁ ପୁରୁଣା ଡି.ଏଫ୍.ଓ. ପ୍ରାୟ ବଦଳି ଗଲେଣି । ସେମାନଙ୍କ ସ୍ଥାନରେ ଅନେକ ନୂଆ ମୁହଁ । ନବରଂଗପୁର ବନଖଣ୍ଡର ଡି.ଏଫ୍.ଓ. ହିସାବରେ ମୋର କାର୍ଯ୍ୟକାଳ ସେତେବେଳକୁ ତିନିବର୍ଷରୁ ଉର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ ହୋଇ ସାରିଥାଏ । କେଉଁ ମୁହୂର୍ତ୍ତରେ ବଦଳି ଅର୍ଡର ଆସି ଯାଇପାରେ ।

ସତକୁ ସତ ମାସେ, ଦେଢ଼ମାସ ଭିତରେ ପ୍ରତୀକ୍ଷିତ ବଦଳି ଅର୍ଡର ଆସି ପହଞ୍ଚିଗଲା । ଭାବୁଥିଲି ଉପକୂଳ ଇଲାକାରେ ପୋଷ୍ଟିଙ୍ଗ ହେବ । କିନ୍ତୁ ବଦଳି ସେହି କୋରାପୁଟ ସର୍କଲ ଭିତରେ ରାୟଗଡ଼ା ଫରେଷ୍ଟ ଡିଭିଜନ୍‌କୁ ହୋଇଥିଲା । ଏହାର ଏକ କାରଣ ମଧ୍ୟ ଥିଲା । ରାୟଗଡ଼ାର ତତ୍‌କାଳୀନ ଡି.ଏଫ୍.ଓ. ଶ୍ରୀ ପ୍ରୀୟନାଥ ପାଢ଼ୀ ଥିଲେ କଞ୍ଚରଭେଟର ସଦାନନ୍ଦ ପତିଙ୍କର ମଧ୍ୟମ ଜାମାତା । ଶ୍ୱଶୁର, ଜ୍ୱାଇଁ ଏକାଠି ରହିବା, ବିଶେଷକରି ଶ୍ୱଶୁର ଅଧୀନରେ ଜ୍ୱାଇଁ କାମ କରିବା ଅସମୀଚୀନ ହୋଇଯିବା ମନେକରି, ମୋତେ ସେଠାକୁ ବଦଳି କରି ଦିଆଗଲା । ମୁଁ ହେଲି ବଳିକା ବକ୍‌ରା ।

୧୯୮୩ ମସିହା ଫେବୃୟାରୀ ମାସ ୧୬ ତାରିଖ ଦିନ ନବରଂଗପୁର ଡିଭିଜନ୍‌ର ଦାୟିତ୍ୱ ହସ୍ତାନ୍ତର କରି ସେହି ମାସ ୨୦ ତାରିଖ ଦିନ ରାୟଗଡ଼ାର କାର୍ଯ୍ୟଭାର ଗ୍ରହଣ କଲି ।

ମୋ'ଠାରୁ ନବରଂଗପୁର ଡିଭିଜନ୍‌ର କାର୍ଯ୍ୟଭାର ଗ୍ରହଣ କରିଥିଲେ ୧୯୭୮ ବ୍ୟାଚ୍‌ର ଆଇ.ଏଫ୍.ଏସ୍. ଅଫିସର ଶ୍ରୀ ଭାଗିରଥୀ ବେହେରା ।

ବିଦାୟ ନବରଂଗପୁର ।



# ସ୍ୱର୍ଣ୍ଣଚମ୍ପାର ସହର ରାୟଗଡ଼ା



ଏଠି ଲକ୍ଷେ ସ୍ୱର୍ଣ୍ଣଚମ୍ପାର ମହକ । ଏଠି ଦଣ୍ଡକାରଣ୍ୟରେ ଦେବସଭାର ଆସର । ଏଠି ବୋହି ଯାଉଛି ଛନ୍ଦାୟିତ ନାଗାବଳୀ ନଈ । ପାହାଡ଼ ଯେ ପାହାଡ଼- ହାତ ଧରାଧରି ହୋଇ ଠିଆ ଦିଗନ୍ତ ଯାଏ । ଢେଉ ଢେଉକା ପାହାଡ଼ ସବୁ ଶୀତ ସକାଳରେ ମଣ୍ଡି ହୋଇଯାନ୍ତି, ସୁନା ସୋରିଷିଆ ଅଳସୀ ଫୁଲର ଫୁଆରରେ । ବେଳ ବୁଡନ୍ତା ଜାଙ୍ଗୁଲୁ ଜାଙ୍ଗୁଲୁ ଅଂଧାର ମାଡ଼ି ଆସିଲା ବେଳକୁ ଏଠି ଅରଣ୍ୟର ଆଲିଙ୍ଗନ ଭିତରକୁ ଲମ୍ଫ ମାରେ ଜହ୍ନ । ଆରମ୍ଭ ହୋଇଯାଏ ଆଲୁଅ ଓ ଅନ୍ଧାରର ଛାଇ ଆଲୁଅ ଖେଳ । ପେନ୍‌ସିଲ୍ ପରି ସଳଖ, ଡେଙ୍ଗା, ଶାଳ ଜଙ୍ଗଲ, ମହୁଲ ବଣର ଅଧା ଛାଇ, ଅଧା ଆଲୁଅ ଭିତରେ ଜହ୍ନ ଖେଳେ ରୁମାଲ୍‌ଚୋରି ।

ସେହି ନାଗାବଳୀ ନଈ ଦାଢ଼ର ସହର, ମା' ମାଝି ଗୌରୀଙ୍କ ଆଶୀର୍ବାଦରେ ଧୌତ ରାୟଗଡ଼ା ଫରେଷ୍ଟ ଡିଭିଜନ୍‌କୁ ମୋର ବଦଳି ହେଲା ୧୯୮୩ ମସିହା ଫେବୃୟାରୀ ମାସରେ । ଦୀର୍ଘ ସାଢ଼େ ତିନିବର୍ଷରୁ ଊର୍ଦ୍ଧ୍ୱ ସମୟ, ଦାକ୍ଷିଣାଞ୍ଚଳରେ ଏକ ଉପାନ୍ତ ଡିଭିଜନ୍

ନବରଂପୁରରେ ଡି.ଏଫ୍.ଓ. ରହି ସାରିବା ପରେ ମୋ ପକ୍ଷେ ଆଶା କରିବା ନିହାତି ସ୍ୱାଭାବିକ ଏବଂ ମୁଁ ମଧ୍ୟ ଆଶା କରୁଥିଲି ଖୋର୍ଦ୍ଧା, ଅନୁଗୁଳ ବା ସମ୍ବଲପୁର ଭିତରୁ କୌଣସି ଏକ ବଡ଼ ଡ଼ିଭିଜନକୁ ବଦଳି ହୋଇଯିବ । କିନ୍ତୁ ଶେଷରେ ବଦଳି ହୋଇଥିଲା ଏହି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଉବୁଟୁବୁ ରାୟଗଡ଼ାକୁ ।

ନବରଂଗପୁର ବନଖଣ୍ଡର ଦାୟିତ୍ୱ ହସ୍ତାନ୍ତର କରି ମୁଁ ୧୯୮୩ ମସିହା ଫେବୃୟାରୀ ମାସ ୨୦ତାରିଖରେ ତତ୍‌କାଳୀନ ରାୟଗଡ଼ା ଡ଼ି.ଏଫ୍.ଓ. ଶ୍ରୀ ପ୍ରିୟନାଥ ପାଢ଼ୀଙ୍କ ଠାରୁ କାର୍ଯ୍ୟଭାର ଗ୍ରହଣ କଲି । ପ୍ରିୟନାଥ ବାବୁ ୧୯୭୭ ବ୍ୟାଚର ଆଇ.ଏଫ୍.ଏସ୍. ଅଫିସର୍ । ସେ ସମୟରେ କୋରାପୁଟ ବନମଣ୍ଡଳରେ ଅବସ୍ଥାପିତ କଞ୍ଜରଭେଟର ସଦାନନ୍ଦ ପତିଙ୍କର (ସଂପ୍ରତି ସ୍ୱଗତ) ସେ ଥିଲେ ଦ୍ୱିତୀୟ ଜାମାତା (ଦ୍ୱିତୀୟ ଝିଅ ନୀଳିମାଙ୍କର ସ୍ୱାମୀ) ।

ସେ ସମୟରେ ରାୟଗଡ଼ା ଅବିଭକ୍ତ କୋରାପୁଟ ଜିଲ୍ଲାର ଅଂଶବିଶେଷ ଥିଲା । ଛୋଟ ସହରଟି । ସବ୍ ଡିଭିଜନାଲ ମୁଖ୍ୟ ଦପ୍ତର । କୋରାପୁଟ ପଟୁ ଆସିଲେ, ଚିନି ଫ୍ୟାକ୍‌ଟରୀ ଠାରୁ ସହରର ଆରମ୍ଭ । ଆରପଟେ ରେଳଷ୍ଟେସନ ପାର ହୋଇଗଲେ ସହର ଶେଷ । ଅବଶ୍ୟ ଆଗକୁ ଆଠ କିଲୋମିଟର ଗଲେ ଜେ.କେ. କାଗଜକଳ ଓ କାରାଖାନାକୁ ଆଧାରକରି ଗଢ଼ି ଉଠିଥିଲା ଜେକେପୁର ସହର । ରାୟଗଡ଼ା ଷ୍ଟେସନ ମଧ୍ୟ ବିଶେଷ ବଡ଼ ରେଳଷ୍ଟେସନ ନଥିଲା । ସବ୍‌ଡ଼ିଭିଜନ୍‌ର ମୁଖ୍ୟ ଥିଲେ ଏସ.ଡି.ଓ., ଓଡ଼ିଶା ପ୍ରଶାସନିକ ସେବାର ବରିଷ୍ଠ ଅଧିକାରୀ । ସର୍ବଭାରତୀୟ ସ୍ତରରେ ଅଫିସର୍ କହିଲେ, କେବଳ ମାତ୍ର ଡ଼ି.ଏଫ୍.ଓ. ଡିଭିଜନାଲ ଫରେଷ୍ଟ ଅଫିସର ।

ରାୟଗଡ଼ା ବନାଞ୍ଚଳ ପରିସୀମା ମଧ୍ୟ ଥିଲା ବେଶ୍ ବ୍ୟାପକ । ଗୁଣୁପୁରୁ, ରାୟଗଡ଼ା ଓ କୋରାପୁଟ ସବ୍‌ଡିଭିଜନ୍‌କୁ ନେଇ ଗଠିତ ହୋଇଥିଲା ରାୟଗଡା ଫରେଷ୍ଟ ଡ଼ିଭିଜନ୍ । କୋରାପୁଟ ଜିଲ୍ଲାରୁ ଅଧାରୁ ଅଧିକ ଅଂଚଳ ଥିଲା ରାୟଗଡ଼ା ବନଖଣ୍ଡ ଅଧୀନରେ । ଅପେକ୍ଷାକୃତ ବେଶ୍ ବିଶାଳ ଓ ପରିବ୍ୟାପ୍ତ ଜଙ୍ଗଲ ଅଞ୍ଚଳର ଅଧିକାରୀ ଥିଲେ ଡି.ଏଫ୍.ଓ । ଆନ୍ଧ୍ର ପ୍ରଦେଶର 'ପଲାସା' ସୀମାନ୍ତବର୍ତ୍ତୀ ଗୁଣୁପୁରରୁ ଆରମ୍ଭକରି ପାର୍ବତୀପୁରମ୍ ନିକଟସ୍ଥ ଜିମିଡ଼ିପେଟା (ଜେମାଦେଇପେଣ୍ଠର ଅପଭ୍ରଂଶ) ବନ୍ଧଗାଁ, ନାରାୟଣପାଟଣା, ପଟାଙ୍ଗୀ ବ୍ଲକ୍‌ଦେଇ ବିଜୟନଗରମ୍ ଠାରୁ ରାୟପୁର ଯାଉଥିବା ରାଜପଥ ଉପରେ ଆନ୍ତଃରାଜ୍ୟ 'ସୁନ୍‌କି' ଚେକ୍‌ଗେଟ୍ । ସେପଟେ ଆନ୍ଧ୍ରର 'ଆରାକୁ' ଉପତ୍ୟକାକୁ ଲାଗିଥିବା ନନ୍ଦପୁର ବ୍ଲକ୍‌ର ପାଡୁଆ, ଚଟୁଆ ଆଦି ସୀମାବର୍ତ୍ତୀ ଅଞ୍ଚଳ ରାୟଗଡ଼ା ଫରେଷ୍ଟ ଡିଭିଜନ୍ ଅନ୍ତର୍ଗତ ଥିଲା ।

ଅନ୍ୟପଟେ କଳାହାଣ୍ଡି ଜିଲ୍ଲାର ଥୁଆମୂଳ ରାମପୁର ବ୍ଲକ୍‌କୁ ଲାଗି ରହିଥିଲା ଡିଭିଜନ୍‌ର କାଶୀପୁର ବ୍ଲକ୍ ଏବଂ ନିୟମଗିରି ପାହାଡ଼ କଡ଼ରେ ଡାବୁଗାଁ ଏବଂ ସାମାନ୍ୟ ଆଗକୁ ମୁନିଗୁଡ଼ା ବ୍ଲକ୍ । କଳାହାଣ୍ଡି, କନ୍ଧମାଳ ଓ ଗଂଜାମ ଏହି ତିନିଜିଲ୍ଲାର ତ୍ରିସୀମାକୁ ଲାଗିଥିଲା ଉପାନ୍ତ ଚନ୍ଦ୍ରପୁର ବ୍ଲକ୍ । ଶାଳ, ଅସନ, ମହୁଲ ଓ ବାଉଁଶ ଜଙ୍ଗଲରେ ଭରା ଅକ୍ଷତ ଚନ୍ଦ୍ରପୁର ବ୍ଲକ୍ । କୋରାପୁଟ ଜିଲ୍ଲାର ସଦର ମହକୁମା କୋରାପୁଟ ସହର ମଧ୍ୟ ରାୟଗଡ଼ା ବନଖଣ୍ଡ ଅନ୍ତର୍ଭୁକ୍ତ ଥିଲା । ସେଠାରେ ଥିଲା କୋରାପୁଟ ବନମଣ୍ଡଳର ବନସଂରକ୍ଷକଙ୍କ ଦପ୍ତର । ଅବିଭକ୍ତ କୋରାପୁଟ, କଳାହାଣ୍ଡି ଏବଂ ବଲାଙ୍ଗୀର ଜିଲ୍ଲାରେ ଥିବା ବନାଞ୍ଚଳ ଅଧିକାରୀମାନଙ୍କର କାର୍ଯ୍ୟକଳାପର ତଦାରଖ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା ।

ରାୟଗଡ଼ା ଫରେଷ୍ଟ ଡିଭିଜନର ଭୌଗୋଳିକ ବିଶାଳତା ପରି ବିଶାଳ ଥିଲା ଡି.ଏଫ୍.ଓ.ଙ୍କର ବାସଭବନ ହତା ଓ ତା'ର ବିସ୍ତୃତ ପରିସୀମା । ପ୍ରାୟ ଦୁଇ ବା ଅଢ଼େଇ ଏକର ପରିମିତ ଅଂଚଳରେ ସୃଷ୍ଟି କରାଯାଇଥିବା କୃତ୍ରିମ ଜଙ୍ଗଲ ଓ ଗଛଲତାର ଗହଳି ଭିତରେ, ଠିକ୍ ମଝାମଝି ରହିଥିଲା ଡିଏଫ୍‌ଓଙ୍କର ବଙ୍ଗଳା ସଦୃଶ ବାସଭବନ । ଆକୃତିରେ ବେଶୀ ବଡ଼ ନୁହେଁ । ମାତ୍ର ଦୁଇଟି ବେଡ୍‌ରୁମ୍, ଲମ୍ବାଳିଆ ଡ୍ରଇଁ କମ୍ ଡାଇନିଙ୍ଗ୍ । ପଛପଟ ବେଡରୁମ୍‌କୁ ଲାଗି ରହିଛି ଅଫିସ୍‌ରୁମ୍ । ରେସିଡେନ୍‌ସିଆଲ୍ ଅଫିସ୍ । ରୋଷେଇ ଘର, ଷ୍ଟୋର ରୁମ୍, କାଠ ରଖିବା ଘର, ପାଣି ଗରମ କରିବା ପାଇଁ କାଠ ଚୁଲି ଇତ୍ୟାଦି ଇତ୍ୟାଦି । ପଛପଟ ସିମେଣ୍ଟ ଅଗଣାର ଗୋଟେ କଡ଼କୁ ବାଥ୍‌ରୁମ୍‌ଟିଏ, ପିଅନ ଡ୍ରାଇଭରମାନେ ବ୍ୟବହାର କରନ୍ତି । ବାଥ୍‌ରୁମ୍‌ର ଅନତିଦୂରରେ ଅଗଣା ମଝିରେ ବିଶାଳକାୟ ବହୁ ପୁରାତନ ପଣସ ଗଛଟିଏ । ବୈଶାଖ ମାସରେ ଗଛର ଗଣ୍ଡିସାରା ଶହ ଶହ ପଣସରେ ଭରିଯାଏ, ଆଖପାଖ ଅଞ୍ଚଳର ସମସ୍ତେ ଆସି ଡି.ଏଫ୍.ଓ.ଙ୍କ ହତାରୁ ପଣସ ମାଗି ନିଅନ୍ତି ।

ବାସଭବନରେ ପହଞ୍ଚିବାକୁ ହେଲେ ପ୍ରଥମେ ଗୋଟିଏ ଗେଟ୍ ପାର୍ ହୋଇ କିଛି ବାଟ ଯିବାକୁ ପଡେ । କଚ୍ଚାରାସ୍ତାର ଦୁଇଟି କଡ଼ରେ ଆକାଶିଆ, ଜାକାରଣ୍ଡା ଗଛର ଜଙ୍ଗଲ । ଡେଙ୍ଗା ଡେଙ୍ଗା ବଢ଼ିଥିବା ଏହି ଗଛଗୁଡ଼ିକ ଖରାଦିନେ ଯଥାକ୍ରମେ ହଳଦିଆ ଓ ବାଇଗଣୀ ରଂଗର ଫୁଲରେ ଭର୍ତ୍ତି ହୋଇଯାଏ । ଏହି ଛାୟା ପ୍ରଦାନକାରୀ ଗଛର ତଳେ ତଳେ ଲଗାଯାଇଥିଲା ଅସଂଖ୍ୟ କଫିଗଛ । କଫି ବଗିଚା କହିଲେ ଅତ୍ୟୁକ୍ତି ହେବନାହିଁ । ଏସବୁ ପାର ହେଲେ ପଡ଼ିବ ଦ୍ୱିତୀୟ ଗେଟ୍ ଏବଂ ତା ପଛକୁ ବିରାଟକାୟ ଗୋଲାକୃତି ଲନ୍ ଓ ଫୁଲବଗିଚା । ଲନ୍ ଚାରିକଡ଼ରେ ଗୋଲାକାର ମଲ୍ଲୀ ଗଛର ବାଡ଼ । ଲନ୍‌ର

ଗୋଟେ କଡ଼କୁ ବିରାଟ ଚମ୍ପା ଗଛଟିଏ । ମାଟିଠାରୁ ଦୁଇଫୁଟ ଉଚ୍ଚତାରୁ ଗଛଟି ଶାଖା ପ୍ରଶାଖା ମେଲିଛି । ଫୁଲ ଫୁଟିବା ଋତୁରେ ହଳଦୀ ଗୁରୁଗୁରୁ ଚମ୍ପା ଫୁଲରେ ସାରା ଗଛ ମଣ୍ଡି ହୋଇଯାଏ । ମହକରେ ଖଣ୍ଡମଣ୍ଡଳ ମହକି ଉଠେ । ସଂକ୍ଷେପରେ କହିଲେ ସୁଗନ୍ଧିତ ଚମ୍ପାଫୁଲ ଏବଂ ସୁସ୍ୱାଦୁ ପଣସ ଫଳ ପାଇଁ ରାୟଗଡ଼ା ଡି.ଏଫ୍.ଓ.ଙ୍କର ବାସଭବନ, ପାଖ ଆଖର ଲୋକମାନଙ୍କ ପାଇଁ ଏକ ଆକର୍ଷଣ ଥିଲା ।

ଅଗଣା ପଛପଟକୁ ବିରାଟ ଏକ ବାରି । କଦଳୀ, ଆତ, ଅମୃତଭଣ୍ଡା, ସଜନା, ପିଜୁଳି, ଆମ୍ବ ଆଦି ଗଛରେ ଭରା । ମଝି ଅଂଶରେ ପନିପରିବା ଚାଷ କରାଯାଏ । ବାଡ଼ି ପଛକୁ କମ୍ପାଉଣ୍ଡ ୱାଲ୍ ।

ରାୟଗଡ଼ାରେ ଜଏନ୍ କରିବାର ଅବ୍ୟବହିତ ପରେ, ମୁଁ ପୁଅକୁ ସ୍ଥାନୀୟ 'ସାକ୍ରେଡ଼ ହାର୍ଟ' କନ୍‌ଭେଣ୍ଟ ସ୍କୁଲ୍‌ର ନର୍ସରୀ କ୍ଲାସ୍‌ରେ ଆଡମିଶନ କରାଇଦେଲି । ପୁଅ ସେବେକୁ ତିନିବର୍ଷର ହୋଇ ସାରିଥାଏ । ସକାଳ ସାଢ଼େ ଆଠଟା ବେଳକୁ ରାମୁଲୁ ବା ଗୋପାଳ କେହି ଜଣେ ତାକୁ ସାଇକେଲ୍‌ରେ ବସାଇ ସ୍କୁଲ୍‌ରେ ପହଞ୍ଚାଇଦିଏ । ଗୋଟାଏ ବେଳକୁ ସ୍କୁଲ୍ ଛୁଟି ହେଲାପରେ ଘରକୁ ଫେରେଇ ଆଣେ । ପାଚେରି ପରିବେଷ୍ଟିତ ବିରାଟ ଏକ କମ୍ପାଉଣ୍ଡ ଭିତରେ ଡି.ଏଫ୍.ଓ ଙ୍କ ବାସଭବନ ରହିଥିବାରୁ ପାଖ ଆଖର ବା ସାହି ପଡ଼ିଶାର କୌଣସି ସମବୟସ୍କ ପିଲାଙ୍କ ସହିତ ମିଶିବାର ସୁଯୋଗ ତା'ର ନଥାଏ । ତେଣୁ ଅଧିକାଂଶ ଦିନ ଅପରାହ୍ଣରେ ମୁଁ ଓ ମୋ ସ୍ତ୍ରୀ ତା ସହିତ ଖେଳିବାରେ ବିତାଇ ଦେଉ । ଘର ସାମ୍ନା ଫୁଲ ବଗିଚା ଭିତରେ ଗୋଲାକାର ବିସ୍ତୃତ ଘାସର ଲନ୍ । ଘାସ ଲନ୍‌ର ଠିକ୍ ମଝିରେ କମ୍ ଗୋଲେଇର ସିମେଣ୍ଟ ଚଉତରାଟାଏ । ପ୍ରାୟତଃ ଅପରାହ୍ଣରେ ଆମେ ସେଠି ବସି ଚା' ପିଉ । ସେ ସମୟତକ ଆମ ଚାରିକଡ଼ରେ ତିନିଚକିଆ ସାଇକେଲ୍‌ଟିଏ ଚଲାଇ ପୁଅ ଚକ୍‌କର ଲଗାଉଥାଏ । ନଚେତ୍ ମାଟି ଉପରୁ ଅଳ୍ପ ଛାଡ଼ି ବଢ଼ିଥିବା ଚମ୍ପାଗଛଟିର ଗୋଟିଏ ବିସ୍ତାରିତ ଶାଖା ଉପରେ ତାକୁ ବସେଇ ଦେଇ, ଆମେ ତା ସହିତ କଉତୁକିଆ ଖେଳ ଖେଳୁ ।

ମୁଁ ଟୁର୍‌ରେ ବାହାରକୁ ଚାଲିଗଲେ, ଏତେ ବଡ଼ ହତା ଭିତରେ ଥିବା ଘରଟିରେ ଏକାକୀ ନିଃସଂଗ ହୋଇ ଯାଆନ୍ତି ସ୍ତ୍ରୀ'। ପାଖ ଆଖରେ ସାହି ପଡ଼ିଶା ମଧ୍ୟ କେହି ନଥାନ୍ତି, ଯାହାଙ୍କ ସହିତ ଗପସପ କରି ସମୟ ବିତାଇ ହେବ । ତେଣୁ ଅଧିକାଂଶ ସମୟରେ ବିଶେଷ କିଛି ଅସୁବିଧା ନଥିଲେ, ମୁଁ ଟୁର୍‌ରେ ଗଲା ବେଳେ ସ୍ତ୍ରୀ ଓ ପୁଅକୁ ସାଙ୍ଗରେ ନେଇଯାଏ । କିନ୍ତୁ ପୁଅର ସ୍କୁଲ୍ ଥିବା ଦିନ ଏହା ସଂଭବ ହୁଏ ନାହିଁ ।

ମୁଁ ରାୟଗଡ଼ା ବନ ବିଭାଗରେ ଯୋଗ ଦେଲା ବେଳକୁ ସେଠାକାର ଡିଭିଜନ୍ ଅଫିସ୍ ଏବଂ ରେଂଜ ଅଫିସ୍ ଷ୍ଟାଫ୍‌ମାନଙ୍କ ଭିତରେ ଏକ ଉତ୍ସବର ମାହୋଲ ଭରିଯାଇଥାଏ । ରାୟଗଡ଼ା ବନଖଣ୍ଡ ପ୍ରତିଷ୍ଠାର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ସମସ୍ତେ ରଜତ ଜୟନ୍ତୀ ଉତ୍ସବ ପାଳନ ପାଇଁ ଅଡ଼ି ବସିଥାନ୍ତି । କେବଳ ମୋର ସମ୍ମତିକୁ ଅପେକ୍ଷା କରିଥାନ୍ତି । ମୁଁ ମଧ୍ୟ ସେମାନଙ୍କ ସହିତ ମିଶି ଉତ୍ସବ ମନସ୍କ ହୋଇଗଲି ।  ସେତେବେଳେ ହେଡ୍‌କ୍ୱାର୍ଟର୍ସ ରେଂଜର ରେଞ୍ଜ ଅଫିସର୍ ଥାନ୍ତି ଶ୍ରୀ ପ୍ରମୋଦ କୁମାର ଜେନା । ମୁଁ ପୂର୍ବରୁ ନବରଂଗପୁର ବନଖଣ୍ଡ ଦାୟିତ୍ୱରେ ଥିଲାବେଳେ ସେ ମୋ ଅଧୀନରେ କୋଟପାଡ଼ ରେଂଜ ଅଫିସର ଥିଲେ । ତେଣୁ ଆଗରୁ ତାଙ୍କ ସହିତ ଜଣାଶୁଣା । ଡ୍ରାମା, ନାଚ, ଗୀତ ଆୟୋଜନରେ ସେ ଧୁରନ୍ଧର, ସମସ୍ତ ସହକର୍ମୀଙ୍କୁ ଜୁଟାଇ ରଜତ ଜୟନ୍ତୀ ଉପଲକ୍ଷେ ଡ୍ରାମାଟିଏ ଉପସ୍ଥାପନା କରିବାପାଇଁ ସେ ଲାଗି ପଡ଼ିଥାନ୍ତି । ଏହା ବ୍ୟତୀତ ସେମିନାର୍, ଆଲୋଚନାଚକ୍ର, ବନ୍ୟଜନ୍ତୁ ପ୍ରଦର୍ଶନୀ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ସହିତ ବିରାଟ ସାଧାରଣ ସଭାର ମଧ୍ୟ ଆୟୋଜନ କରାଯାଇଥାଏ ।

ରାୟଗଡ଼ା ଫରେଷ୍ଟ ଡିଭିଜନ୍‌ରେ ପୂର୍ବରୁ ଅବସ୍ଥାପିତ ଥିବା ସମସ୍ତ ପ୍ରାକ୍ତନ ଡି.ଏଫ୍.ଓ. ଏବଂ ବନ ବିଭାଗର ଅନ୍ୟ କେତେକ ବରିଷ୍ଠ ଅଧିକାରୀଙ୍କୁ ରଜତ ଜୟନ୍ତୀ ଉତ୍ସବ ତଥା ଆଲୋଚନାଚକ୍ରରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଯାଇଥାଏ । ରାୟଗଡ଼ାର ଜନୈକ ପୂର୍ବତନ ଡି.ଏଫ୍.ଓ. ଯେକି ସେତେବେଳକୁ ବେଶ୍ ସିନିୟର ହୋଇସାରିଥାନ୍ତି ଏବଂ କଞ୍ଜରଭେଟର ପଦବୀକୁ ପଦୋନ୍ନତି ପାଇବା ଅପେକ୍ଷାରେ ଥାନ୍ତି; ସେ ମହାଶୟ କହି ବୁଲିଲେ, ସରକାରୀ ଅନୁମତି ହାସଲ ନକରି ଏପରି ଉତ୍ସବ କରିବା ନିୟମ ପରିପନ୍ଥୀ । ତାଙ୍କର ବ୍ୟଙ୍ଗୋକ୍ତି ଥିଲା, ପ୍ରସିଦ୍ଧ ପ୍ରାଣୀ ଉଦ୍ୟାନ 'ନନ୍ଦନ କାନନ'ର ରଜତ ଜୟନ୍ତୀ ଉତ୍ସବ ପାଳନ ହେଲାନାହିଁ । ଅଥଚ ରାୟଗଡ଼ା ଡିଭିଜନର ରଜତ ଜୟନ୍ତୀ ମନାଇବା ପାଇଁ ଟୋକା ଆଇ.ଏଫ୍.ଏସ୍. ଡି.ଏଫ୍.ଓ. ବାହାରି ପଡ଼ିଲେ । କଥାଟା ଏ କାନରୁ ସେକାନ ହୋଇ ଆମ୍ଭମାନଙ୍କ ପାଖରେ ମଧ୍ୟ ପହଞ୍ଚିଲା ।

ଏପରି ସମାଲୋଚନାରେ ମୁଁ ବ୍ୟସ୍ତ ହୋଇ ପଡ଼ିବା ସ୍ୱାଭାବିକ । କାରଣ ଚାକିରିରେ ମୋର ଅଭିଜ୍ଞତା ସେତେବେଳକୁ ମାତ୍ର ସାଢ଼େ ତିନିବର୍ଷରୁ ଚାରିବର୍ଷ । କୋରାପୁଟ କଞ୍ଜରଭେଟର ପତି ମହାଶୟଙ୍କୁ (ସଂପ୍ରତି ସ୍ୱଗତ) ଏ ବିଷୟ ଜଣାଇଲି । ସେ ମୋତେ ଅଦୌ ବ୍ୟସ୍ତ ନ ହେବା ପାଇଁ ପରାମର୍ଶ ଦେଲେ । ଉତ୍ସବ ପାଳନର ଯଥାର୍ଥତା ପ୍ରତିପାଦିନ

କରି, ନିଜ ତରଫରୁ ଖଣ୍ଡିଏ ଅର୍ଦ୍ଧସରକାରୀ ଚିଠି ଲେଖିଲେ ଓ ଚିଠି ସହିତ ମୋତେ କଟକ ଯାଇ ତତ୍‌କାଳୀନ ବନ ବିଭାଗର ବନସଂରକ୍ଷକ ପଦାରବିନ୍ଦ ମହାପାତ୍ରଙ୍କୁ (ବର୍ତ୍ତମାନ ସ୍ୱଗତ) ଭେଟିବାକୁ ପରାମର୍ଶ ଦେଲେ ।

ପତି ବାବୁଙ୍କ ଚିଠି ପଢ଼ିଲାପରେ ଏବଂ ମୋ'ଠାରୁ ସମସ୍ତ ବିଷୟ ଶୁଣି ପଦାରବିନ୍ଦ ବାବୁ ସେକ୍ରେଟାରୀଙ୍କ ସହ କଥାବାର୍ତ୍ତା କରି ସରକାରୀ ଅନୁମୋଦନ ଆଶାକରି ରଜତଜୟନ୍ତୀ ସମାରୋହ ଆୟୋଜନ କରିବା ପାଇଁ ମୋତେ ଲିଖିତ ଅନୁମତି ପ୍ରଦାନକଲେ । ମୁଖ୍ୟ ସଂରକ୍ଷକ ପଦାରବିନ୍ଦବାବୁ ନିଜେ ଜଂଗଲ ବିଭାଗ ମନ୍ତ୍ରୀଙ୍କ ସହିତ ଆସି ଉତ୍ସବରେ ଯୋଗଦେବା ପାଇଁ ନିର୍ଭର ପ୍ରତିଶ୍ରୁତି ଦେଲେ । ଏହା ବ୍ୟତୀତ ବିଗତ ପଚିଶ ବର୍ଷ ଭିତରେ ରାୟଗଡ଼ାର ଡି.ଏଫ୍.ଓ ଥିବା ସମସ୍ତ ବିଭାଗୀୟ ଅଧିକାରୀମାନଙ୍କୁ ମଧ୍ୟ ସରକାରୀ ଗସ୍ତରେ ଆସି ରଜତଜୟନ୍ତୀ ଉତ୍ସବରେ ଯୋଗଦେବା ନିମନ୍ତେ ନିର୍ଦ୍ଦେଶନାମା ଜାରି କଲେ । ଉତ୍ସବ ଦିନ ବ୍ୟାପକ ବର୍ଷା ଓ ବନ୍ୟାଯୋଗୁଁ ରାୟଗଡ଼ାକୁ ଯୋଗାଯୋଗ ବିଚ୍ଛିନ୍ନ ହୋଇଥିବା ସତ୍ତ୍ୱେ ସେ ମହାଶୟ ବିଭାଗୀୟ ମନ୍ତ୍ରୀଙ୍କୁ ଧରି, ଆନ୍ଧ୍ରପଟେ ବୁଲି ବୁଲି ଆସି ସଭାକାର୍ଯ୍ୟରେ ଯୋଗଦାନ କରିଥିଲେ ।

ମୁଁ ନବରଂଗପୁରର ଡ଼ି.ଏଫ.ଓ. ଥିବା ସମୟରେ ଆଗରୁ ଥରେ ପଦାରବିନ୍ଦ ବାବୁ ସସ୍ତ୍ରୀକ ଅର୍ଥାତ୍ ସ୍ତ୍ରୀ ଶ୍ରୀମତୀ ମନୋରମା ମହାପାତ୍ରଙ୍କ ସହିତ ଆସି ଆମ ବାସଭବନରେ ପହଞ୍ଚିଥିଲେ । ଜନୈକ ଆଡ୍‌ଭୋକେଟଙ୍କ ପୁତ୍ର ସହିତ ପଦାରବିନ୍ଦବାବୁଙ୍କ ଝିଅର ବିବାହ ପ୍ରସ୍ତାବ ପଡ଼ିଥିଲା । ବରପାତ୍ର ଶ୍ରୀମାନ୍ ଅରୁଣକୁମାର ମିଶ୍ର ନିକଟରେ ଭାରତୀୟ ପ୍ରଶାସନିକ ସେବା ପରୀକ୍ଷାରେ କୃତିତ୍ୱ ହାସଲ୍ କରି ମସୌରୀରେ ଟ୍ରେନିଂ ନେଉଥିଲେ । ବିବାହ ପ୍ରସ୍ତାବ ସଂପର୍କରେ ଆଲୋଚନା କରିବା ବ୍ୟତୀତ ଶ୍ରୀମତୀ ମନୋରମା ଦେବୀଙ୍କର ଅପରାହ୍ନରେ ଆକାଶବାଣୀ ଜୟପୁର କେନ୍ଦ୍ର ଆନୁକୂଲ୍ୟରେ କୋଟପାଡ଼ଠାରେ ଉତ୍କଳଦିବସ ଅବସରରେ ଆୟୋଜିତ ଏକ କବି ସମ୍ମିଳନୀରେ ଯୋଗଦେବାର କାର୍ଯ୍ୟକ୍ରମ ଥାଏ ।

କିନ୍ତୁ କୌଣସିମତେ ସରକାରୀ କାର୍ଯ୍ୟ ଅବସରରେ ବନବିଭାଗର ସର୍ବୋଚ୍ଚ କର୍ତ୍ତା ପଦାରବିନ୍ଦ ବାବୁଙ୍କ ସହିତ, ମୋର ଏହା ଥିଲା ଦ୍ୱିତୀୟ ସାକ୍ଷାତ । ମୋର ଏତେ ବଡ଼ ସମସ୍ୟାକୁ ଏତେ ସହଜରେ ସେ ସମାଧାନ କରିଦେଲେ ଏହା ବିଶ୍ୱାସ ହେଉନଥିଲା । ମୋତେ ଅଭିଭୂତ କରିଥିଲା, ତାଙ୍କର ପ୍ରତ୍ୟୁତ୍ପନ୍ନମତି, କାର୍ଯ୍ୟଶୈଳୀ ଓ କାର୍ଯ୍ୟଦକ୍ଷତା । ମୁଁ ସେତେବେଳେ କେବଳ କବିତା ଲେଖୁଥିଲି, କିନ୍ତୁ ତାଙ୍କରି ପରାମର୍ଶରେ ଜଂଗଲ, ବନ୍ୟ

ଜୀବନ ଓ ବନ୍ୟଜୀବଜନ୍ତୁଙ୍କ ବିଷୟରେ ଲେଖିବାକୁ ଆରମ୍ଭ କଲି । ସରକାରୀ ଚାକିରିରୁ ଅବସର ନେବାପରେ, ପଦାରବିନ୍ଦବାବୁ ଯେବେ 'ସମାଜ' ଖବରକାଗଜର ମୁଖ୍ୟ ପରିଚାଳକ ଭାବରେ ଅବସ୍ଥାପିତ ହେଲେ, ସେବେ 'ସମାଜ'ପାଇଁ ଲେଖାପଠାଇବାକୁ ମୋତେ ସେ ରୀତିମତ ଫୋନ୍‌ରେ ତାଗିଦ୍ କରୁଥିଲେ । ସେ ସମୟରେ ପକ୍ଷୀମାନଙ୍କ ଉପରେ ମୋ ଲିଖିତ ଅନେକ ପ୍ରବନ୍ଧ 'ସମାଜ'ର ରବିବାସରୀୟ ସଂସ୍କରଣ 'ଶିଶୁସାହିତ୍ୟ' ବିଭାଗରେ ପ୍ରକାଶ ପାଇଥିଲା । ପରେ ସେ ସବୁ ସଂକଳିତ ହୋଇ 'ଆମ ରାଇଜ ଆମ ପକ୍ଷୀ' ପୁସ୍ତକ ଆକାରରେ ପ୍ରକାଶ ପାଇଛି ।

ରାୟଗଡ଼ା ଫରେଷ୍ଟ ଡିଭିଜନ୍‌ରେ ବନାଞ୍ଚଳ ଅଧିକାରୀ ଭାବେ ଯୋଗଦେବାର ତିନୋଟି ମାସ ପୂରି ନଥାଏ । ଅଫିସ୍‌ରେ ବସି ବିଗତ ମାସର ହିସାବପତ୍ର ଯାଞ୍ଚ୍ କରୁଥିବା ବେଳେ, ଗୋଟିଏ ଭାଉଚର୍ ଦେଖି କୌତୂହଳଜନକ ମନେହେଲା । ଭାଉଚର୍‌ଟି ମୁନିଗୁଡ଼ା ରେଞ୍ଜ ଅଫିସର୍‌ଙ୍କ ଏବଂ ତାହା ଥିଲା 'ହାତୀ ଉପଦ୍ରବ' ପାଇଁ ବାଣ ଖରିଦ- ଟ ୧୨୦ଙ୍କା (ଏକଶତ କୋଡ଼ିଏ ଟଙ୍କା) ।

ଅନୁସନ୍ଧାନରୁ ଜଣାପଡ଼ିଲା, ପ୍ରତିବର୍ଷ ମୁନିଗୁଡ଼ା ରେଞ୍ଜ ଅନ୍ତର୍ଗତ 'ଚନ୍ଦ୍ରପୁର' ସେକ୍‌ସନ୍‌ରେ ହାତୀ ଉପଦ୍ରବ ଘଟିଥାଏ । ବିଶେଷକରି କ୍ଷେତରେ ଧାନ ପାକଳ ହେବା ସମୟରେ ପଲପଲ ହାତୀ ମାଡ଼ି ଆସି ଫସଲ ସବୁ ନଷ୍ଟ କରିଦିଅନ୍ତି । ସେହିପରି ନାଳ କୂଳର ଆଖୁ କିଆରିରେ ପଶି ଫସଲ ଉଜାଡ଼ି ଦିଅନ୍ତି । ଏହି ପରିସ୍ଥିତିରେ ଜଙ୍ଗଲ ବିଭାଗ ତରଫରୁ ନିଯୁକ୍ତ କୋଡ଼ିଏ, ପଚିଶ ଜଣ ଲୋକ ତାଳଫୋଟକା ବମ୍ ଇତ୍ୟାଦି ବାଣ ଏବଂ ଢୋଲ, ଟମକ ବାଜା ସହ ଚନ୍ଦ୍ରପୁରରେ ପହଞ୍ଚନ୍ତି । ତାପରେ ଆରମ୍ଭ ହୁଏ ହାତୀ ଘଉଡାଇବା କାମ । 'ଢୋଲ, ଟମକ, ଡ୍ରମ ବାଜା ଓ ଟିଣ ମାଡ଼ ସାଙ୍ଗକୁ ବାଣ ଫୁଟିବାର ଢୋ ଢୋ ଶବ୍ଦ । ଏହା ସହିତ ଗାଁର ଶହ ଶହ ଲୋକଙ୍କର ସମ୍ମିଳିତ ହୋହଲ୍ଲା, ଚିତ୍କାର ଏବଂ ନିଆଁ ହୁଳାର ପଟୁଆର । ଭୟରେ ହାତୀମାନେ ଦୂରକୁ ଅପସରିଯାନ୍ତି ।

ଚନ୍ଦ୍ରପୁର ଗାଁର ଲୋକମାନଙ୍କ ସହିତ କଥାବାର୍ତ୍ତା କରି ହାତୀ ଉପଦ୍ରବ ବିଷୟରେ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରିବା ନିମନ୍ତେ ମୁଁ ସେଠାକୁ ଯିବାକୁ ମନସ୍ଥ କଲି । ମୁନିଗୁଡ଼ାଠାରୁ ତୁମୁଡ଼ିବନ୍ଧ ରାସ୍ତାରେ କିଛି ବାଟ ଗଲେ, ଡାହାଣପଟକୁ ଅଧା ପିଚୁ, କଚ୍ଚା ଅଣଓସାରିଆ ରାସ୍ତାଟିଏ ଡାଙ୍ଗସୁରୁଡ଼ା ଦେଇ ଚନ୍ଦ୍ରପୁର ଯାଇଛି । ଡାଙ୍ଗସୁରୁଡ଼ା ପର୍ଯ୍ୟନ୍ତ ରାସ୍ତା ଏକ ପ୍ରକାର ଭଲ ଓ ସବୁଦିନିଆ ରାସ୍ତା । ସେଠି ଜଣେ ଫରେଷ୍ଟର ରୁହନ୍ତି ଓ ଫରେଷ୍ଟ ଚେକ୍‌ଗେଟ୍‌ଟିଏ

ମଧ୍ୟ ଅଛି । ମୁନିଗୁଡା ରେଞ୍ଜ ଅଧୀନରେ ଚନ୍ଦ୍ରପୁର ଗୋଟିଏ ଫରେଷ୍ଟ ସେକ୍‌ସନ୍ । ଡାଙ୍ଗସୁରୁଡ଼ା ଛକଠାରୁ ଦୁଇକିଲୋମିଟର ଗଲେ ପଡ଼ିବ ହନୁମନ୍ତପୁର ନାଳ । ଠିକ୍ ନାଳ ଆରପଟକୁ ରେଭେନ୍ୟୁ ଡାକବଂଗଳାଟିଏ ଅଛି । ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ସେଇଠି ହୋଇଥାଏ ।

ହନୁମନ୍ତପୁର ନାଳ ଓସାରରେ କ୍ଷୀଣକାୟ ହେଲେ ମଧ୍ୟ ବର୍ଷାଦିନେ ଏହାର ସୁଅ ଖୁବ୍ ପ୍ରଖର । ନାଳ ଶଯ୍ୟାରେ ବଡ଼ ବଡ଼ ପଥର ଖଣ୍ଡମାନ ଚଟାଣ ସଦୃଶ ରହିଛି । ପଥର ସନ୍ଧିମାନଙ୍କରେ ଥିବା ଖୋଲରେ ଖରାଦିନେ ମଧ୍ୟ ପାଣି ରୁହେ । ବଂଗଳା ଚୌକିଦାର କହୁଥିଲା- ବେଳେ ବେଳେ ଅପରାହ୍ନରେ ତଥା ମୁହଁସଂଜ ବେଳେ ଏଭଳି ପାଣିଥିବା ଜାଗାମାନଙ୍କରେ ହାତୀପଲଙ୍କୁ ଦେଖିବାକୁ ମିଳେ । ହନୁମନ୍ତପୁର ନାଳ ଉପରେ ଥିବା କାଠ ପୁଲିଆଟି ଭାଙ୍ଗି ପଡ଼ିଥିଲେ ମଧ୍ୟ ବାଉଁଶ କମ୍ପାନୀ ତରଫରୁ ବାଉଁଶ କାଢ଼ିବାପାଇଁ ଗୋଟିଏ ଖରାଦିନିଆ ରାସ୍ତା ନାଳ ଶଯ୍ୟାରେ ତିଆରି ହୋଇଥାଏ । ସେହି ରାସ୍ତାରେ ଆମେ ଜିପ୍‌ରେ ସିଧାସଳଖ ଯାଇ ଚନ୍ଦ୍ରପୁରରେ ପହଞ୍ଚିଲୁ ।

ଆମେ ଚନ୍ଦ୍ରପୁରରେ ପହଞ୍ଚିଲା ବେଳକୁ ସେଠିକାର ବନରକ୍ଷୀ ଗାଁର ଲୋକମାନଙ୍କୁ ଗୋଟିଏ ପ୍ରାଇମେରୀ ସ୍କୁଲ ଘରେ ଠୁଳ କରିଥିଲା । ସେମାନଙ୍କ ଭିତରେ ଦୁଇ ତିନି ଜଣ ପୁରୁଣା କାଳିଆ ମଧ୍ୟ ଥିଲେ, ଯେଉଁମାନଙ୍କର ବୟସ ଷାଠିଏ ବା ସତୁରିରୁ ଅଧିକ ହେବ । ସେମାନେ ଆଗ କାଳର ଘଟଣା ସବୁ ବଖାଣୁଥିଲେ । ପୂର୍ବରୁ ଏହି ଚନ୍ଦ୍ରପୁର ଅଞ୍ଚଳ ଜୟପୁର ସଂସ୍ଥାନ ଅଧୀନରେ ଥିଲା । ସେ ସମୟରେ ପ୍ରତିବର୍ଷ ହାତୀ ଧରିବା ନିମନ୍ତେ ଏଠିକାର ଅଧିବାସୀମାନଙ୍କୁ ଜୟପୁର ମହାରାଜାଙ୍କ ତରଫରୁ ରୀତିମତ ଖଂଜା ଦିଆଯାଉଥିଲା । ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ଅର୍ଥାତ୍ ଧାନପାଚି ପାକଳ ହେବା ସମୟରେ ଦଳଦଳ ହାତୀ ପଲ ଏ ଅଞ୍ଚଳକୁ ଆସି ଉପଦ୍ରବ ଆରମ୍ଭ କରିଥାନ୍ତି । ଏହି ସମୟରେ ହାତୀମାନଙ୍କ ଯିବା ଆସିବା ରାସ୍ତାରେ ଖେଦା କରାଯାଏ ବା ବଡ଼ ବଡ଼ ଗାତ ଖୋଳି ଡାଳପତ୍ର ଘୋଡ଼େଇ ଦିଆଯାଏ । ହାତୀମାନେ ଏହା ଉପରେ ଗଲାବେଳେ ଖାତ ଭିତରକୁ ଖସି ପଡ଼ନ୍ତି । ପ୍ରତିବର୍ଷ ଏହି ଉପାୟରେ ହାତୀ ଧରାହେଉଥିଲେ । ପରେ ସେମାନଙ୍କର ବେକ ଓ ଗୋଡ଼କୁ ବଡ଼ ବଡ଼ ଲୁହା ଚେନ୍‌ରେ ଫାଶ କରି ବାନ୍ଧି ଦିଆଯାଏ । ଖବର ପାଇଲା ପରେ ଜୟପୁରର ଦେବାନ ଦୁଇଟି ପୋଷାହାତୀ ସହ ଆସି ଧରାପଡ଼ିଥିବା ହାତୀକୁ ଅକ୍ତିଆର କରି ନିଅନ୍ତି । ସେ କାଳରୁ ରହିଥିବା ବଡ଼ ବଡ଼ ଲୁହାଚେନ୍ ଗୁଡ଼ିକ ସେଠିକାର ଲୋକମାନେ ଆମକୁ

ଦେଖାଇଲେ । ଅନ୍ୟାନ୍ୟ ଆନୁଷଂଗିକ ବିଷୟରେ ଆଲୋଚନା କଲାପରେ ସଂଧ୍ୟା ଉପରାନ୍ତେ ଆମେ ରାୟଗଡ଼ା ଫେରି ଆସିଥିଲୁ ।

ଏହାର କିଛିଦିନ ପରେ ଦିନେ ଗୁଡ଼ାରୀ ରେଞ୍ଜ ଅଫିସ୍‌ରୁ ଖଣ୍ଡିଏ ଜରୁରୀ ଚିଠି ନେଇ ଜଣେ ସ୍ୱତନ୍ତ୍ର ପତ୍ରବାହକ ଆସି ପହଞ୍ଚିଲା । ଚିଠିରେ ଲେଖାଥିଲା ଗତକାଲି ସକାଳୁ ସକାଳୁ ଜାଙ୍ଗୁଳୁ ଜାଙ୍ଗୁଳୁ ଅଂଧାରରେ ଜରପା ଗାଁ ମୁଣ୍ଡେ ଥିବା 'ଶୂଳିଆ' ନାଳ କୂଳରେ ବାଉଁଶ ଡିପୋରେ ହାତୀ ମଣିଷଟେ ମାରି ଦେଇଛି ।

ଘଟଣାଟି ଏହିପରି ଥିଲା । ସେଦିନ ରାତି ତଥାପି ପାହି ନଥିଲା । ଜହ୍ନ ଆକାଶରେ ବୁଡି ସାରିଥାଏ । ପୂର୍ବାକାଶ ସଂପୂର୍ଣ୍ଣ ଫର୍ଚ୍ଚା ହୋଇନଥାଏ । ଏମିତି ଜାଙ୍ଗୁଳୁ ଜାଙ୍ଗୁଳୁ ଅଂଧାରରେ ହାତୀଟିଏ ଆସି ନାଳ କୂଳରେ ବାଉଁଶ ଡିପୋର ଜଗୁଆଳି ରହୁଥିବା ଝାଟିମାଟିର ଘରଟିକୁ ମୁଣ୍ଡ ଲଗେଇ ଠେଲି ଦେଇଛି । କାନ୍ଥ ପଡ଼ିଯିବାରୁ ନିଦରେ ଶୋଇଥିବା ଜଗୁଆଳିଟି ପ୍ରାଣ ବିକଳରେ ଚିତ୍କାର କରିଛି । ଚିତ୍କାର ଶୁଣି, ହାତୀ ଘର ଭାଙ୍ଗିବା କାମ ଛାଡ଼ି ଲୋକଟିକୁ କାନ୍ଥ ସହ ଦଳି ଦେଇଛି । ତା'ପରେ ଘରର ଛଣ ଛପର ଚାଳକୁ ଟେକିନେଇ ଖଣ୍ଡେ ଦୂରରେ ଫିଙ୍ଗିଦେଇଛି । ଫେରିଗଲାବେଳେ ପାହାଡ଼ ତଳେ ନାଳ କୂଳରେ ଥିବା ବଣୁଆ କଦଳୀଗଛମାନ ଓପାଡ଼ି ଛିନ୍‌ଛତ୍ର କରି ଦେଇଛି ।

ମୁଁ ମୁଖ୍ୟ ବନ୍ୟଜନ୍ତୁ ସଂରକ୍ଷକଙ୍କ ନିକଟକୁ ମୃତକର ପରିବାରବର୍ଗଙ୍କୁ ଦୁଇହଜାର ଟଙ୍କା କ୍ଷତିପୂରଣ ମଞ୍ଜୁର ସକାଶେ ଅନୁରୋଧ ଜଣେଇ ଟେଲିଗ୍ରାମ ପଠେଇଲି ଏବଂ ହାତୀକୁ ପାଗଳ (rogue) ବୋଲି ଘୋଷଣା କରିବା ଆଗରୁ ଅନ୍ୟାନ୍ୟ ସବିଶେଷ ତଥ୍ୟ ସଂଗ୍ରହ ନିମନ୍ତେ ଜଣେ ସ୍ଥାନୀୟ ଶିକାରୀଙ୍କୁ ସାଙ୍ଗରେ ନେଇ ଘଟଣାସ୍ଥଳକୁ ବାହାରିଲି ।

ଶିକାରୀ ରଂଗାଧର ରାଓ ଏବଂ ମୁଁ ଗୁମୁଡ଼ା ବାଟ ଦେଇ ଗୁଡ଼ାରୀ ରେଞ୍ଜ ଅଫିସ୍‌ରେ ପହଞ୍ଚିଲୁ । ରଂଗାଧର ରାଓ ଜଣେ ମିଲିଟାରୀର ଅବସରପ୍ରାପ୍ତ ସୈନିକ । ଅବସର ପରେ ଗାଁରେ ରହି ଚାଷବାସ କରିବା ସାଂଗକୁ ବ୍ଲକ୍ ସ୍ତରରେ ଅଳ୍ପ ବହୁତ ରାଜନୀତି ମଧ୍ୟ କରନ୍ତି । ରେଞ୍ଜ ଅଫିସର୍ ଓ ଫରେଷ୍ଟରଙ୍କ ସହ 'ଜରପା' ଗ୍ରାମ ଅଭିମୁଖେ ସରଜମିନ୍ ତଦନ୍ତ ନିମନ୍ତେ ବାହାରି ଦୁର୍ଘଟଣା ଘଟିଥିବା ବାଉଁଶ ଡିପୋରେ ପହଞ୍ଚିଲୁ ।

ଭାଙ୍ଗି ଯାଇଥିବା ଘର ପଛପଟ ନାଳକୂଳରେ ହାତୀର ପାଦଚିହ୍ନ ପଡ଼ିଥିଲା । ସେହି ଚିହ୍ନଗୁଡ଼ିକ ଦୁର୍ଘଟଣା ଘଟେଇଥିବା ହାତୀର କି ନୁହେଁ, ଏ ବିଷୟରେ ଆମେ ସନ୍ଦିହାନ

ଥିଲୁ । ରେଞ୍ଜ ଅଫିସର୍ ଜୋର୍ ଦେଇ କହିଲେ- ଦୁର୍ଘଟଣା ଘଟିବାର ଠିକ୍ ପରଦିନ ସକାଳେ, ସେ ଏଇ ପାଦ ଚିହ୍ନଗୁଡ଼ିକ ଦେଖି ଚିହ୍ନଟ କରି ରଖିଛନ୍ତି । ଚିହ୍ନଗୁଡ଼ିକ ଅସ୍ପଷ୍ଟ ହୋଇ ଆସିଥାଏ । ଗୋଲେଇ ମାପିବାରୁ ୪ଫୁଟ ୪ଇଞ୍ଚ ହେଲା । ସେଥିରୁ ଜଣାଗଲା, ହାତୀର କାନ୍ଧ ପାଖର ଉଚ୍ଚତା, ଏହାର ଦୁଇଗୁଣ ଅର୍ଥାତ୍ ୮ଫୁଟ ୮ଇଞ୍ଚ ହେବ । ଏହାଛଡ଼ା ଅନ୍ୟ କୌଣସି ବିଷୟ ହାତୀ ବିଷୟରେ ସଠିକ୍ ଭାବେ ଜାଣି ହେଲା ନାହିଁ । ହାତୀ ଆକ୍ରମଣରେ ଅନ୍ୟ ଯଦି କେଉଁଠି କିଛି ଦୁର୍ଘଟଣା ଘଟେ, ସେ ଖବର ଯେପରି ଆମକୁ ସାଙ୍ଗେ ସାଙ୍ଗେ ମିଳିବ, ତା'ର ବନ୍ଦୋବସ୍ତ କରି ଆମେ ଗୁଡ଼ାରୀ ରେଞ୍ଜ ଅଫିସ୍‌କୁ ଫେରି ଆସିଲୁ ଓ ସେଠି ଗୋଟିଏ ଛୋଟିଆ ବିଟ୍ ଘରେ ଡେରା ପକେଇ ରହିଲୁ ।

ତହିଁ ପରଦିନ ଅପରାହ୍ନ ଚାରିଟାବେଳେ ବିଟ୍ ଗାର୍ଡ ଆସି ଖବର ଦେଲା, ଚାରି ପାଞ୍ଚ କିଲୋମିଟର ଦୂରରେ ହାତୀ ଗୋଟିଏ ଧାନ ବୋଝେଇ ଶଗଡ଼ ଉପରେ ଆକ୍ରମଣ କରିଛି । ସଂଗେ ସଂଗେ ଶିକାରୀ ରାଓ, ମୁଁ ଓ ରେଞ୍ଜ ଅଫିସର୍ ଘଟଣାସ୍ଥଳକୁ ବାହାରିଲୁ । ଶିକାରୀ ଜଣକ ହାତରେ ଗୋଟାଏ ରାଇଫଲ୍ ଧରିଥାନ୍ତି । ରେଞ୍ଜ ଅଫିସର୍ ଗୋଟିଏ ବଡ଼ ଟର୍ଚ୍ଚ ଓ ମୁଁ ସାଙ୍ଗରେ ବାଇନାକୁଲ୍‌ରଟିଏ ନେଇଥାଏ । ମୋର ଉଦ୍ଦେଶ୍ୟ ଥିଲା, ହାତୀର ଖୁବ୍ ନିକଟକୁ ନଯାଇ ଦୂରରୁ ବାଇନାକୁଲର ସାହାଯ୍ୟରେ ତାର ଗତିବିଧି ଉପରେ ଲକ୍ଷ୍ୟ ରଖିହେବ ।

ଘଟଣାସ୍ଥଳରେ ଆମେ ପହଞ୍ଚିଲା ବେଳକୁ ମୁହଁସଂଜ ହୋଇ ସାରିଥାଏ । ବର୍ଷା ଝିପି ଝିପି ପକଉଥାଏ । ଅନତିଦୂରରେ ଥିବା ଶାଳ ଜଙ୍ଗଲ ମଥାନ ଉପରେ ଗାଢ଼ ନୀଳ ରଂଗର ମେଘ ମେଦୁର ଆକାଶ, ବିଜୁଳି, ଆଲୁଅରେ ସମୟେ ସମୟେ ଝଟକୁ ଥାଏ । ଏମିତି ଅଦିନିଆ ମେଘ କୋରାପୁଟ ଜିଲ୍ଲାରେ ବାରମ୍ବାର ହୋଇଥାଏ । ଆମେ ଘଟଣାସ୍ଥଳରେ ପହଞ୍ଚିବା ପରେ ପରେ ବନରକ୍ଷୀ ପାଖ ଗାଁକୁ ଯାଇ ଶଗଡ଼ିଆ ଓ ତା'ର ସାଥୀଙ୍କୁ ଡାକି ଆଣିଲା । ସେମାନଙ୍କ ସହିତ ଲଣ୍ଠନ ଓ ନିଆଁହୁଳା ଧରି ଗାଁର ଅନ୍ୟ ଆଠ, ଦଶ ଜଣ ଭେଣ୍ଡିଆ ମଧ୍ୟ ଆସିଥାନ୍ତି । ଘଟଣାସ୍ଥଳରେ ଗୋଟିଏ ଶଗଡ଼ ଖଣ୍ଡ ଖଣ୍ଡ ହୋଇ ପଡ଼ିଥାଏ ।

ଘଟଣାଟି ଏହିପରି ଘଟିଥିଲା । ଶଗଡ଼ିଆ ଓ ତା'ର ସାଥୀଜଣକ ସେଦିନ ବିଲକୁ ଧାନ କାଟିବାକୁ ଆସିଥିଲେ । ଧାନ କାଟି ଶଗଡ଼ରେ ବୋଝେଇ କରି ସାରିଲା ବେଳକୁ ବେଳ ରତରତ । ସବୁକାମ ସାରି ସେମାନେ ଦୂର ନାଳ କୂଳକୁ ଚାଲିଗଲେ ଧୂଆଧୋଇ ହେବାପାଇଁ । ବଳଦ ହଳକ ଖୋଲାରେ ଚରୁଥିଲେ । ଏହି ସମୟରେ ପେଁକାଳି ଭଳି ହାତୀର ଗର୍ଜନ ଶୁଣାଗଲା ଓ ତା' ସାଙ୍ଗକୁ ଧଡ଼ଧାଡ଼ ଶବ୍ଦ । । ଶଗଡ଼ିଆ ଓ ତା'ର ସାଥୀ ପ୍ରାଣ

ଭୟରେ ନାଳ କୂଳରେ ଥିବା ବିରାଟ ଅର୍ଜୁନ ଗଛରେ ଚଢ଼ିଗଲେ । ସେଠୁ ଦେଖିଲେ, ବଳଦ ହଳକ ଲାଞ୍ଜ ଟେକି ଗାଁ ଆଡ଼କୁ ଏକମୁହାଁ ଦୌଡୁଛନ୍ତି । ହାତୀ ଶଗଡ଼କୁ ଖଣ୍ଡ ଖଣ୍ଡ କରି ଚକକୁ ଶୁଣ୍ଢରେ ଧରି ପେଣ୍ଡୁ ଖେଳିଲା ଭଳି ଖେଳୁଛି, ଧାନ କଳେଇ ସବୁ ଏତେତେଣେ ବିଛାଡ଼ି ହୋଇ ପଡ଼ିଛି । କିଛି ସମୟ ଏପରି ଧ୍ୱଂସଲୀଳା ଘଟେଇବା ପରେ ହାତୀ ପୁନଶ୍ଚ ପେଁକାଳି ବଜେଇ ଚାଲିଗଲା । ହାତୀଟି ଫେରିଯିବାର କିଛି ସମୟ ପରେ ସେମାନେ ଗଛରୁ ଓହ୍ଲେଇ ଗାଁକୁ ଦୌଡ଼ିଲେ ଏବଂ ସେଠି ବନରକ୍ଷୀକୁ ଖବରଦେଲେ ।

ସେଦିନ ଅନ୍ଧାର ହୋଇ ଆସିଥିବାରୁ ଓ ଖୁବ୍ ଜୋର୍‌ରେ ବର୍ଷା ଆସିବାର ସଂଭାବନା ଥିବାରୁ ମେଘ ବର୍ଷା ଓ ଅଂଧାର ରାତିରେ ହାତୀକୁ ଅନୁସରଣ କରିବା ବିପଦସଂକୁଳ ମନେକରି ଆମେ ସେଥିରୁ ନିବୃତ୍ତ ହେଲୁ । ପରଦିନ ସକାଳେ ଆମେ ପୁନର୍ବାର ଘଟଣାସ୍ଥଳକୁ ଆସିଲୁ । ସେଠି ଗାଈଆଳ ପିଲାଟିଏ ସହିତ ଭେଟହେଲା । ଗୋଟିକିଆ ହାତୀଟିଏ ନାଳ କୂଳେ କୂଳେ ପାହାଡ଼ କାନ୍ଥିଆଡ଼େ ଯାଇ ଥିବାର ସେ ଦେଖିଛି ବୋଲି କହିଲା ଓ ବହୁ କଷ୍ଟରେ ଆମକୁ ବାଟ ବତେଇ ଦେବ ବୋଲି ରାଜିହେଲା ।

ହାତୀ ଯାଇଥିବାର ରାସ୍ତା ବେଶ୍ ବାରି ହେଉଥାଏ । କାରଣ ବାଟ ସାରା ଗଜା ବାଉଁଶ ଭଙ୍ଗା ହୋଇ ଏଣେତେଣେ ପଡ଼ିଥାଏ । ତା ଛଡ଼ା ବଣୁଆ ଘାସ ଓ କାଶତଣ୍ଡୀ ବୁଦାଗୁଡ଼ିକ ଉପରେ ଦଳା ଚକଟା ଚିହ୍ନ ମଧ୍ୟ ଲକ୍ଷ୍ୟ କରି ହେଉଥାଏ । ଏହିପରି କିଛିବାଟ ଗଲାପରେ ଗାଈଆଳ ଟୋକା ଆମକୁ ସଂକେତ ଦେଲା । ତା' ସଂକେତକୁ ଅନୁସରଣ କରି ଅମେ ଦେଖିଲୁ ଯେ, ନାଳ କୂଳର ପଥର ଚଟାଣ ଉପରେ କଳା ରଂଗର ବଡ଼ ଜୀବଟିଏ ଶୋଇଛି । ବାଉଁଶ ବୁଦା ଫାଙ୍କରୁ ହାତୀର ଶରୀର ଏକ ଅସ୍ପଷ୍ଟ ଛାୟା ସଦୃଶ ପ୍ରତୀୟମାନ ହେଉଥାଏ । ଅଧିକ ଅଗ୍ରସର ହେବା ଆଗରୁ ମୁଁ ପବନର ଗନ୍ଧ ବାରିବାକୁ ଚେଷ୍ଟା କଲି । ଯୋଗକୁ ପବନ ହାତୀ ଶୋଇଥିବା ସ୍ଥାନ ପଟୁ ଆମ ଆଡ଼କୁ ବୋହୁଥାଏ । ତେଣୁ ହାତୀ ମଣିଷ ଗନ୍ଧ ବାରି ପାରୁ ନଥାଏ । ଆମେ ଆଉ ଆଗକୁ ନଯାଇ ଖୁବ୍ ସତର୍କତାର ସହିତ ପାହାଡ଼ କଡ଼େ କଡ଼େ ନାଳ କୂଳକୁ ଗଡ଼ିଲୁ । ସେଠାରେ ଥିବା ଗୋଟିଏ ବଡ଼ ପଥର ଖଣ୍ଡ ଆଢୁଆଳରୁ ହାତୀର ଗତିବିଧି ବେଶ୍ ଲକ୍ଷ୍ୟ କରି ହେଉଥାଏ ।

ହାତୀ ପୂର୍ବବତ୍ ଆରାମ୍‌ରେ ଶୋଇଥାଏ । ବାଇନାକୁଲର ସାହାଯ୍ୟରେ କିଛି ସମୟ ଲକ୍ଷ୍ୟ କଲାପରେ ହାତୀର ଗଣ୍ଡ ଦେଶରେ ଲେଞ୍ଜେରା ବୋହିଲା ପରି, ତେଲ ଚିକିଟା ଗାରଟିଏ ପଡ଼ିଥିବାର ଦେଖାଗଲା । ଶିକାରୀ ବନ୍ଧୁଙ୍କୁ ମଧ୍ୟ ଦେଖାଇଲି । ଏହା ନିଶ୍ଚିତ ଭାବେ 'ମଦବାରି' । ଏହି ସମୟରେ ପୁରୁଷ ହାତୀ ମଦମତ୍ତ ରହେ ଓ ସାମୟିକ ପାଗଳାମି କରିଥାଏ । ବିଶେଷ କରି ସ୍ତ୍ରୀ ହାତୀ ସହିତ ମିଳିତ ହେବାରେ ବାଧାପ୍ରାପ୍ତ

ହେଲେ, ସେମାନେ ପାଗଳ ପରି ହୋଇଥାନ୍ତି । ଏହି ଅବସ୍ଥାରେ ମଦମତ୍ତ ହାତୀ ଅସ୍ଥିର, ବଦ୍‌ରାଗୀ ଓ ଉତ୍ତେଜିତ ରୁହେ ଏବଂ ବିନା ପ୍ରରୋଚନାରେ ମଧ୍ୟ ଆକ୍ରମଣ କରିଥାଏ । ପୁରୁଷ ହାତୀର ଏହି ଅବସ୍ଥା ଦୁଇ, ତିନି ସପ୍ତାହରୁ ଦୁଇ ତିନିମାସ ପର୍ଯ୍ୟନ୍ତ ରହେ । ସେ ସମୟତକ ହାତୀର ଗଣ୍ଡଦେଶରୁ ତେଲ ଚିକିଟା ରସ ବରାବର କ୍ଷରିତ ହେଉଥାଏ । ଏପରି ଅବସ୍ଥାରେ ହାତୀର ସାମ୍ନା ସାମ୍ନି ହେବା ଖୁବ୍ ବିପଜ୍ଜନକ । ପୋଷାହାତୀମାନେ ମଧ୍ୟ ମଦମତ୍ତ ଅବସ୍ଥାରେ ଥିଲା ସମୟରେ ଅଣାୟତ୍ତ ହୋଇ, ନିଜର ମାହୁନ୍ତକୁ ମାରି ପକେଇବା ଭଳି ଦୁର୍ଘଟଣା ଘଟିବାର ନଜିର ଅଛି । କିନ୍ତୁ ଏହି ସମୟଟା ଅତିବାହିତ ହୋଇଗଲେ ସେମାନେ ପୁନଶ୍ଚ ସ୍ୱାଭାବିକ ଅବସ୍ଥାକୁ ଫେରି ଆସନ୍ତି ।

ଆମେ ଅନୁମାନ କଲୁ, ଏ କ୍ଷେତ୍ରରେ ମଧ୍ୟ ହାତୀଟି ମଦମତ୍ତ ଅବସ୍ଥାରେ ଏପରି ଆକ୍ରମଣ କରିଛି । କିନ୍ତୁ ପ୍ରକୃତ ପକ୍ଷେ ସେ ହିଂସ୍ର, ପାଗଳ ବା ରକ୍ତଲୋଲୁପ ନୁହେଁ । ବୋଧହୁଏ ଦୁର୍ଘଟଣା ଘଟିବା ଆଗ ରାତିରେ ମାଈହାତୀ ସହିତ ସହବାସ ଘଟଣା ନେଇ ଦଳର ମୁଖିଆ-ପୁରୁଷ ଦନ୍ତାହାତୀ ସହିତ ତା'ର ଝଗଡ଼ା ହୋଇଛି । ଝଗଡ଼ା ଜନିତ ଯୁଦ୍ଧରେ ପରାସ୍ତ ହେବାରୁ ଦଳରୁ ତାକୁ ବିତାଡ଼ିତ କରି ଦିଆଯାଇଛି । ଏଣୁ ହାତଟି ଏକାଏକା ଜଙ୍ଗଲରେ ଘୂରି ବୁଲୁଛି । ଏହା ଫଳରେ ତା'ର ମିଜାଜ୍ ଖରାପ ହୋଇଯାଇ, ସେ ହିତାହିତ ଶୂନ୍ୟ ଅବସ୍ଥାରେ ବାଉଁଶ ଡିପୋ ଜଗୁଆଳିର ଝାଟିମାଟିର ଘର ଉପରେ ଆକ୍ରମଣ କରିଛି । ସେହି ଉତ୍ତେଜିତ ମୁହୂର୍ତ୍ତରେ ବିଚାରା ଡିପୋ ଜଗୁଆଳି ହାତୀ ସାମ୍ନାରେ ପଡ଼ି ପ୍ରାଣ ହରାଇଛି । ଏହା ଏକ ଆକସ୍ମିକ ଦୁର୍ଘଟଣା । ହାତୀର ସଂପୂର୍ଣ୍ଣ ଇଚ୍ଛାକୃତ ନୁହେଁ ।

ଯାହାହେଉ, ନିଜ ସିଦ୍ଧାନ୍ତରେ ସ୍ଥିର ନିଶ୍ଚିତ ହେବା ପାଇଁ ଆମେ ସେଠାକାର ବନରକ୍ଷୀକୁ ହାତୀର ଗତିବିଧି ଉପରେ ଲକ୍ଷ୍ୟ ରଖି, ଆଉ ଯଦି କୌଣସି ଦୁର୍ଘଟଣା ଆଖପାଖରେ କେଉଁଠି ଘଟେ, ତାହାଲେ ଆମକୁ ସଂଗେ ସଂଗେ ଜଣେଇବା ପାଇଁ ନିର୍ଦ୍ଦେଶ ଦେଇ ସେହିଦିନ ଅପରାହ୍ନରେ ରାୟଗଡ଼ା ଫେରି ଆସିଲୁ ।

ଅନେକ ଦିନ ପର୍ଯ୍ୟନ୍ତ ଗୁଡ଼ାରୀ ରେଞ୍ଜ ବା ଚନ୍ଦ୍ରପୁର ସେକ୍‌ସନ୍‌ରୁ ହାତୀ ଆକ୍ରମଣ ଜନିତ କୌଣସି ଘଟଣା ବା ଦୁର୍ଘଟଣାର ସଂବାଦ ଡିଭିଜନ୍ ଅଫିସ୍‌ରେ ପହଞ୍ଚିଲା ନାହିଁ । ହାତୀର ପ୍ରକୃତି ସମ୍ବନ୍ଧରେ ଆମର ଆକଳନ ଓ ଅନୁମାନ ଯେ ଠିକ୍ ଥିଲା, ଏହା ସ୍ଥିର ନିଶ୍ଚିତ ହେଲାପରେ ମୁଁ ଆଶ୍ୱସ୍ତ ହେଲି । ମୁଁ ରାୟଗଡ଼ା ବନାଞ୍ଚଳ ଅଧିକାରୀ ଥିଲା ପର୍ଯ୍ୟନ୍ତ ମୋ ଡିଭିଜନ୍‌ରେ ହାତୀ ଆକ୍ରମଣ ଜନିତ ଆଉ କୌଣସି ଦୁର୍ଘଟଣା ଘଟିନାହିଁ ।



# ରାୟଗଡ଼ା:
# କିଛି ସ୍ମୃତି କିଛି ଅନୁଭୂତି



କୋରାପୁଟ ପଟୁ ଆସିଲେ, ଗୁମ୍ମା ଘାଟି ଦେଇ ତଳକୁ ଗଡ଼ିବାକୁ ହୁଏ । ଏପଟେ ବ୍ରହ୍ମପୁର ପଟୁ ଆସିଲେ କୈଳାସ କୋଟା ଘାଟି ପାର ହୋଇ ଜେ.କେ.ପୁର ଦେଇ ରାୟଗଡ଼ାରେ ପହଞ୍ଚି ହୁଏ । ଦୁଇଘାଟି ମଝିରେ ଅଳସ ଉପତ୍ୟକା ପରି ରହିଥିଲା, ପ୍ରାକୃତିକ ସୌନ୍ଦର୍ଯ୍ୟରେ ଉବୁଟୁବୁ ରାୟଗଡ଼ା ସହର । ଆଗରୁ କହିଛି,ଏହି ସହର ସହିତ ମୋର ପ୍ରଥମ ପରିଚୟ ହୋଇଥିଲା, ୧୯୮୩ ମସିହା ଫେବୃୟାରୀ ମାସରେ-ଯେବେ ମୁଁ ନବରଂଗପୁରରୁ ବଦଳି ହୋଇ ରାୟଗଡ଼ ଫରେଷ୍ଟ ଡିଭିଜନ୍‌ରେ ଡି.ଏଫ୍.ଓ. ହିସାବରେ କାର୍ଯ୍ୟଭାର ଗ୍ରହଣ କଲି । ପଚିଶ ବର୍ଷର ପୁରୁଣା ସେ ସଂପର୍କ । ଅଥଚ ଏବେବି ଲାଗେ କେତେ ନିଜର, କେତେ ଆପଣାର । ଏବେ ବି ଅମଳିନ ସେ ସ୍ମୃତି । ସେହି ସମୟର ଅନୁଭୂତି ।

ସେତେବେଳେ ରାୟଗଡ଼ାର ସାହିତ୍ୟିକ ପାଣିପାଗ ବେଶ୍ ଅନୁକୂଳ ଥିଲା । ସେହି ଅନୁକୂଳ ପରିବେଶରେ ବେଶ୍ କିଛି ବର୍ଷ ହେଲା, ମୋ ଭିତରେ ଶୋଇଯାଇଥିବା କବି

ଆତ୍ମାଟି ପୁଣି ଜାଗରିତ ହୋଇ ଉଠିଥିଲା । ୧୯୭୦ ଓ ୧୯୭୧ ମସିହାରେ ବାଣୀବିହାରରେ ଅଧ୍ୟୟନ କରୁଥିବା ସମୟରେ, ମୁଁ ବେଶ୍ କିଛି କବିତା ଲେଖିଥିଲି । ସେ ସମୟରେ କଲିକତାରୁ ନିୟମିତ ମାସିକ ପତ୍ରିକା ଭାବେ ପ୍ରକାଶ ପାଉଥିବା 'ଆସନ୍ତାକାଲି' ଓ 'ନବରବି' ପତ୍ରିକାରେ ପ୍ରାୟତଃ ମୋ କବିତା ବାହାରୁଥିଲା । କଟକରୁ ପ୍ରକାଶିତ 'ଜୀବନରଂଗ' ଓ 'ଝଙ୍କାର'ରେ ମଧ୍ୟ କେବେ କେମିତି ଆସିଯାଏ ମୋର କବିତାଟିଏ ।

ସେବେ ବାଣୀବିହାର ପରିସରରେ ପ୍ରତିମାସରେ ଅନ୍ତତଃ ପକ୍ଷେ ଥରେ କବିତା ଆସରଟିଏ ବସୁଥିଲା ଓ ବୌଦ୍ଧିକ ଆଲୋଚନା କରାଯାଉଥିଲା । ଓଡ଼ିଆ ବିଭାଗର ତତ୍‌କାଳୀନ ପ୍ରାଧ୍ୟାପକ ଡ. ନିତ୍ୟାନନ୍ଦ ଶତପଥୀ ଏହି ଆଲୋଚନାଚକ୍ରରେ ପ୍ରାୟତଃ ଅଧ୍ୟକ୍ଷତା କରୁଥିଲେ । ଯୋଗ ଦେଇଥିବା ଅନ୍ୟ ବରିଷ୍ଠ କବିମାନଙ୍କ ମଧ୍ୟରେ ଥିଲେ ଅଧ୍ୟାପକ ଦେବଦାସ ଛୋଟରାୟ (ସଂପ୍ରତି ରେଭେନ୍‌ସା ଏକକ ବିଶ୍ୱବିଦ୍ୟାଳୟର କୁଳପତି), କବି ଡ. ସୌଭାଗ୍ୟ ମିଶ୍ର ପ୍ରଭୃତି । ଛାତ୍ରଛାତ୍ରୀମାନଙ୍କ ଭିତରୁ କବି ଅମରେଶ ପଟ୍ଟନାୟକ, ସତ୍ୟାନନ୍ଦ ମିଶ୍ର, ବ୍ରଜ କିଶୋର ସାହୁ, ଶିବ ରଥ, ଗାଳ୍ପିକା ଯଶୋଧାରା ବେହେରା ଏବଂ କବୀ ସଂଘମିତ୍ରା ଦାସ ଏହି ସଂପାନରେ ରୀତିମତ ଯୋଗ ଦେଉଥିଲେ । ବାଣୀବିହାରରୁ ଗୋଟିଏ ଗୋଷ୍ଠୀ, ଅଧିକାଂଶ ରବିବାର ଦିନ କଟକସ୍ଥ ସଚ୍ଚି ରାଉତରାୟଙ୍କ (ସଂପ୍ରତି ସ୍ୱଗତ) 'ଦିଗନ୍ତ' ୱାର୍କସପ୍‌ରେ ଅଂଶଗ୍ରହଣ କରିବାର ନଜିର୍ ଅଛି । କବିବଂଧୁ କମଳାକାନ୍ତ ପଣ୍ଡା (କଳ୍ପାନ୍ତ) ମଧ୍ୟ 'ଦିଗନ୍ତ' ଆସରରେ ସଦା ଯୋଗଦେଉଥିଲେ କଟକରୁ ।

ବାଣୀବିହାର ଛାଡ଼ିବା ପରେ, ଅନୁକୂଳ ପରିବେଶ ଅଭାବରୁ ମୋର କବିତା ଲେଖିବା ପ୍ରାୟତଃ କମିଗଲା । 'କବିତା ମନସ୍କ' ରାଇଜରୁ ଓହରି ଯାଇ ତେଲଲୁଣ ସାଂସାରିକ ଜଞ୍ଜାଳରେ ଛନ୍ଦି ହୋଇଗଲି । ୧୯୭୩ ମସିହାରେ ବାପାଙ୍କର ଦେହାନ୍ତ ହୋଇଗଲା । ଜୀବନ ଗଦ୍ୟମୟ ହୋଇଗଲା । ୧୯୭୫ ମସିହାରେ ଓଡ଼ିଶା ଛାଡ଼ି ଡେରାଡୁନ୍‌ସ୍ଥିତ ଭାରତୀୟ ବନମହାବିଦ୍ୟାଳୟରେ ଦୁଇବର୍ଷ ଟ୍ରେନିଂରେ ରହିଲି । ସେତେବେଳେ କବିତା ଘର ବିଲ୍‌କୁଲ୍ ଠପ୍ ହୋଇଗଲା । ପରେ ୧୯୭୭ମସିହାରେ ମସୌରୀସ୍ଥିତ ଲାଲ୍‌ବାହାଦୁର ଶାସ୍ତ୍ରୀ ଏକାଡେମୀରେ ପ୍ରଶିକ୍ଷଣ ସମୟରେ କବିତା ଛାଡ଼ି ଗପ ଲେଖିବାକୁ ମନ ବଳାଇଲି । ଗୋଟିଏ ରାଇଜରୁ ଅନ୍ୟ ରାଇଜରେ ଅନୁପ୍ରବେଶ ।

ମସୌରୀଠାରେ ଟ୍ରେନିଂ ଅବସରରେ, ଓଡ଼ିଶା କ୍ୟାଡ଼ରର ସର୍ବଭାରତୀୟ ପ୍ରଶାସନିକ ସେବାର ଅଧିକାରୀ ଶ୍ରୀଯୁକ୍ତ ତରୁଣକାନ୍ତି ମିଶ୍ରଙ୍କ ସାନ୍ନିଧ୍ୟ ମୁଁ ଲାଭ କରିଥିଲି । ଶ୍ରୀଯୁକ୍ତ

ମିଶ୍ରଙ୍କ ପ୍ରଭାବଶାଳୀ ଗଳ୍ପ ଲିଖନ ଶୈଳୀରେ ପ୍ରଭାବିତ ହୋଇ, ପ୍ରଥମଥର ପାଇଁ କବିତା ଛାଡ଼ି ଗପ ଲେଖିବାକୁ ମନ ବଳାଇଲି । ମସୌରୀ ଶୈଳନିବାସର ପଛଭୂମିକୁ ନେଇ ସେବେ ପ୍ରକାଶ ପାଇଥିଲା ମୋର ପ୍ରଥମ ଗଳ୍ପ 'ଆକାଶର ରଂଗ' । ଗଳ୍ପ ରଚନାରେ ତରୁଣକାନ୍ତି ମିଶ୍ରଙ୍କର ବଳିଷ୍ଠ ତଥା ମନନଶୀଳ ଚରିତ୍ର ସଂଯୋଜନା ସେ ସମୟରେ ମୋତେ ପ୍ରଭାବିତ କରିଥିଲା । ଆଜିବି ମିଶ୍ରଙ୍କର ଗପଟିଏ ପଢ଼ିଲେ ମୁଁ ଆଚ୍ଛନ୍ନ ହୋଇଯାଏ ।

ମସୌରୀ ଛାଡ଼ିବା ପରେ, ନା କବିତା ଲେଖା ହେଲା ନା ଗପ ! ନବରଂଗପୁର ଡିଭିଜନ୍‌ରେ ପ୍ରାୟ ସାଢ଼େ ତିନିବର୍ଷର ରହଣି ସମୟରେ, ମୋ ଭିତରର କବିତାୟିତ ଆତ୍ମାଟି କୁଙ୍କୁରି କାଙ୍କୁରି ଶୋଇଥିଲା । ୧୯୮୩ରେ ରାୟଗଡ଼ାକୁ ବଦଳି ହୋଇ ଆସିବା ପରେ ସେଠିକାର ସାହିତ୍ୟିକ ପାଣିପାଗ ଅନୁକୂଳ ବାତାବରଣ ଯୋଗାଇଦେଲା, ଖୋରାକ୍ ଯୋଗାଇ ଦେଲା । ମନର ମାଟିତଳେ ଶୋଇ ଯାଇଥିବା କବିତା ପ୍ରାଣଟି ଗଜୁରି ଉଠି, ଧୀରେ ଧୀରେ ପଲ୍ଲବିତ ହେବାକୁ ଲାଗିଲା । ତରୁଣ କବି ତଥା 'ସଚିତ୍ର ବିଜୟା'ର ସଂପାଦକ ଶ୍ରୀଯୁକ୍ତ ସୁନୀଲ୍ ପୃଷ୍ଟିଙ୍କର ବାପାଙ୍କ ଉଦ୍ୟମରେ ରାୟଗଡ଼ାରେ ମଧ୍ୟ ଜମି ଉଠୁଥିଲା କବିତାର ସାଂଧ୍ୟ ଆସର ।

ଏହି ଅବସରରେ, ରାୟଗଡ଼ାରେ ସପରିବାର ଅବସ୍ଥାନ କରୁଥିବା ସେ ସମୟର ଓଡ଼ିଶାର ଅନ୍ୟତମ ରହସ୍ୟ ଔପନ୍ୟାସିକ ଶ୍ରୀଯୁକ୍ତ ଗିରିଧାରୀ ମହାରଣାଙ୍କ ସହିତ ମୋର ପରିଚୟ ହୁଏ । ସ୍କୁଲରେ ପଢୁଥିବା ସମୟରେ  ଘରେ ବାପାଙ୍କୁ ଲୁଚେଇ ଲୁଚେଇ, ଯେଉଁ କେତେଜଣଙ୍କ  ଡିଟେକ୍‌ଟିଭ୍ ଉପନ୍ୟାସ ଆମେ ବରାବର ପଢୁଥିଲୁ, ସେମାନଙ୍କ ମଧ୍ୟରେ ଥିଲେ କସ୍ତୁରୀ ଚରଣ ଦାସ, ଭୂପେନ୍ ଗୋସ୍ୱାମୀ ଏବଂ ରାୟଗଡ଼ାର ଶ୍ରୀଯୁକ୍ତ ଗିରିଧାରୀ ମହାରଣା । ଅନେକ ରହସ୍ୟ ଉପନ୍ୟାସର ରଚୟିତା ଶ୍ରୀ ମହାରଣା । 'ଆଲୋକ ମୁଦ୍ରଣ ପ୍ରତିଷ୍ଠାନ' ନାମରେ ପ୍ରେସ୍‌ଟିଏ ବସାଇଥିଲେ ସେ । ପ୍ରେସ୍‌ର ସଂପୂର୍ଣ୍ଣ ଦାୟିତ୍ୱ ନେଇଥିଲେ ତାଙ୍କର ପତ୍ନୀ ।

ଶ୍ରୀଯୁକ୍ତ ମହାରଣାଙ୍କ ସହ ପରିଚିତି କିଛିଟା ଗଭୀର ହେଲାପରେ ତାଙ୍କ ଦ୍ୱାରା ପ୍ରରୋଚିତ ହୋଇ, ମୁଁ ସେଯାବତ୍ ଲେଖିଥିବା କବିତାଗୁଡ଼ିକୁ ଏକତ୍ରିତ କରି ସଂକଳନ ପ୍ରକାଶ କରିଥିଲି । ତାହାଥିଲା ମୋର ପ୍ରଥମ କବିତା ସଂକଳନ – 'ଛାମୁଙ୍କ ଆଖି ଲୁହ' । ଗିରିଧାରୀ ବାବୁଙ୍କ ଅନୁରୋଧରେ, କବିତା ବହିଟିର ପ୍ରଚ୍ଛଦ ଆଙ୍କିଥିଲେ କଟକର ନାମଜାଦା ପ୍ରଚ୍ଛଦଶିଳ୍ପୀ ଶ୍ରୀଯୁକ୍ତ ଅସିତ୍ ମୁଖାର୍ଜୀ । କୋରାପୁଟ ଲେଖକ ସହଯୋଗ ସମବାୟ ସମିତି

ଆନୁକୂଲ୍ୟରେ, ୧୯୮୩ ମସିହା ବିଜୟାଦଶମୀ ଅବସରରେ କବିତା ପୁସ୍ତକଟିର ଶୁଭ ଉନ୍ମୋଚନ କରିଥିଲେ ଫୁଲବାଣୀ କଲେଜର ତତ୍‌କାଳୀନ ଅଧ୍ୟାପକ, ଗାଳ୍ପିକ ଓ ସମାଲୋଚକ ଅଧ୍ୟାପକ ବିଶ୍ୱରଞ୍ଜନ । ସ୍ଥାନଥିଲା କୋରାପୁଟ ସଭାଗୃହ ସମ୍ମିଳନୀ କକ୍ଷ । ଅଧ୍ୟାପକ ବିଶ୍ୱରଂଜନଙ୍କର ବକ୍ତୃତା ଦେବା ଶୈଳୀ ଯେପରି ଶାଣିତ; ସ୍ମୃତି ଶକ୍ତି ମଧ୍ୟ ସେପରି ତୀକ୍ଷ୍ଣ । ଏବେ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ବିତିଯାଇଥିଲେ ମଧ୍ୟ, ସେଦିନର କଥାକୁ ମନେ ପକାଇ ସେ ମହାଶୟ ସ୍ମୃତିଚାରଣ କରିଛନ୍ତି; ବାଲେଶ୍ୱରରୁ ପ୍ରକାଶିତ ୫.୨.୨୦୦୬ ତାରିଖ 'ରବିବାର ଚିଠି' ସ୍ତମ୍ଭରେ ।

ରାୟଗଡ଼ା ରହଣି ସମୟରେ ଅନ୍ୟ ଜଣେ ଉଦୀୟମାନ୍ ପ୍ରାଣସ୍ଫୂର୍ତ୍ତ ଯୁବକଙ୍କ ସହିତ ମୋର ପରିଚୟ ହୋଇଥିଲା । ସେ ମହାଶୟ ଥିଲେ, ଜେ.କେ. କାଗଜ କଳର କଞ୍ଚାମାଲ ମ୍ୟାନେଜର ଶ୍ରୀଯୁକ୍ତ ଏ.କେ. ଶାରଦା । (ଏବେ ଶାରଦାଜୀ ଜେ.କେ. କାଗଜକଳର କଞ୍ଚାମାଲ ବିଭାଗର ଉପାଧ୍ୟକ୍ଷ ପଦବୀରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଛନ୍ତି ।)

ଜଣେ ପାଶ୍ଚାତ୍ୟ କବି ଜୟସ୍ କିଲମର (Joyce Kilmer) ଲେଖିଥିଲେ;

'I think, I shall never see

A poem, as lovely as a tree !'

ଗଛପରି ସୁନ୍ଦର, ଆକର୍ଷଣୀୟ କବିତାଟିଏ ହୁଏତ ଅନ୍ୟତ୍ର ଦେଖିବାକୁ ମିଳିବ ନାହିଁ । ଗଛ ଓ କବିତା ଭିତରେ ଥିବା ଅନ୍ତର୍ନିହିତ ସଂପର୍କ ବିଷୟରେ ଏଠି ବ୍ୟାଖ୍ୟା କରିବାର ଅର୍ଥ ହେଉଛି; ଶାରଦାଜୀଙ୍କ ବ୍ୟକ୍ତିତ୍ୱରେ ଏ ଦୁଇଟିର ଅପୂର୍ବ ସମନ୍ୱୟ ଘଟିଛି । କାଗଜକଳ ପାଇଁ କଞ୍ଚାମାଲ୍ ଅର୍ଥାତ୍ ବାଉଁଶ ଓ କାଠ ସଂଗ୍ରହ କରିବା ଦାୟିତ୍ୱ ନେଇ ସେ ସାରା ଓଡ଼ିଶା, ଆନ୍ଧ୍ର, ଛତିଶଗଡ଼ର ଚାଷୀମାନଙ୍କୁ ଗଛ ଲଗାଇବା ପାଇଁ ନିରନ୍ତର ପ୍ରବର୍ତ୍ତାଉଛନ୍ତି । ଏପଟେ ତାଙ୍କରି ପୃଷ୍ଠପୋଷକତାରେ ୨୦୦୫ ମସିହାରୁ ପ୍ରତିବର୍ଷ ଡିସେମ୍ବର ମାସ ଶେଷ ସପ୍ତାହରେ ରାଜ୍ୟର ଉପାନ୍ତ ଅଞ୍ଚଳ ଜେ.କେ.ପୁର ଠାରେ 'ରାୟଗଡ଼ା କବିତା ଉତ୍ସବ' ପାଳିତ ହୋଇ ଆସୁଛି । କବିଙ୍କୁ ଭଲ ପାଇବା, କବିତାମନସ୍କ ହେବା ଏବଂ କବି ଓ କବିତାର ପୃଷ୍ଠପୋଷକତା କରିବା ପାଇଁ ଯେଉଁ କବିତାୟିତ ଆତ୍ମାଟିଏ ଦରକାର, ତାହା ନିଶ୍ଚିତ ଭାବରେ ଶାରଦାଜୀଙ୍କ ପାଖରେ ଅଛି । ଗଛ ଓ କବିତାର ଅପୂର୍ବ ସମନ୍ୱୟ ।

ତାଙ୍କ ଅନୁରୋଧରେ, ଥରେ କାଗଜକଳ ସଭାଗୃହରେ ଅନୁଷ୍ଠିତ ହେଉଥିବା ଭଂଜ ଜୟନ୍ତୀ ସମାରୋହରେ ମୁଖ୍ୟ ଅତିଥି ଭାବେ ଯୋଗ ଦେବାକୁ ଯାଇଥିଲି । ସେଦିନ ସଂଧ୍ୟାରେ ସଭାକାର୍ଯ୍ୟ ସମାପନ ପରେ ପେପର ମିଲ୍ ଅତିଥି ଭବନରେ ମୁଁ, ସ୍ତ୍ରୀ ଓ ଚାରିବର୍ଷର ପୁଅ 'ଟିକନ' ରାତ୍ରିଯାପନ କଲୁ । ପରଦିନ ସକାଳେ ରାୟଗଡ଼ା ଫେରିବା ପୂର୍ବରୁ ପେପର ମିଲ୍ ଫାକ୍‌ଟରୀ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ଥାଏ । ସକାଳୁ ସକାଳୁ କାଗଜକଳ ଭିତରକୁ ଯିବାପାଇଁ ପ୍ରସ୍ତୁତ ହେଉଥାଉ, ଏହି ସମୟରେ ଫାକ୍‌ଟରୀ କର୍ତ୍ତୃପକ୍ଷ ସେଠାରେ ପହଞ୍ଚି ସୂଚାଇ ଦେଲେ ଯେ, ଦଶବର୍ଷରୁ ଛୋଟପିଲାମାନଙ୍କୁ କାରଖାନା ଭିତରକୁ ପ୍ରବେଶ କରିବାକୁ ଆଇନତଃ ନିଷିଦ୍ଧ କରାଯାଇଛି । ତେଣୁ ଆପଣଙ୍କ ପୁଅ ଭିତରକୁ ଯାଇ ପାରିବ ନାହିଁ । ପୁଅର କିନ୍ତୁ କାରଖାନା ବୁଲିଯିବା ପାଇଁ ଏକାଜିଦ୍ । ଅନେକ ବୁଝାଇଲା ପରେ ସେ ଓ ତା' ମା' ଗେଷ୍ଟ ହାଉସ୍‌ରେ ରହିଯିବାକୁ ରାଜିହେଲେ ଏବଂ ମୁଁ ଏକାଯାଇ ପେପର ମିଲ୍ ପରିଦର୍ଶନ କରି ଆସିବା ଠିକ୍ ହେଲା ।

ଆଜି ବି ମୋର ଠିକ୍ ମନେ ଅଛି, ମୁଁ ଯିବା ସମୟରେ ଚାରିବର୍ଷର ଛୋଟ ପିଲାଟି, ତାର ମନଭିତରର ଅନ୍ତର୍ଦ୍ୱନ୍ଦ୍ୱକୁ ପରିପ୍ରକାଶ କରି କହିଥିଲା, 'ବାପା, ମୁଁ ବଡ଼ହେଲେ ଏମିତି ଗୋଟେ କାରଖାନା କରିବି, ଯାହା ଭିତରକୁ କେବଳ ପିଲାମାନେ ଯାଇପାରିବେ, ବଡମାନଙ୍କୁ ତା ଭିତରକୁ ଛାଡ଼ିବି ନାହିଁ ।' ଚାରିବର୍ଷର ଛୋଟ ପିଲା, କିନ୍ତୁ କି ଉଚ୍ଚାଙ୍ଗ ଭାବନା । ଉଭୟ ସୁଖ ଓ ଦୁଃଖରେ ମୁଁ ମିଶ୍ରିତ ଭାବେ ତରଳି ଯାଉଥିଲି ।

ନବରଂଗପୁର ଫରେଷ୍ଟ ଡିଭିଜନ୍‌ରୁ ବଦଳି ହୋଇ ରାୟଗଡ଼ାରେ କାର୍ଯ୍ୟଭାର ଗ୍ରହଣ କରିବାର ମାତ୍ର ଚାରିମାସ ହୋଇଥାଏ । ୧୯୮୩ ମସିହା ମେ' ପହିଲା । ସେଦିନ ଥାଏ ରବିବାର । ସମୟ ରାତି ଦଶଟା ବାଜିବାକୁ ଯାଉଛି । ପ୍ରାୟ ଘଣ୍ଟାଏ ତଳେ ଆନ୍ଧ୍ରର ନଗର ଉନ୍ନୟନ କମିଶନର ଶ୍ରୀ ରେଡ୍ଡି ଆମ ବଂଗଳାକୁ ଆସିଥିଲେ । ରାୟଗଡ଼ ଫରେଷ୍ଟ ଡିଭିଜନ୍‌ର ନରଖାଦକ ଘୋଷିତ ମଣିଷଖିଆ ବାଘ ଶିକାର କରିବା ପାଇଁ ସେ ମହାଶୟ ସେହିଦିନ ଅପରାହ୍ନରେ ଆସି ରାୟଗଡ଼ାରେ ପହଞ୍ଚିଥାନ୍ତି । ତାଙ୍କ ଅନୁରୋଧ କ୍ରମେ ବାଘର ଗତିବିଧି ସଂପର୍କରେ ମୋ ପାଖରେ ଯେତିକି ଖବର ଥିଲା, ତା'ର ଆନୁଷଙ୍ଗିକ ସୂଚନା ଦେଇ, ଏଇମାତ୍ର ଅଳ୍ପ ସମୟ ପୂର୍ବରୁ ମୁଁ ତାଙ୍କୁ ବିଦାୟ ଦେଇଥାଏ । ଆସନ୍ତାକାଲି ସକାଳୁ ଶ୍ରୀ ରେଡ୍ଡି ନାରାୟଣପାଟଣା ରେଞ୍ଜର ଆଲମଣ୍ଡାଠାରେ କ୍ୟାମ୍ପ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ମିଷ୍ଟର ରେଡ୍ଡିଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ଶିକାରୀ ମଧ୍ୟ ନରଖାଦକ ବାଘଟିକୁ ମାରିବା ପାଇଁ ଅନୁମତିପ୍ରାପ୍ତ ହୋଇ ବିଗତ କିଛିଦିନ ହେଲା, ଯଥାକ୍ରମେ ନାରାୟଣ ପାଟଣାର ବନ୍ଧଗାଁ ଓ କୁମ୍ଭାରପୁଟଠାରେ କ୍ୟାମ୍ପ କରୁଥାନ୍ତି । ଜଣେକ ଶିକାରୀ ହେଲେ ଶ୍ରୀ ରଣେନ୍ଦ୍ର ପ୍ରତାପ ସିଂହଦେଓ; ଢେଙ୍କାନାଳ ମହାରାଜାଙ୍କର ସାନଭାଇ, ଅନ୍ୟଜଣକ ମାଡ୍ରାସର ନାମଜାଦା ଶିକାରୀ ଶ୍ରୀ କୃଷ୍ଣମୂର୍ତ୍ତି ।

ବିଗତ ତିନି ଚାରିବର୍ଷ ହେଲା, ରାୟଗଡ଼ ବନଖଣ୍ଡ ଅଂଚଳରେ ମଣିଷଖିଆ ବାଘର ଆତଙ୍କ ଉଣା ଅଧିକେ ଲାଗି ରହିଥାଏ । ଜଂଗଲ ଇଲାକାର ଆଦିବାସୀମାନେ ପ୍ରାୟତଃ ଆତଙ୍କିତ ଅବସ୍ଥାରେ ରହିଥାନ୍ତି । କେତେବେଳେ ବାଘ ମଣିଷ ମାରିଲାଣି ତ; କେତେବେଳେ ଗାଈ, ବଳଦ ଉଠେଇ ନେଲାଣି । ହପ୍ତାଏ, ଦୁଇହପ୍ତା ଅନ୍ତରରେ ଏମିତି କିଛି ବାଘ ଆକ୍ରମଣ ଖବର ଡିଭିଜନ୍ ଅଫିସକୁ ବରାବର ଆସୁଥାଏ । ନିକଟସ୍ଥ ଥାନାରେ ମଧ୍ୟ ଏତଲା ଦର୍ଜ ହେଉଥାଏ । ମୁଁ ଜଏନ୍ କରିବା ସମୟକୁ ପ୍ରାୟ ୨୩ଟି ମଣିଷ ବାଘ ଆକ୍ରମଣର ଶିକାର ହୋଇଥିଲେ ।

ଆକ୍ରମଣ ସଂକ୍ରାନ୍ତରେ ବିଭିନ୍ନ ସମୟରେ ମିଳିଥିବା ରିପୋର୍ଟକୁ ଅନୁଶୀଳନ କଲେ ଜଣା ପଡୁଥିଲା, ବାଘଟି ପ୍ରାୟ ୧୦ରୁ ୨୦ ଦିନ ବ୍ୟବଧାନରେ ମଣିଷ ଶିକାର କରୁଥିଲା । କୌଣସିଠାରେ ମଣିଷ ମାରିଲା ପରେ ବାଘଟି ପ୍ରାୟ ମାସେ ଦେଢ଼ମାସ ପର୍ଯ୍ୟନ୍ତ ସେ ଅଂଚଳକୁ ଆସୁ ନଥିଲା । ଅର୍ଥାତ୍ ବାଘଟି ନିଜ ସୁରକ୍ଷା ପାଇଁ ଯଥେଷ୍ଟ ଜାଗରୁକ ଥିଲା । କୁମ୍ଭାରପୁଟ ଗାଁକୁ କେନ୍ଦ୍ରକରି, ନାରାୟଣପାଟଣା, ବନ୍ଧଗାଁ, ରାୟଗଡ଼ ଏବଂ ଆନ୍ଧ୍ରପ୍ରଦେଶର ସୀମାନ୍ତରେ ଥିବା ପାର୍ବତୀପୁରମ୍ ସବ୍‌ଡ଼ିଭିଜନ୍‌ର ପାହାଡ଼ ପର୍ବତ ଥିଲା ତା'ର ଚରାଭୂଇଁ ।

୧୯୮୨ ମସିହା ଜୁଲାଇ ୩ ତାରିଖରେ ରାଜ୍ୟ ବନ ବିଭାଗର ମୁଖ୍ୟ ବନ୍ୟପ୍ରାଣୀ ସଂରକ୍ଷକ ଏହି ଜନ୍ତୁଟିକୁ ବିପଜ୍ଜନକ ବୋଲି ଘୋଷଣା କଲେ ଏବଂ ଏହାକୁ ମାରିବା ପାଇଁ ପୁରସ୍କାର ମଧ୍ୟ ଘୋଷଣା କରାଗଲା । ବାଘଟିକୁ ମାରି ନପାରି ଅନେକ ଶିକାରୀ ବ୍ୟର୍ଥ ହୋଇ ଫେରି ଯାଉଥିବାରୁ ଏବଂ ଜନସାଧାରଣଙ୍କ ମଧ୍ୟରେ ଆତଙ୍କ ଦିନକୁ ଦିନ ବଢୁଥିବାରୁ ପରିଶେଷରେ ଟଙ୍କା ବଦଳରେ ମୃତ ବାଘର ଚମଡା ଟ୍ରଫି ବା ପୁରସ୍କାର ବାଦଦରେ ମିଳିବ ବୋଲି ଘୋଷଣା କରାଗଲା । ଏହି ଘୋଷଣା ପରିପ୍ରେକ୍ଷୀରେ, ଉପରେ ସୂଚିତ ତିନିଜଣ ଶିକାରୀ ପୃଥକ୍ ଭାବରେ ବାଘ ଶିକାର କରିବା ପାଇଁ ଡି.ଏଫ୍.ଓ.ଙ୍କ ନିକଟରେ ଯଥାବିଧି ଅନୁମତିପ୍ରାପ୍ତ ହୋଇଥିଲେ ଏବଂ ରାୟଗଡ଼ ଡିଭିଜନର ବିଭିନ୍ନ ସମ୍ଭାବ୍ୟ ଅଂଚଳରେ ଡେରା ପକାଇ ରହୁଥିଲେ ।

ସେଦିନ ରାତି ପ୍ରାୟ ଦଶଟା, ସାଢ଼େ ଦଶଟା ସମୟରେ କଲିଂବେଲ୍ ବାଜିବାରୁ ମୁଁ ଉଠିଯାଇ କବାଟ ଖୋଲିଲି । ଆମେ ସେତେବେଳକୁ ରାତ୍ରୀଭୋଜନ ସାରି ଶୋଇବାର ଉପକ୍ରମ କରୁଥାଉ । ଦେଖିଲି, ସାମ୍‌ନାରେ ଠିଆ ହୋଇଛନ୍ତି ଅନ୍ୟତମ ଶିକାରୀ ଶ୍ରୀ ରଣେନ୍ଦ୍ର ପ୍ରତାପ ସିଂହଦେଓ । ଚେହେରାରେ କ୍ଳାନ୍ତିର ସୁସ୍ପଷ୍ଟ ଛାୟା । ଏ ଅସମୟରେ ଆସିବାର କାରଣ ପଚାରିବାରୁ, ବେଶ୍ ନିର୍ଲିପ୍ତ ଭାବରେ ସେ ଗଲାକାଲି ରାତିରେ ମଣିଷଖିଆ ବାଘଟିକୁ ମାରିଦେଇଛନ୍ତି ବୋଲି ଜଣାଇଲେ ।  ଯେଉଁ ନରଖାଦକକୁ ମାରିବା ପାଇଁ ବିଗତ ଦେଢ଼ବର୍ଷ ହେଲା ବିଭିନ୍ନ ସ୍ତରରେ ଚେଷ୍ଟା ଚାଲିଥିଲା ଏବଂ ଅତୀତରେ କଲିକତା, ମାଡ୍ରାସ, ନେପାଳ ଓ ସୁଦୂର ଆମେରିକାରୁ ମଧ୍ୟ ଶିକାରୀମାନେ ଆସି, କିଛିଦିନ ଚେଷ୍ଟାକରି ବିଫଳ ହୋଇ ଫେରିଯାଇଥିଲେ; ସେପରି ଏକ ଦୁରୂହ କାମ ଏତେ ସହଜରେ ସମାପନ ହୋଇଗଲା, ଏ କଥା ଭାବି ମୁଁ ପ୍ରଥମେ ହତଚକିତ ଓ ବିସ୍ମିତ ହୋଇପଡ଼ିଲି । କଥାଟାକୁ ଏପରି ସହଜ ଭାବରେ ଶ୍ରୀଯୁକ୍ତ ସିଂହଦେଓ ପ୍ରକାଶ କଲେ, ଯାହାକି ମୋତେ ବିଶ୍ୱାସ, ଅବିଶ୍ୱାସର ଦୋଛକିରେ ପହଞ୍ଚାଇ ଦେଲା ।

କିଛି ସମୟ ଡ୍ରଇଁ ରୁମ୍‌ରେ ସୋଫା ଉପରେ ଶାନ୍ତ ହୋଇ ବସିଲା ପରେ ମୋର ଅନୁରୋଧକ୍ରମେ ଶିକାରୀ ନିଜ ମୁହଁରେ ବର୍ଣ୍ଣନା କଲେ ବାଘ ଶିକାରର ସଫଳ କାହାଣୀ ।

ମାତ୍ର ଦୁଇଦିନ ତଳେ ଅର୍ଥାତ୍ ଅପ୍ରେଲ ୨୮ ତାରିଖ ଅପରାହ୍ଣରେ ଶ୍ରୀ ସିଂହଦେଓ ନାରାୟଣପାଟଣାଠାରେ ପହଞ୍ଚିଥିଲେ ।  ସାଙ୍ଗରେ ଥିଲେ ତାଙ୍କର ଆଉ ଚାରିଜଣ ସହଯୋଗୀ । ବନ୍ଧୁକ, ଗୁଳିଗୋଳା ଏବଂ ରାନ୍ଧିବା ପାଇଁ ସାଜସରଞ୍ଜାମ । ନାରାୟଣପାଟଣାଠାରୁ ଅନତିଦୂରରେ ଗୋଟିଏ ପରିତ୍ୟକ୍ତ ବିଟ୍ ହାଉସରେ ସେମାନେ କ୍ୟାମ୍ପକରି ରହିଲେ । ୨୯ ତାରିଖ ଦିନ ସେପରି ବିଶେଷ କୌଣସି ଘଟଣା ଘଟିନାହିଁ । ନିକଟସ୍ଥ 'ଡାବ୍‌ରି' ପାହାଡ଼ ଅଂଚଳରେ ଅନୁସନ୍ଧାନ ବେଳେ, ବର୍ଷା ହେତୁ ଓଦା  ଥିବା ମାଟିରେ ବାଘର ପାଦଚିହ୍ନ ଦେଖିବାକୁ ମିଳିଥିଲା । ସେମାନେ ଅନୁମାନ କଲେ, ବର୍ଷା ପରେ ଅର୍ଥାତ୍ ଗତ ୨୬ କିମ୍ବା ୨୭ ତାରିଖ ବେଳକୁ ବାଘ ତା'ର ଶେଷ ଶିକାରରୁ ଫେରିଛି ।

ତିରିଶ ତାରିଖ ଦିନ ଅପରାହ୍ଣ ପ୍ରାୟ ପାଞ୍ଚଟାବେଳେ ଦୁଇଜଣ ଆଦିବାସୀ ଲୋକ ଦୌଡ଼ିଦୌଡ଼ି ଆସି ଶିକାରୀ ଦଳକୁ ଖବର ଦେଲେ ବାଘ ପାଖ ଗାଁରେ ଗୋଟେ ଗାଈକୁ ମାରିଛି । ଘଟଣାସ୍ଥଳଟି 'ଡାବ୍‌ରି' ପାହାଡ଼କୁ ଯାଇଥିବା ନାରାୟଣ ପାଟଣା-ଖିଲୁଆ ଜଙ୍ଗଲ ରାସ୍ତାର ବାଁ ପଟକୁ ଥିଲା । ଶିକାରୀମାନେ ସେଠି ପହଞ୍ଚିଲାବେଳକୁ ସଂଧ୍ୟା ଆଗତ ପ୍ରାୟ ।

ବଡ ବଳଦଟାକୁ ବାଘ ଆକ୍ରମଣ କରି ଅର୍ଦ୍ଧମୃତ ଅବସ୍ଥାରେ ଛାଡ଼ିଦେଇ ଯାଇଛି । ବଳଦଟା ଯନ୍ତ୍ରଣାରେ ଆବାଜ କରି ପଡୁଥିଲା, ଉଠୁଥିଲା । କିନ୍ତୁ ଲୋକମାନେ ତାକୁ ନିକଟସ୍ଥ ଗୋଟେ ଗଛରେ ବାନ୍ଧିଦେଇଥିଲେ ।

ପାଖର ପୂରା ପାହାଡ଼ଟା ପୋଡୁଚାଷ ହୋଇଛି । ବଡ଼ ଗଛ କିଛି ନାହିଁ । କେବଳ ବୁଦୁବୁଦିଆ ଜଙ୍ଗଲ । ମଞ୍ଚା ବାନ୍ଧିବାର ଅନ୍ୟ କିଛି ଉପାୟ ନପାଇ, ପାହାଡ଼ କାନ୍ଥିରେ ଗୋଟିଏ ଉଚାଜାଗା ଦେଖି ଶିକାରୀ ଓ ତାଙ୍କର ଦୁଇଜଣ ବଂଧୁ ବନ୍ଧୁକ ଧରି ବସିଲେ । ପାହାଡ଼ ପଟକୁ ସେମାନେ ପିଠି କରିଥାନ୍ତି । ତେଣୁ ସେପଟୁ ବାଘ ଆକ୍ରମଣର ଆଶଙ୍କା ନଥାଏ । ଏମିତିରେ ରାତି ପ୍ରାୟ ସାତଟା ବାଜିଲା । ଗାଁରେ ଲୋକ ୨୦, ୨୫ ଜଣ ଯେଉଁମାନେ ଥିଲେ, ସେମାନେ ଧୀରେ ଧୀରେ ନିଜ ଘରକୁ ଫେରିଗଲେ । ଚାରିଆଡ଼େ ସେତେବେଳକୁ କିଟିକିଟି ବହଳ ଅଂଧାର ଛାଇଗଲାଣି । ଏହି ସମୟରେ ବେଶ୍ ଦୂରରେ, ପାହାଡ଼ ତଳ ଆଡ଼କୁ ମାଙ୍କଡ଼ମାନେ ଶବ୍ଦ କରିବାକୁ ଆରମ୍ଭ କଲେ । ଏହା ବାଘ ବା ହିଂସ୍ର ଜନ୍ତୁ ଆସିବାର ଏକ ସଂକେତ । ଶିକାରୀ ଏବଂ ତାଙ୍କ ସାଥୀମାନେ ଚୁପ୍‌ଚାପ୍ ନିଶବ୍ଦରେ ମଢ଼ ଉପରେ ନିଘା ରଖି ବସିଥାନ୍ତି ।

କିଛି ସମୟ ପରେ ସାମାନ୍ୟ ଖଡ଼୍‌ଖାଡ଼୍ ଶବ୍ଦ । ଡାଳପତ୍ର ମକଚି ହେବାର ଶବ୍ଦ । ବୋଧହୁଏ ବାଘଟି ବଳଦକୁ ସଂପୂର୍ଣ୍ଣ ମାରି ପାରି ନଥିବାରୁ ସନ୍ଦେହ ଥିଲା ଏବଂ ସେହି କାରଣରୁ ହଠାତ୍ ଶିକାର ସ୍ଥଳକୁ ବା ମଢ଼ ପଡ଼ିଥିବା ସ୍ଥାନକୁ ଆସୁ ନଥିଲା । ପୁଣି କିଛି ସମୟ ବିତିଗଲା । ବାଘ ଧୀରେ ଧୀରେ ଆସି ବଳଦ ନିକଟରେ ପହଞ୍ଚିଲା । ଚତୁଃପାର୍ଶ୍ୱକୁ ନିରୀକ୍ଷଣ କରି ଠିକ୍ ଖାଇବାକୁ ଆରମ୍ଭ କଲାବେଳକୁ ସାଥୀ ଜଣକ ସ୍ପଟ୍ ଲାଇଟ୍ ପକାଇଲେ । ବଳଦଟା ଅର୍ଦ୍ଧମୃତ ଅବସ୍ଥାରେ ରହିଛି । ଯନ୍ତ୍ରଣାରେ ଛଟପଟ ହୋଇ ସାମାନ୍ୟ ଉପରକୁ ଉଠୁଛି, ପୁଣି କଚାଡ଼ି ହୋଇ ପଡୁଛି । ବଳଦ ପଛପଟକୁ ବାଘ ବସିଥାଏ । ସ୍ପଟ୍ ଲାଇଟ୍ ଆଲୁଅରେ ବାଘ ବେକରେ ଚେନ୍‌ଟାଏ ଚକ୍‌ଚକ୍ କରୁଥିବାର ଦେଖାଗଲା । ଲାଇଟ୍ ପଡ଼ିବାରୁ ବାଘ ତର୍‌କି ଯାଇ ଚାଲିଯିବାକୁ ଉଦ୍ୟତ ହେଲା । କିନ୍ତୁ ପଳାଇଯିବା ପୂର୍ବରୁ ଶିକାରୀଙ୍କର ବନ୍ଧୁକରୁ ପ୍ରଥମ ଗୁଳି, ବାଘ ଛାତିର ବାଁପଟ ପଞ୍ଜରା ହାଡ ଉପରକୁ ବାଜିଲା । ବାଘଟି ଏକାଥରକେ ତଳେ ପଡ଼ିଗଲା । ବାଘ ମରିଯାଇଛି ବୋଲି ସଂପୂର୍ଣ୍ଣ ନିଶ୍ଚିତ ହେବା ପାଇଁ ଶିକାରୀ ଜଣକ ଠିଆ ହୋଇପଡ଼ି ଆଉ ଥରେ ଗୁଳି ଫୁଟାଇଲେ । ଗୁଳି ଶବ୍ଦ ଶୁଣି ପାଖ ଝୁମ୍‌କା ଗାଁର ଲୋକମାନେ ଧାଇଁ ଆସିଲେ । ବାଘଟି ମରିଯାଇଥିବାରୁ ସେମାନଙ୍କ ମନରେ

ବେଶ୍ ଉତ୍ସାହ ଓ ଉଦ୍ଦୀପନା । ଆଦିବାସୀ ସ୍ତ୍ରୀମାନେ ହୁଳହୁଳି ଦେଇ ଆନନ୍ଦରେ ନାଚିବାକୁ ଲାଗିଲେ ।

ଆଗରୁ ନିକଟସ୍ଥ ଗାଁ ଗଣ୍ଡାରେ ଏହି ବାଘଟି 'ଚେନ୍‌ବନ୍ଧା ବାଘ' ଭାବରେ ପରିଚିତ ଥିଲା । ଅନେକ ଆଦିବାସୀ ଲୋକ, ଯେଉଁମାନେ କି ସାମୟିକ ଭାବେ ପୂର୍ବରୁ ଏହି ବାଘକୁ ଦେଖିବାର ସୁଯୋଗ ପାଇଛନ୍ତି, ସେମାନେ କହୁଥିଲେ ବନ ବିଭାଗ, ସର୍କସ ବା ଚିଡ଼ିଆଖାନାରୁ ବାଘଟିଏ ଆଣି ଛାଡ଼ି ଦେଇଛି ଆମ ଜଙ୍ଗଲରେ । ଏହା ଫଳରେ ଜଙ୍ଗଲରୁ କାଠ କାଟିବାକୁ ଆଉ କେହି ଯିବେ ନାହିଁ । ଅନ୍ୟ କେତେଜଣଙ୍କ ମତରେ ଏହା ଥିଲା 'ପାଲଟା ବାଘ' । ଅର୍ଥାତ୍ କେଉଁ ଆଦିବାସୀ ଅବିବାହିତ ଯୁବକ ବନ୍ୟଜନ୍ତୁ ଆକ୍ରମଣରେ ଅକାଳରେ ପ୍ରାଣ ହରାଇ ବାଘ ପାଲଟିଛି ।

ବିଗତ ଦୁଇବର୍ଷ ହେଲା ଏହି ବାଘଟି ରାୟଗଡ଼ା, ନାରାୟଣପାଟଣା, ବନ୍ଧଗାଁ, ଗୁମ୍ମା, କୁମ୍ଭୀକୋଟା ଓ ଆନ୍ଧ୍ର ପ୍ରଦେଶର ପାର୍ବତୀପୁରମ୍ ଅଞ୍ଚଳରେ ତା'ର ମଣିଷ ମାରିବା ଅଭିଯାନ ଚାଲୁ ରଖିଥିଲା । ପରିଶେଷରେ ୧୯୮୩ ମସିହା ଏପ୍ରିଲ୍ ୩୦ ତାରିଖ ରାତି ସାତଟା ପନ୍ଦର ମିନିଟ୍‌ରେ ଏହି ଚେନ୍ ବନ୍ଧା ମଣିଷଖିଆ ବାଘ ଜୀବନର ପରିସମାପ୍ତି ଘଟିଲା ।

ଏହାଥିଲା ପଚିଶ ବର୍ଷ ତଳର କଥା । ସେତେବେଳେ ରାୟଗଡ଼ ଫରେଷ୍ଟ ଡିଭିଜନ୍‌ର ଦୁଇଟି ପ୍ରମୁଖ ସମସ୍ୟା ଭିତରୁ ଗୋଟିଏ ହେଉଛି ଜଙ୍ଗଲରୁ ରୀତିମତ କାଠଚୋରି ଏବଂ ବିଭିନ୍ନ ଷ୍ଟେସନମାନଙ୍କରୁ କାଠର ଚୋରା ଚାଲାଣ । ଦ୍ୱିତୀୟଟି, ଜଙ୍ଗଲ ସନ୍ନିକଟ ଆଦିବାସୀ ଗାଁମାନଙ୍କରେ ବାଘ ଆକ୍ରମଣ ଜନିତ କୋକୁଆଭୟ । ସେ ସମୟରେ ରାୟଗଡ଼ ଏବଂ କୋରାପୁଟରୁ ବାହାରୁଥିବା ତିନି ଚାରିଟି ପାକ୍ଷିକ ମାସିକ ସଂବାଦପତ୍ର ବରାବର ଏହି ଦୁଇଟି ଖବରକୁ ପ୍ରାଧାନ୍ୟ ଦେଇ ଛାପୁଥିଲେ ।

ପଚିଶ ବର୍ଷ ପରେ ୨୦୦୮ ମସିହା ଜାନୁୟାରୀ ମାସରେ ମୁଁ ଯେବେ ପଦୋନ୍ନତି ପାଇ ରାଜ୍ୟର ପ୍ରଧାନ ମୁଖ୍ୟ ବନ୍ୟପ୍ରାଣୀ ସଂରକ୍ଷକ ଭାବେ କାର୍ଯ୍ୟଭାର ଗ୍ରହଣ କଲି, ସେତେବେଳେ ମୋ ପାଇଁ ପ୍ରଥମ ଚମକପ୍ରଦ ସଂବାଦ ଥିଲା; ଯାହାକୁ ଦୁଃସମ୍ବାଦ ବୋଲି ମଧ୍ୟ କୁହାଯାଇପାରେ –ତାହା ହେଉଛି ଓଡ଼ିଶାରେ ବାଘ ସଂଖ୍ୟା ଆଶାତୀତ ଭାବେ ହ୍ରାସ ପାଇଛି । ନୂତନ 'କ୍ୟାମେରା ଟ୍ରାପ୍' ପଦ୍ଧତିରେ ଡେରାଡୁନ୍ ସ୍ଥିତ 'ଜାତୀୟ ବନ୍ୟପ୍ରାଣୀ ସଂସ୍ଥା' କରିଥିବା ଆକଳନ ଅନୁଯାୟୀ ରାଜ୍ୟରେ ମାତ୍ର ୪୦ଟି ବାଘ ଅଛନ୍ତି । ସେଥିରୁ

ଶିମିଳିପାଳ ବ୍ୟାଘ୍ର ଅଭୟାରଣ୍ୟରେ ମାତ୍ର କୋଡ଼ିଏଟି, ସାତକୋଶିଆ ଓ ସୁନାବେଡା ଜଙ୍ଗଲରେ ଅଳ୍ପକିଛି ସଂଖ୍ୟକ ବାଘ ରହିଛନ୍ତି । ହେଲେ କୋରାପୁଟ ବା ରାୟଗଡ଼ ଡିଭିଜନ୍‌ରେ ଗୋଟିଏ ହେଲେ ବାଘ ନାହାନ୍ତି ।

ବିଶ୍ୱାସ କରି ହେଲାନି ଏକଥା । ରାୟଗଡ଼ାର କୈଳାସକୋଟା ଘାଟି ଦେଇ ରାତିରେ ଯେଉଁମାନେ ବସ୍‌ରେ ବା ଜିପ୍‌ରେ ସେ ସମୟରେ ଯାଉଥିଲେ ସେମାନଙ୍କ ଭିତରୁ ଅନେକ ଘାଟି ଉପରେ ବାଘ ଦେଖିଥିବା କୁହନ୍ତି । ଗୁମ୍ମା ଘାଟି ଟପି କାଶୀପୁର ଆଡ଼କୁ ବା ଆଗରେ ଲକ୍ଷ୍ମୀପୁରଠାରୁ ବାଁ ପଟେ ନାରାୟଣ ପାଟଣା ଆଡ଼କୁ ବାଙ୍କିଗଲେ ବାଘ ସହିତ ଭେଟ୍‌ଭାଟ୍ ହୋଇଯିବାର ସଂଭାବନା ସେ ସମୟରେ ବେଶ୍ ଥିଲା । ଥରେ ଚନ୍ଦ୍ରପୁର ବ୍ଲକ୍‌ରୁ ତତ୍‌କାଳୀନ କୋରାପୁଟ ଜିଲ୍ଲାପାଳ ଓ ପୋଲିସ୍ ଅଧିକାରୀଙ୍କ ସହ ଫେରିବା ଅବସରରେ ରାତି ବାରଟା ପରେ ବିଷମକଟକ ରେଲୱେ ଲେଭଲ କ୍ରସିଂ ନିକଟରେ ବାଘ ଦେଖିଥିବା ପ୍ରସଂଗ ଲେଖକ ପୂର୍ବରୁ ବର୍ଣ୍ଣନା କରିଛି । ରାୟଗଡ଼ ଫରେଷ୍ଟ ଡିଭିଜନ୍ ଦାୟିତ୍ୱରେ ମୁଁ ଥିଲି ମାତ୍ର ଦେଢ଼ ବର୍ଷ । ସେହି ସ୍ୱଳ୍ପ ସମୟର ଅବଧି ଭିତରେ ଦ୍ୱିତୀୟ ଥର ପାଇଁ ଅନ୍ୟ ଏକ ନରଖାଦକ ବାଘ ଶିକାର ମୋ ଡିଭିଜନ୍‌ରେ ହୋଇଥିଲା । ସେଇଟି ଥିଲା ବାଘୁଣୀ- ଗୁମ୍ମା ଘାଟିର ବାଘୁଣୀ !

ରାୟଗଡ଼ା-କୋରାପୁଟ ରାସ୍ତାରେ ରାୟଗଡ଼ାଠାରୁ ୧୬ କିଲୋମିଟର ଗଲେ ପଡ଼ିବ ଛୋଟ ଗାଁଟିଏ- 'ଗୁମ୍ମା' । ପାହାଡ଼ୀ ଝରଣାଟିଏ ଯେଉଁଠି ମୁଖ୍ୟ ରାସ୍ତାକୁ ତିନିଥର ଅତିକ୍ରମ କରିଛି, ତାରି କୂଳରେ ଗଢ଼ି ଉଠିଛି ଗୁମ୍ମାର ଆଦିବାସୀ ବସତି । ଗାଁଠାରୁ ଅଳ୍ପବାଟ ଯିବାପରେ ଗୁମ୍ମାଘାଟିର ଆରମ୍ଭ । ଅଙ୍କାବଙ୍କା ହୋଇ ଘାଟି ରାସ୍ତା ଉଠିଯାଇଛି, ୨୫୦୦ ଫୁଟ ଉଚ୍ଚକୁ । ତାପରେ ଧୀରେଧୀରେ ଓହ୍ଲେଇ ଯାଇଛି 'ଫୁଲକଣା' ଉପତ୍ୟକାକୁ । ଘାଟି ରାସ୍ତାର ଦୁଇ କଡ଼ରେ ଘଞ୍ଚ ବାଉଁଶ ଜଙ୍ଗଲ ଓ ତା' ମଝିରେ ଦନ୍ତାରି, ନାଗ, ଅଇରି ଇତ୍ୟାଦି ଅନାବନା କଣ୍ଟାଗଛର ନଟି । ଘାଟି ତଳକୁ ଛୋଟିଆ ନାଳଟିଏ ବହିଯାଇଛି । ନାଁ ତାର 'ଫୁଲକଣା' । ମଝିରେ ମଝିରେ ନାଳ କଡ଼ରେ ଗୋଟେ ଯୋଡ଼େ ବଡ ଆମ୍ବ ବା କରଞ୍ଜ ଗଛ ମୁଣ୍ଡ ଟେକି ଛିଡ଼ା ହୋଇଛି । ଟିକେ ଦୂରକୁ ପାହାଡ଼ କାନ୍ଥିରେ ଶାଳ ଗଜାର ଜଙ୍ଗଲ, ଗୁମ୍ମା ଘାଟୀ ଫୁଲକଣା-ଗାଲି ପେଣ୍ଠିଲି ରାସ୍ତା କଡ଼ର 'ଦାସରିଗୁଡ଼ା' ଗାଁ, କାରାଗାଁ ଆଦି ପାଖ ଆଖରୁ କୋଡ଼ିଏ କିଲୋମିଟର ପରିମିତ ଅଞ୍ଚଳ ଥିଲା ବାଘୁଣୀର ଚରାଭୂଇଁ ।

ସ୍ଥାନୀୟ ସମ୍ବାଦପତ୍ର ଗୁଡ଼ିକରେ ଏକାଧିକବାର ପ୍ରକାଶ ପାଉଥିବା ବାଘ ଆକ୍ରମଣ ଜନିତ କ୍ଷୟକ୍ଷତିର ସମ୍ବାଦ, ଡିଭିଜନ୍‌ର ବିଭିନ୍ନ ଥାନାମାନଙ୍କରେ ରୀତିମତ ଦର୍ଜ

କରାଯାଉଥିବା। ବାଘ ବା ବାଘୁଣୀ ଆକ୍ରମଣରେ ମୃତାହତ ମଣିଷ କିମ୍ବା ଗାଈଗୋରୁଙ୍କ ରିପୋର୍ଟ ଏବଂ ସ୍ଥାନୀୟ ଜନପ୍ରତିନିଧିମାନଙ୍କର ଏ ସଂପର୍କରେ ଦୃଷ୍ଟି ଆକର୍ଷଣକାରୀ ଦରଖାସ୍ତଗୁଡ଼ିକୁ ବିଚାରକୁ ନେଇ ତତ୍କାଳୀନ ମୁଖ୍ୟ ବନ୍ୟଜନ୍ତୁ ତତ୍ତ୍ୱାବଧାରକ ଆଉ ଗୋଟିଏ ବାଘୁଣୀକୁ ନରଖାଦକ ବୋଲି ଘୋଷଣା କରିଦେଲେ ।

୧୯୮୪ ମସିହା ମାର୍ଚ୍ଚମାସ ବେଳକୁ, ବାଘୁଣୀଟିକୁ ମାରି ଲୋକଙ୍କୁ ଆତଙ୍କ କବଳରୁ ରକ୍ଷା କରିବା ପାଇଁ ମାଡ୍ରାସର ପ୍ରଖ୍ୟାତ ଶିକାରୀ ଶ୍ରୀଯୁକ୍ତ କୃଷ୍ଣମୂର୍ତ୍ତିଙ୍କୁ ଲାଇସେନ୍ସ ମିଳିଥାଏ । ସେ ତାଙ୍କର ଜନୈକ ସହକର୍ମୀଙ୍କ ସହିତ ନାରାୟଣପାଟଣା, କାରାଗାଁ ଓ ଗୁମ୍ମା ଘାଟି ଅଂଚଳରେ ପର୍ଯ୍ୟାୟକ୍ରମେ କ୍ୟାମ୍ପ କରି ବାଘୁଣୀର ଗତିବିଧି ଉପରେ ନଜର ରଖିଥାନ୍ତି । କୃଷ୍ଣମୂର୍ତ୍ତିଙ୍କର ସହକର୍ମୀଟି ତାଙ୍କ ଜିପ୍‌ର ଡ୍ରାଇଭର ଏବଂ ରୋଷେୟା ଭାବରେ ମଧ୍ୟ କାର୍ଯ୍ୟ ତୁଲାଉ ଥାଏ । ଥ୍ରୀ ଇନ୍ ୱାନ୍ । ସେହି ମାସ ୧୮ ତାରିଖ ରୂପକଣା ଗାଁରେ ବାଘୁଣୀ ପ୍ରାୟ ଭୋର ଚାରିଟା ବେଳକୁ ଗାଈଟିଏ ମାରି ଖାଇବାକୁ ଆରମ୍ଭ କରିଥିଲା । କିନ୍ତୁ ସ୍ଥାନୀୟ ଗାଁ ଲୋକମାନେ ନିଦରୁ ଉଠିପଡ଼ି ହୋହଲ୍ଲା କରିବାରୁ ବାଘ ନଖାଇ ପାରି ମଢ଼କୁ ଛାଡ଼ି ପଳେଇ ଗଲା । ଏହି ସପ୍ତାହରେ ବାଘୁଣୀକୁ ବିଭିନ୍ନ ସ୍ଥାନରେ ଲୋକମାନେ ଦେଖୁଥିବାର ଖବର ମିଳୁଥିଲେ ମଧ୍ୟ କୌଣସିଠାରେ ମଣିଷ ବା ଜୀବଜନ୍ତୁଙ୍କୁ ଆକ୍ରମଣ କରି ମାରିବାର ଖବର ନଥିଲା ।

ମାର୍ଚ୍ଚମାସ ୨୦ ତାରିଖ, ମଙ୍ଗଳବାର । ଦିନ ଦଶଟା ସମୟ । ସେଦିନ ଗୁମ୍ମାରେ ହାଟ ପାଳି । ସେହି ସୁଯୋଗରେ ଗୁମ୍ମା ହାଟରେ ଆଇନ ସହାୟକ ଶିବିରର ଆୟୋଜନ ମଧ୍ୟ କରାଯାଇଥାଏ । ଶହ ଶହ ଲୋକ ଜମାହୋଇଥାନ୍ତି । ହାଇକୋର୍ଟର ମାନ୍ୟବର ବିଚାରପତି, ଜିଲ୍ଲାଜଜ୍, ଅନ୍ୟାନ୍ୟ ବହୁ ସରକାରୀ କର୍ମଚାରୀ ତଥା ଆଡ୍‌ଭୋକେଟ୍‌ମାନେ ଉପସ୍ଥିତ ଥାଆନ୍ତି । ଆଇନ୍ ସହାୟକ ଶିବିରର ଉଦ୍‌ଯାପନ ପରେ ସରକାରୀ ଅଫିସର୍‌ମାନେ ନିଜ ନିଜ ଜିପ୍‌ରେ ରାୟଗଡ଼ାକୁ ଫେରିବାକୁ ଆରମ୍ଭ କରିଥାନ୍ତି । ଆଉ କିଛି ସମୟ ପରେ ହାଟ ସଉଦାସାରି ଲୋକମାନେ ଫେରିଥାନ୍ତେ ନିଜ ନିଜର ଗାଁକୁ ।

ଗୁମ୍ମାଠାରୁ ମୁଖ୍ୟରାସ୍ତାରେ ରାୟଗଡ଼ା ଦିଗକୁ ଗଲେ ଅନତିଦୂରରେ ବାଁ ପଟକୁ ଛୋଟ ପାହାଡ଼ୀ ନଈକୂଳରେ ପଡ଼ିବ ବନ ବିଭାଗର ସ୍ଥାୟୀ ନର୍ସରୀ । ସେଠୁ ପ୍ରାୟ ଶହେ ପଚାଶ ଗଜ ଦୂରରେ ରାସ୍ତାର ଡାହାଣ ପଟେ ପାଞ୍ଚଏକର ଟିକ୍ ପ୍ଲାଣ୍ଟେସନ୍ । ୧୯୭୨ ମସିହାରେ ଏହି ଗଛଗୁଡ଼ିକ ଲାଗିଥିଲା । ବିଗତ ବାର ବର୍ଷରେ ଗଛଗୁଡ଼ିକ ପ୍ରାୟ ପଚିଶ

ତିରିଶ ଫୁଟ ହୋଇଗଲାଣି । ଟିକ୍ ପ୍ଲାଣ୍ଟେସନ୍ ଭିତର ଦେଇ ସରୁ ପାଦଚଲା ରାସ୍ତାଟିଏ ପାହାଡ ସେପଟେ ଥିବା ଗାଁ'କୁ ଯାଇଛି । ପିଚୁ ରାସ୍ତାର ପ୍ରାୟ କୋଡ଼ିଏ ଗଜ ଭିତରୁ ଉକ୍ତ ପାଦଚଲା ରାସ୍ତାକଡରେ ଛକି ବସିଛି ବାଘୁଣୀଟିଏ । ବୋଧେ ଅପେକ୍ଷା କରିଛି ହାଟ ଫେରନ୍ତା ଲୋକମାନଙ୍କର ଆସିବା ବେଳକୁ ।

ସମୟ ଦିନ ଏଗାରଟା । ଜିପ୍‌ରେ ରାୟଗଡ଼ା ଆଡକୁ ଫେରୁ ଥିବାବେଳେ ଅକସ୍ମାତ୍ ବାଘୁଣୀ ଉପରେ ସ୍ଥାନୀୟ ଅନୁ ବିଭାଗୀୟ ଅଧିକାରୀଙ୍କର ନଜର ପଡ଼ିଗଲା । ସଂଗେ ସଂଗେ ଜିପ୍ ଫେରାଇ ଗୁମ୍ମା ଗାଁକୁ ଫେରିଗଲେ ଓ ପହଞ୍ଚିଲେ ସ୍ଥାନୀୟ ଫରେଷ୍ଟ ଗାର୍ଡ ବିଟ୍‌ରେ, ଯଉଁଠି କ୍ୟାମ୍ପ କରିଥିଲେ ମାଡ୍ରାସର ନାମଜାଦା ଶିକାରୀ ଶ୍ରୀ କୃଷ୍ଣମୂର୍ତ୍ତି । ଖବର ପାଇ ଶିକାରୀ ଜଣକ ସଂଗେ ସଂଗେ ନିଜର ଷ୍ଟେସନ୍ ୱାଗନରେ ବଂଧୁକଟିଏ ଧରି ବାହାରି ପଡ଼ିଲେ । ସଂଗରେ ଆସିଲେ ବିଟ୍ ଫରେଷ୍ଟ ଗାର୍ଡ । ବାଘୁଣୀ ବସିଥିବା ସ୍ଥାନରୁ କିଛି ବାଟ ଆଗକୁ ଗଲାପରେ ପୁଣି ଜିପ୍ ବ୍ୟାକ୍ କରି ପଛକୁ ଫେରିଲେ। ଏତେ ସମୟ ଧରି ବାଘୁଣୀଟି ସତେ ଯେପରି ଶିକାରୀଙ୍କ ଆଗମନକୁ ଅପେକ୍ଷା କରି ବସିଥିଲା । ଷ୍ଟେସନ୍ ୱାଗନରୁ ଓହ୍ଲେଇ ବନେଟ୍ ଉପରେ ବନ୍ଧୁକ ରଖି ଲକ୍ଷ୍ୟ ସ୍ଥିର କରି ଟ୍ରିଗର ଟିପିଲେ ଶିକାରୀ । ପ୍ରଥମ ଗୁଳିରେ ହିଁ ବାଘଟି ତଳେ ପଡ଼ିଗଲା । ବାଘଟି ମରିଛି ବୋଲି ନିଶ୍ଚିତ ହେବାପାଇଁ ପରେ ପରେ ଆଉ ଦୁଇଟି ଗୁଳି ଫୁଟାଇଲେ । ପ୍ରଥମ ଗୁଳିଟି ବାଘର ମୁଣ୍ଡରେ ବାଜିଥିଲା ।

ଗୁଳି ଶବ୍ଦ ଶୁଣି ହାଟରୁ ଲୋକମାନେ ସ୍ରୋତ ବେଗରେ ଛୁଟିଲେ ଘଟଣାସ୍ଥଳକୁ । ଆନନ୍ଦ କୋଳାହଳରେ ମାତିଗଲେ ଗୁମ୍ମା ତଥା ପାଖ ଆଖ ଗାଁର ସେଠି ରୁଣ୍ଡ ହୋଇଥିବା ସହସ୍ରାଧିକ ଜନତା । ବାଘର ଶରୀରକୁ ଷ୍ଟେସନ ୱାଗନ୍ ଉପରେ ଲଦି, ଗୁମ୍ମା ଗାଁରେ ଶୋଭାଯାତ୍ରା କରି ସାରିବା ପରେ ରାୟଗଡ଼ା ସହର ପରିକ୍ରମା କରି ପରିଶେଷରେ ଡି.ଏଫ୍.ଓ.ଙ୍କ ବାସଭବନ ହତାକୁ ଅଣାଯାଇଥିଲା । ମୋ ବାସଭବନରେ ସେଦିନ ସଂଧ୍ୟା ପର୍ଯ୍ୟନ୍ତ ମଣିଷଖିଆ ବାଘକୁ ଦେଖିବା ପାଇଁ ଶହ ଶହ ଲୋକଙ୍କର ଭିଡ଼ ଲାଗି ରହିଥାଏ । କିଏ ବାଘର ନିଶ ଛିଣ୍ଡେଇ ନେଉଥାଏ ତ କିଏ ଲାଞ୍ଜପଟୁ ଲୋମ ଛିଡ଼େଇ ନେଉଥାନ୍ତି । ମୃତ ବାଘର ନଖ ପାଇବା ପାଇଁ କେତେ ଲୋକ ମୋତେ ମିନତି କରୁଥାନ୍ତି । ଶେଷରେ ପୋଷ୍ଟମର୍ଟମ ପରେ ବାଘର ଛାଲ ଉତାରି ନେଲାପରେ ବାଘର ମାଂସ ବାଣ୍ଟିନେବାକୁ ମଧ୍ୟ ଶହଶହ ଲୋକ ରାତି ପର୍ଯ୍ୟନ୍ତ ଅପେକ୍ଷା କରି ରହିଥିଲେ । ବାଘ ନଖ, ଦାନ୍ତ, ବାଳ, ମାଂସ ଓ ମାଂସରୁ ବାହାରୁ ଥିବା ତୈଳର ବିଶେଷ ଉପକାରୀ ଗୁଣ ରହିଛି ବୋଲି ସାଧାରଣ ଲୋକଙ୍କ ବିଶେଷକରି ଆଦିବାସୀ ଲୋକମାନଙ୍କର ଅଗାଧ ବିଶ୍ୱାସ ।

ଘରେ ନପଶୁଣୁ ମୁଣ୍ଡରେ ଚାଳ ବାଜିଲା ଭଳି, ଫେବୃୟାରୀ ମାସରେ ରାୟଗଡ଼ ଡିଭିଜନ୍‌ରେ ଯୋଗ ଦେଉ ଦେଉ ଅପ୍ରେଲ ମାସ ବେଳକୁ ନାରାୟଣ ପାଟଣା ଠାରେ ନରଖାଦକ ବାଘ ଶିକାର ଭଳି ଘଟଣାଟି ଘଟିଗଲା । ପରେ ପରେ ମେ' ମାସ ବେଳକୁ ମୁନିଗୁଡ଼ା ରେଞ୍ଜର ଚନ୍ଦ୍ରପୁରୁ ସେକ୍‌ସନରେ ହାତୀ ଉପଦ୍ରବ ଘଟଣାନେଇ, ମୋତେ ସେଠାକୁ ବାରମ୍ବାର ଯିବାକୁ ପଡୁଥିଲା।

ମୁନିଗୁଡ଼ା ଯିବା ରାସ୍ତାରେ ପଡ଼େ ବିଷମକଟକ । ମିଶନ୍ ତରଫରୁ ପ୍ରତିଷ୍ଠିତ ହୋଇଥିବା ଖ୍ରୀଷ୍ଟିଆନ ହସ୍‌ପିଟାଲ ପାଇଁ ସେତେବେଳେ ବିଷମକଟକର ଯଥେଷ୍ଟ ନାଁ ଥିଲା । ଜୟପୁର ଓ କୋରାପୁଟ ଛଡା, ଆନ୍ଧ୍ରର ବିଜୟନଗରମ୍ ଓ ଶ୍ରୀକାକୁଲମ୍ ଜିଲ୍ଲାର ଅନେକ ଲୋକ, ସେ ସମୟରେ ବିଷମକଟକ ଡାକ୍ତରଖାନାକୁ ଜଟିଳ ରୋଗର ଚିକିତ୍ସା ପାଇଁ ଆସୁଥିଲେ । ବିଷମକଟକର 'ଚାଟିକେଣା' ଠାରେ ବନ ବିଭାଗର ସ୍ଥାୟୀ ନର୍ସରୀଟିଏ ଥିଲା । ନର୍ସରୀ ପଡ଼ିବା ଆଗରୁ ବାଁ ପଟକୁ ବାଙ୍କିଗଲେ ପଡ଼ିବ 'ଚାଟିକୋଣା' ମନ୍ଦିର । ପାହାଡ଼ ଉପରୁ ତଳକୁ ବୋହି ଆସିଛି କଳକଳ ଛଳଛଳ ଛୋଟ ଝରଣାଟିଏ । ବେଶ୍ ସୁନ୍ଦର ମନୋରମ ପରିବେଶ । ଅନତିଦୂରରେ ବିଷମକଟକ ରେଳଷ୍ଟେସନ । ଆନ୍ଧ୍ରର 'ବିଜୟନଗରମ୍' ଠାରୁ ରାୟଗଡ଼ ମୁନିଗୁଡ଼ା ଦେଇ ମଧ୍ୟପ୍ରଦେଶର (ସଂପ୍ରତି ଛତିଶଗଡ଼) ରାୟପୁରକୁ ଯାଇଥିବା ରେଳପଥର ଛୋଟ ଗୋଟିଏ ପାସେଞ୍ଜର ହଲ୍‌ଟ ।

ଚାଟିକୋଣା ମନ୍ଦିର କଡ଼ଦେଇ ଅଙ୍କାବଙ୍କା ରାସ୍ତାଟିଏ ଉପରକୁ ଉଠିଯାଇଛି, ନିୟମଗିରି ପାହାଡ଼କୁ । ବିରାଟ ଏଇ ପର୍ବତମାଳା । ଚାହିଁଲେ ଆଖି ପାଏନି । ବିଷମକଟକଠାରୁ ଲମ୍ବିଯାଇଛି କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ପର୍ଯ୍ୟନ୍ତ । ପାହାଡ଼ ସାରା ବୁଦୁବୁଦିକିଆ ଜଙ୍ଗଲ । କାଁ ଭାଁ ବଡ଼ ବଡ଼ ଗଛ ଦେଖିବାକୁ ମିଳିଥାଏ । ପାହାଡ଼ ଖୋଲମାନଙ୍କରେ ଦେଖିବାକୁ ମିଳେ ଆମ୍ବ, ପଣସ, ତେନ୍ତୁଳି ବା କେନ୍ଦୁଗଛ । ନହେଲେ ଚନ୍ଦାମୁଣ୍ଡ ପରି ପାହାଡ଼ସାରା ପୋଡୁଚାଷର ଚିତ୍ର । ନଣ୍ଡା ପାହାଡ଼ ।

ମନ୍ଦିର କଡ଼ଦେଇ ଯାଇଥିବା ପାହାଡ଼ୀ ରାସ୍ତାରେ ପାଞ୍ଚକୋଶ ଉପରକୁ ଚଢ଼ିଲେ ପଡ଼ିବ 'କୁରଲି' ଗାଁ । ଆଦିମ ଜନଜାତି ଡଙ୍ଗରିଆ କନ୍ଧଙ୍କ ବସତି । ବାଟରେ ଥରକୁ ଥର ରାସ୍ତାକାଟି ବୋହିଯାଉଛି 'ଗଦଗଦା' ନାଳ । ନିୟମଗିରି ପାହାଡ଼ ଡଙ୍ଗରିଆ କନ୍ଧମାନଙ୍କର ରାଇଜ । ନିୟମଗିରି ରାଜାଙ୍କ ବଂଶଧର ବୋଲି ସେମାନେ ନିଜକୁ ଭାବନ୍ତି । ମିଜାଜ୍ ମଧ୍ୟ ରାଜା ମିଜାଜ୍ । ପଇସା ହାତରେ ପଡ଼ିଲେ ମଦ, ମାଂସରେ ସବୁ ଉଡ଼େଇ ଦେବେ ।

ବେଶ ପୋଷାକରେ ମଧ୍ୟ ରାଜକୀୟ ଛାପ । ମୁଣ୍ଡରେ କଙ୍ଗି । ବେକରେ ସରିକି ସରି ନାନା କିସମର ମାଳି । ଦେହରେ ପଡ଼ିଥାଏ ପାଟ ଦୋସଡ଼ା ।

ଦିନେ ସକାଳୁ ସକାଳୁ ଆମେ 'କୁର୍ଲି' ଗାଁରେ ପହଞ୍ଚିଲୁ । ଦୁଇପଟେ ଦୁଇଧାଡ଼ି ନୁଆଁଣିଆ ଚାଳଛପର ଘର । ଗାଁ ମଝିରେ ପାଦଚଲା ରାସ୍ତାଟିଏ । ଶେଷ ମୁଣ୍ଡରେ ଡେଙ୍ଗୁ ଜାନୀର ଘର । ଗାଁର ମୁଖିଆ ସିଏ ।

ମୋ ସହିତ 'ଡଙ୍ଗରିଆ କନ୍ଧ ଉନ୍ନୟନ ସଂସ୍ଥା' ଅଧିକାରୀ ସାହୁବାବୁ ମଧ୍ୟ ଯାଇଥାନ୍ତି । ଡଙ୍ଗରିଆ କନ୍ଧମାନଙ୍କର ଉନ୍ନତି ପାଇଁ ସ୍ୱତନ୍ତ୍ର ଭାବେ ଏହି ସଂସ୍ଥାର ଅଫିସ୍ 'ଚାଟିକୋଣା' ଠାରେ ଖୋଲାଯାଇଛି ।

ଆମକୁ ଦେଖି ଡେଙ୍ଗୁ ଜାନୀ ତଳକୁ ଓହ୍ଲେଇ ଆସିଲା । ସକାଳୁ ସକାଳୁ ଦାଣ୍ଡ ପିଣ୍ଡାରେ ବସି ହୁକା ଟାଣୁଥିଲା । ଆମକୁ ଡାକିନେଲା ତା' ଘର ଭିତରକୁ । ଝାଟି ମାଟିର କାନ୍ଥ । କାଦୁଅରେ ଲିପା ହୋଇଛି । ନୁଆଣିଆଁ ଚାଳ । ବାଉଁଶ ପାଟିଆ ଓ ଜଙ୍ଗଲରୁ ମିଳିଥିବା ଘାସରେ ତିଆରି । ଘରର ଦୁଇପଟେ ଭୂଇଁଠାରୁ ଫୁଟେ ଉଚ୍ଚର ବାରଣ୍ଡା । ନଇଁ ଆସିଥିବା ଚାଳ ବାରଣ୍ଡାକୁ ଛୁଇଁଛି । ଆମେ ନଇଁ କରି ଭିତରେ ପଶିଲୁ । ଘର ଭିତର ବେଶ୍ ଅନ୍ଧାରୁଆ । ଘରର ମଝିରେ ଖୁଣ୍ଟକୁ 'କୁଳିମୁଣ୍ଡ' ବୋଲି ସେ ଆମକୁ ଚିହ୍ନାଇ ଦେଲା । ସେଥିରେ ପୂର୍ବପୁରୁଷର ଆତ୍ମା ରହେ ବୋଲି ସେମାନଙ୍କ ବିଶ୍ୱାସ । ପୂଜିଅ ପରବରେ ଖୁଣ୍ଟି ନିକଟରେ ବଳି ପଡ଼େ ।

ନିୟମଗିରି ପାହାଡ଼ଟା କନ୍ଧ ଜାତିର ସଂପତ୍ତି ବୋଲି ଅତୀତରେ ସେମାନଙ୍କ ଧାରଣା ଥିଲା । କିନ୍ତୁ ଦେଶ ସ୍ୱାଧୀନ ହେବା ପରେ ଗୁଜବ ହେଲା ଜଙ୍ଗଲ ସବୁ ସରକାରଙ୍କର ହୋଇଗଲା । ସେମାନଙ୍କର ଆଉ ଅଧିକାର ରହିବ ନାହିଁ । ଡଙ୍ଗରିଆ କନ୍ଧ ଆଉ ତେଣୁ ବଣଜଙ୍ଗଲ ପ୍ରତି ନିଘା ଦେଲାନି । ବଣ ଉଜୁଡ଼ିଗଲା । ଜଙ୍ଗଲ ନଥିବାରୁ ଯେତେସବୁ ଅଭାବ ଅସୁବିଧା ।

୧୯୭୮ ମସିହା ବେଳକୁ 'ଡଙ୍ଗରିଆ କନ୍ଧ ଉନ୍ନୟନ ସଂସ୍ଥା' ଆରମ୍ଭ ହୋଇଥିଲା । ସେମାନଙ୍କର ଉନ୍ନତିରେ ବାଧକ ସାଜିଥିଲା ଦୁଇଟି କଥା । ଗୋଟିଏ ନିଶା, ଅନ୍ୟଟି ପୋଡୁଚାଷ । ଉନ୍ନୟନ ସଂସ୍ଥା ଏହାକୁ ସୁଧାରିବାକୁ ପଦକ୍ଷେପ ନେଲା । ପୋଡୁଚାଷ ବନ୍ଦନ କରିବା ଏତେ ସହଜ ନୁହେଁ । ଏହା ଏକ ସାମାଜିକ ବିଧି । ଚଇତି ପର୍ବ,

ନୂଆଖିଆ, ଭୂମିପୂଜା ସହିତ ପୋଡୁଚାଷର ସଂପର୍କ । ତେଣୁ ପୋଡୁ ବା ଡଙ୍ଗର ଚାଷକୁ ସିଧାସଳଖ ବନ୍ଦନ କରି, ସେଠି ମିଶ୍ରିତ ଫଳଚାଷ ପାଇଁ ଉଦ୍ୟମ କରାଗଲା । ପାହାଡ଼ କାନ୍ଥିରେ କଦଳୀ, ସପୁରି ଆଦି ଫଳ ଗଛ ଲଗାଇ ଦେଇ କନ୍ଧ ପରିବାରମାନଙ୍କ ଭିତରେ ବାଣ୍ଟି ଦିଆଗଲା । ଆଗରୁ ତ ପାହାଡ଼ ଖୋଲମାନଙ୍କରେ ଅନେକ ପଣସ ଗଛ ଥିଲା । ଆମ୍ବ ଗଛ ବି ଥିଲା । ଫଳଚାଷରୁ ଡଙ୍ଗରିଆମାନେ ବେଶ୍ ଦି' ପଇସା ପାଇଲେ ।

'ଚାଟିକୋଣା'କୁ ଲାଗିଥିବା ବିଷମକଟକ ଷ୍ଟେସନ ପଡ଼ିଆରେ ଖରାଦିନେ ହଜାର ହଜାର ପାଚିଲା ପଣସ, ସପୁରି ଓ କଦଳୀ କାନ୍ଧି ଗଦା ହୋଇଥିବାର ଦୃଶ୍ୟ ଏବେ ବି ମନେ ପଡ଼ିଯାଏ । ଟ୍ରେନ୍‌ରେ ଲୋଡ୍ ହୋଇ ସେସବୁ ଏପଟେ ବିଜୟନଗରମ୍ ବା ସେପଟେ ମଧ୍ୟପ୍ରଦେଶର ରାୟପୁରକୁ ଚାଲାଣ ହେବା ଅପେକ୍ଷାରେ ଥାଏ । ଡଙ୍ଗରିଆ କନ୍ଧ ଉନ୍ନୟନ ସଂସ୍ଥାର ନିଷ୍ଠାପର ଉଦ୍ୟମରେ ଜନଜାତିମାନଙ୍କର ସାମାଜିକ ଅବସ୍ଥା ଅନେକଟା ସୁଧୁରି ଯାଇଥିଲା ।

ଗତବର୍ଷ (୨୦୦୭) 'ରାୟଗଡ଼ା କବିତା ଉତ୍ସବ' ଅବସରରେ ପୁଣି ଥରେ 'କୁର୍‌ଲି' ଗାଁକୁ ଯିବାର ସୁଯୋଗ ମିଳିଥିଲା । ଏବେ ଡଙ୍ଗରିଆ କନ୍ଧମାନଙ୍କ ମନରେ ପଚିଶବର୍ଷ ତଳର ହସ ଖୁସିଆ ମିଜାଜ୍, ଫୂର୍ତ୍ତି, ଉତ୍ସାହ ବା ଉନ୍ମାଦନା ମୁଁ କାହିଁକି ବାରି ପାରିଲି ନାହିଁ । ବୋଧହୁଏ ନିୟମଗିରି ପାହାଡ଼ରୁ 'ବକ୍‌ସାଇଟ୍' ଖଣିଜ ଦ୍ରବ୍ୟ ଉତ୍ତୋଳନ ପରିପ୍ରେକ୍ଷୀରେ ଏବେ ଯେଉଁ ଆନ୍ଦୋଳନ, ହୋହଲ୍ଲା, ପ୍ରଚାର, ପ୍ରସାର ଚାଲିଛି, ତାହା ତାକୁ ବିମର୍ଷ କରିଦେଇଛି । 'କୁର୍‌ଲି' ଗାଁରେ ଜଣେ ବୟସ୍କ କନ୍ଧ ବୁଢ଼ା ସହିତ ଦେଖାହେଲା । କଥାବାର୍ତ୍ତାରୁ ମନେହେଲା, ସେ ଯେମିତି ତା' ହଜିଯାଇଥିବା ଅତୀତର ସ୍ମୃତିଚାରଣ କରୁଛି ଏବଂ ବିଗତ ଦିନର ପରମ୍ପରାକୁ ଜାବୁଡ଼ି ଧରିବାର ବୃଥା ପ୍ରୟାସ କରୁଛି । ନିୟମଗିରି ପାହାଡ଼ ରାଇଜର ରାଜା ବୋଲାଉଥିବା ଡଙ୍ଗରିଆ କନ୍ଧ, ଏବେ ଯେମିତି ନିଜ ମୂଲକରେ ଦିନମଜୁରିଆ ଆଡ଼କୁ ଠେଲି ହୋଇ ଯାଉଛି । ଫେରିଆସି କବିତାଟିଏ ଲେଖିଥିଲି 'ମାରଫତଦାର' ! ଯାହା ପ୍ରକାଶ ପାଇଥିଲା ସଂପାଦକ ଶଶାଂକ ଚୂଡ଼ାମଣିଙ୍କ 'ବିଶ୍ୱମୁକ୍ତି' ପତ୍ରିକାରେ ।



## ବିଦାୟ ରାୟଗଡ଼ା !



୧୯୮୩ ମସିହା ଜୁଲାଇ ମାସ ପ୍ରଥମ ସପ୍ତାହ। ମୁଁ ରାୟଗଡ଼ା ଡିଭିଜନ୍‌ର କାର୍ଯ୍ୟଭାର ସଂଭାଳିବାର ପ୍ରାୟ ପାଞ୍ଚ ମାସ ବିତି ସାରିଥାଏ। ଡିଭିଜନର ସହକାରୀ ବନ ଅଧିକାରୀ (ଏ.ସି.ଏଫ) ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କର ଅନ୍ୟତ୍ର ବଦଳି ହୋଇଥାଏ। ତାଙ୍କ ସ୍ଥାନରେ କଳାହାଣ୍ଡି ବନଖଣ୍ଡରୁ ସ୍ଥାନାନ୍ତରିତ ହୋଇ ଶ୍ରୀ ଗଙ୍ଗାଧର ମିଶ୍ର ଆସିଥାନ୍ତି। ଜୁଲାଇ ମାସ ତିନି ତାରିଖ ଦିନ ଉଭୟଙ୍କ ମଧ୍ୟରେ ଦାୟିତ୍ୱ ହସ୍ତାନ୍ତର କାର୍ଯ୍ୟ ସମାପନ ହୋଇଥିଲା। ଉଭୟ ବିଦାୟୀ ଓ ନୂତନ ସହକାରୀ ବନ ଅଧିକାରୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଷ୍ଟାଫ୍ ମାନଙ୍କ ତରଫରୁ ସେଦିନ ରାତିରେ ଏକ ବିଦାୟକାଳୀନ ସଭା ଏବଂ ରାତ୍ରିଭୋଜନର ବନ୍ଦୋବସ୍ତ କରାଯାଇଥାଏ।

ଜୁଲାଇ ତିନି ତାରିଖ। ସଂଧ୍ୟା ସମୟ। ବେଳ ରତ ରତ ପ୍ରାୟ। ଦାଣ୍ଡପଟ ବାରଣ୍ଡାରେ ମୁଁ ସୋଫାରେ ବସି ଚା’ ପିଉଥାଏ। କିଛି ଜରୁରୀ ଫାଇଲ୍ ମଧ୍ୟ ଦେଖୁଥାଏ।

ଏହି ସମୟରେ ଦୁଇଜଣ ପ୍ରୋବେସନର ଏ.ସି.ଏଫ, ଶ୍ରୀ ସୁଧାକାର ମଲ୍ଲିକ ଓ ଶ୍ରୀ ରାଜକିଶୋର ସାହୁ ଆସି ପହଞ୍ଚିଲେ। ସେମାନଙ୍କ ସହିତ ବନ ଉନ୍ନୟନ ନିଗମର ରାୟଗଡ଼ାଠାରେ ଅବସ୍ଥାପିତ ଡେପୁଟି ସବ୍‌ଡ଼ିଭିଜନାଲ ମ୍ୟାନେଜର ମଧ୍ୟ ଆସିଥିଲେ। ମୁଁ ଭାବିଲି, ରାତିରେ ଆୟୋଜନ କରାଯାଇଥିବା ବିଦାୟକାଳୀନ ସଭା ଆସିଥିଲେ। ମୁଁ ଭାବିଲି, ରାତିରେ ଆୟୋଜନ କରାଯାଇଥିବା ବିଦାୟକାଳୀନ ସଭା ତଥା ଭୋଜିରେ ଯୋଗ ଦେବା ପାଇଁ ସେମାନେ ମୋତେ ଆମନ୍ତ୍ରଣ କରିବାକୁ ଆସିଛନ୍ତି। କିଂତୁ ସେମାନଙ୍କ ଠାରୁ ଯେଉଁ ସମ୍ବାଦଟି ଶୁଣିଲି, ତାହା ମୋତେ ହତଚକିତ କରିଦେଲା।

ଖବରଟି ଥିଲା, ଓଡ଼ିଶା ବନ ଉନ୍ନୟନ ନିଗମର, ମୁନିଗୁଡ଼ା ଡିଭିଜନର ଡେପୁଟି ସବ୍‌ଡିଭିଜନାଲ ମ୍ୟାନେଜରଙ୍କ ସୌଜନ୍ୟରୁ ରେଳ ୱାଗନରେ ଲଦା ହୋଇ କିଛି କାଠ ରାୟଗଡ଼ା ଷ୍ଟେସନ୍‌ରେ ଅଛି। ଯେହେତୁ କାଠ ଗଣ୍ଡିରେ ବନ ବିଭାଗର ହାମର ମାର୍କା ସ୍ପଷ୍ଟ ଦେଖାଯାଉ ନାହିଁ ଏବଂ କାଠଗୁଡ଼ିକ କଞ୍ଚା ଅଛି, ତେଣୁ ତାହା ଚୋରକାଠ ହୋଇପାରେ ବୋଲି ସେ ସନ୍ଦେହ କରୁଛନ୍ତି।

ବନ ବିଭାଗର ପ୍ରଥମ ଦାୟିତ୍ୱ ହେଲା ଜଙ୍ଗଲ ସୁରକ୍ଷା ଜଙ୍ଗଲରେଥିବା ମୂଲ୍ୟବାନ ଗଛ ଏବଂ ବନ୍ୟଜନ୍ତୁମାନଙ୍କର ସୁରକ୍ଷା। ରାୟଗଡ଼ା ବନଖଣ୍ଡ ଅଧିକାରୀ ଭାବେ ଦାୟିତ୍ୱ ନେବା ପରଠାରୁ, କେତେକ ଆନୁସଙ୍ଗିକ କାର୍ଯ୍ୟରେ ମୁଁ ଏମିତି ଧନ୍ଦି ହୋଇଗଲି ଯେ, ଏହି ମୌଳିକ ଦିଗଟି ପ୍ରତି ସଚେତନ ହୋଇପାରି ନ ଥିଲି। ପ୍ରଥମ ଦୁଇମାସ, ଡିଭିଜନର ରୌପ୍ୟ ଜୟନ୍ତୀ ଉତ୍ସବ ପାଳନରେ ମାତିଲି। ପରେ ପରେ ଚନ୍ଦ୍ରପୁରରେ ହାତୀ ଉପଦ୍ରବ ଏବଂ ଏପ୍ରିଲ ମାସ ଶେଷ ବେଳକୁ ନାରାୟଣପାଟଣା, କୁମ୍ଭୀକୋଟା, ବନ୍ଧଗାଁ ଅଞ୍ଚଳରେ ଆତଙ୍କ ସୃଷ୍ଟି କରୁଥିବା, ମଣିଷଖିଆ ବାଘ ଶିକାର। ଏହି ସବୁ କାରଣରୁ ରାୟଗଡ଼ା ଡିଭିଜନର ବ୍ୟାପକ ଭୌଗଳିକ ବ୍ୟାପ୍ତି ଓ ତା' ଭିତରେ ଥିବା ଜଙ୍ଗଲର ସ୍ଥିତି, ଅବସ୍ଥିତି ସଂପର୍କରେ ମୁଁ ସେତେଟା ସଚେତନ ହୋଇପାରି ନଥିଲି। ପ୍ରକାରାନ୍ତରେ କହିଲେ, ଜଙ୍ଗଲ ସୁରକ୍ଷାର ଏ ବିଶେଷ ଦିଗଟି ପ୍ରତି ମୁଁ ଯଥୋଚିତ ଧ୍ୟାନ ଦେଇପାରି ନଥିଲି।

ସଂଭବତଃ ଏହା ବି ହୋଇପାରେ ପୂର୍ବ ଡିଭିଜନ ନବରଂଗପୁର ନିକିତିରେ ମୁଁ ରାୟଗଡ଼ାକୁ ତଉଲୁ ଥିଲି। ନବରଂଗପୁର ବନଖଣ୍ଡ ସଦୃଶ ଏଠି ମଧ୍ୟ କାଠ

ମାଫିଆମାନଙ୍କର ଦୌରାତ୍ମ୍ୟ ନଥିବ ବା ଯୋଜନା ମୁତାବକ ସଂଘଟିତ ଭାବରେ କାଠଚୋରୀ ହୋଇ ବାହାରକୁ ଚାଲାଣ ହେଉ ନଥିବ। କିଂତୁ ଏଇଠି ମୁଁ ଠକିଗଲି। ଜବରଦସ୍ତ ଭାବେ ଠକିଗଲି। ଏହା ମୋ' ଚାକିରି ଜୀବନର ପ୍ରଥମ ଠୋକର କହିଲେ ଅତ୍ୟୁକ୍ତି ହେବ ନାହିଁ।

କାଠ ଚୋରା ଚାଲାଣ ସଂପର୍କରେ ସୂଚନା ପାଇବା ସଂଗେ ସଂଗେ, ଡିଭିଜନର ପ୍ରୋବେସନର ଏ.ସି.ଏଫ. ଦୁଇଜଣଙ୍କୁ ରାୟଗଡ଼ା ଷ୍ଟେସନ୍‌କୁ ଯାଇ ଏ ସଂପର୍କରେ ଅନୁସନ୍ଧାନ କରିବାକୁ ଆଦେଶ ଦେଲି। ବନ ନିଗମର ଡେପୁଟି ଏସ୍.ଡ଼ି.ଏମ୍.ଙ୍କୁ ମଧ୍ୟ ସେମାନଙ୍କୁ ସହାୟତା କରିବାକୁ ଅନୁରୋଧ ଜଣାଇଲି। ଶ୍ରୀ ସୁଧାକାର ମଲ୍ଲିକ ଏ.ସି.ଏଫ. ଶାରୀରିକ ଅସୁସ୍ଥତା ଦର୍ଶାଇ ଯିବାକୁ ଅମଙ୍ଗ ହେଲେ। ତେଣୁ ଅନ୍ୟ ଏ.ସି. ଏଫ.ଙ୍କୁ ରେଞ୍ଜ ଷ୍ଟାଫ୍‌ଙ୍କୁ ଧରି ସେଠାକୁ ଯିବାକୁ ନିର୍ଦ୍ଦେଶ ଦେଲି।

କିଛି ସମୟ ପରେ ଅତିକ୍ରାନ୍ତ ସଂଧ୍ୟାରେ ପୋଷାକପତ୍ର ପିନ୍ଧି ମୁଁ ଅଫିସ୍ ବାହାରି ଗଲି। ବଦଳି ହୋଇଯାଇଥିବା ରେଗୁଲାର ଏ.ସି. ଏଫ୍‌ଙ୍କୁ ବିଦାୟ ଓ ନୂତନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ନିମନ୍ତେ ଅଫିସ୍‌ରେ ଆୟୋଜନ ଚାଲିଥାଏ। ସେଠି ପହଞ୍ଚି ଶୁଣିଲି ଯେ, ସାହୁ ବାବୁ ମଧ୍ୟ ରେଲୱେ ଷ୍ଟେସନ୍‌କୁ ଯାଇନାହାନ୍ତି। କାରଣ ସେ ଖବର ପାଇଲେ ଯେ, ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ ରାୟଗଡ଼ା ରେଞ୍ଜ ଅଫିସ୍‌ର ଶ୍ରୀ ପ୍ରମୋଦ କୁମାର ଜେନା ଓ ଫରେଷ୍ଟର ଶ୍ରୀ ଖଣ୍ଡପାଣି ରାୟଗଡ଼ା ତଥା କେ. ସିଙ୍ଗପୁର ରେଳଷ୍ଟେସନ୍‌କୁ ଯାଇ ସାରିଛନ୍ତି। କେ.ସିଙ୍ଗପୁର ରେଲୱେ ୟାର୍ଡରେ ଚୋରାକାଠଗୁଡ଼ିକ ୱାଗନରେ ଲୋଡ଼ିଂ ହୋଇଥିବାର ସମ୍ବାଦ ମିଳିଥିଲା।

ଅଗତ୍ୟା, ଆମେ ସବୁ ଅଫିସ୍‌ରେ ବସି ରେଞ୍ଜ ଅଫିସରଙ୍କ ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରିଥାଉ। ସମୟ ଗଡ଼ି ଚାଲିଥାଏ। ରାତିର ବୟସ ବଢ଼ି ଚାଲିଥିବାରୁ ବିଦାୟକାଳୀନ ସଭାକାର୍ଯ୍ୟ ଶୀଘ୍ର ଆରମ୍ଭ କରିବାକୁ କର୍ମକର୍ତ୍ତାମାନେ ଥରକୁ ଥର ଆସି ଅନୁରୋଧ କରୁଥାନ୍ତି। ଅତ୍ୟଧିକ ବିଳମ୍ବ ହେଉଥିବାରୁ ଅଫିସରୁ ଗୋଟିଏ ଜିପ୍ ଦେଇ, ସେତେବେଳେ ଗୁଣୁପୁର ରେଞ୍ଜ ଦାୟିତ୍ୱରେ ଥିବା ଏ.ସି.ଏଫ ଶ୍ରୀ ମନମୋହନ ପାଣିଗ୍ରାହୀଙ୍କୁ ରେଲୱେ ଷ୍ଟେସନରୁ ଘଟଣାର ସତ୍ୟାସତ୍ୟ ବୁଝି ଆସିବା ପାଇଁ ପଠାଇଲି ଏବଂ ସଭାକାର୍ଯ୍ୟ ଆରମ୍ଭ କରିବାକୁ ପ୍ରସ୍ତୁତ ହେଲୁ।

କିଛି ସମୟ ପରେ ରେଞ୍ଜ ଅଫିସର ଶ୍ରୀ ଜେନା ଏବଂ ଫରେଷ୍ଟର ଶ୍ରୀ ଦଣ୍ଡପାଣି ଆସି ପହଞ୍ଚିଲେ। ସେମାନେ କେ.ସିଙ୍ଗପୁର ଷ୍ଟେସନକୁ ଯାଇ ମଧ୍ୟ ଅନୁସନ୍ଧାନ କରିଥିଲେ। ଅନୁସନ୍ଧାନରୁ ମିଳିଥିବା ତଥ୍ୟର ସାରାଂଶ ଏପରି ଥିଲା 'କାଠଗୁଡ଼ିକ କଳାହାଣ୍ଡି ଡିଭିଜନର ନର୍ଲା ରୋଡ଼ରୁ ଆସିଥିଲା ଏବଂ କଳାହାଣ୍ଡି ଫରେଷ୍ଟ ଡିଭିଜନରୁ ଦିଆଯାଇଥିବା ଅସଲି ପରମିଟ୍‌ରେ ଆସି ୱାଗନରେ ଲୋଡ୍ ହୋଇଥିଲା। ଏକଥା ସେମାନେ କେ. ସିଙ୍ଗପୁର ଷ୍ଟେସନ୍‌ର ବୁକିଙ୍ଗ୍ କ୍ଳର୍କ ଠାରୁ ବୁଝିଥିଲେ। ପରେ ରାୟଗଡ଼ା ଷ୍ଟେସନ୍‌କୁ ଯାଇ ସେଠାରେ ମଧ୍ୟ ଅନୁସନ୍ଧାନ କରିଥିଲେ। କିଂତୁ ସେତେବେଳକୁ,କାଠଲଦା ହୋଇଥିବା ୱାଗନ ରାୟଗଡ଼ା ଷ୍ଟେସନ୍ ପାର୍ ହୋଇଯାଇଥିଲା।

ରେଞ୍ଜ ଷ୍ଟାଫ୍‌ମାନଙ୍କର ବକ୍ତବ୍ୟକୁ ମୁଁ ସହଜରେ ବିଶ୍ୱାସ କରିଗଲି। ମୋର ଧାରଣା ଥିଲା,ଗୋଟିଏ ସଂସ୍ଥାକୁ ସୁଚାରୁ ରୂପେ ଚଳାଇବାକୁ ହେଲେ, ନିଜର ସହକର୍ମୀ ତଥା ଅଧସ୍ତନ କର୍ମଚାରୀଙ୍କୁ ପ୍ରଥମେ ବିଶ୍ୱାସକୁ ନେବାକୁ ପଡ଼ିବ। ଆସ୍ଥା ଓ ବିଶ୍ୱାସ ହିଁ ଦୃଢ଼ତାର ମୂଳମନ୍ତ୍ର। ଏଇଠି ମୁଁ ଠକି ଯାଇଥିଲି। କାରଣ ପରେ ଜଣାପଡ଼ିଲା, ରେଞ୍ଜ ଷ୍ଟାଫ୍‌ମାନଙ୍କର ବକ୍ତବ୍ୟ ସଂପୂର୍ଣ୍ଣ ମିଥ୍ୟା, ମନଗଢ଼ା ଓ କପୋଳକଳ୍ପିତ ଥିଲା।

ଏହି ଘଟଣାର ପାଞ୍ଚଦିନ ଅର୍ଥାତ୍ ଜୁଲାଇ ଆଠ ତାରିଖ ଦିନ ବ୍ରହ୍ମପୁର ଦୁର୍ନୀତି ନିବାରଣ ବିଭାଗର ଅଫିସରମାନେ ଆସି ଡିଭିଜନ କାର୍ଯ୍ୟାଳୟରେ ପହଞ୍ଚିଲେ। ସେମାନଙ୍କ ସୂତ୍ରରୁ ଜଣାପଡ଼ିଲା ଯେ ଯେଉଁ ପରମିଟ୍ ବଳରେ ରେଳ ୱାଗନରେ କାଠ ଲୋଡିଂ ଓ ବୁକିଂ ହୋଇଥିଲା, ସେଗୁଡ଼ିକ ଜାଲ୍, ନକଲି ଏବଂ ଚଞ୍ଚକତାପୂର୍ଣ୍ଣ। କାଠଗୁଡ଼ିକ ମଧ୍ୟ କୈଳାସକୋଟା ଘାଟୀର ରୋଡ଼ାଙ୍ଗୀ ଜଙ୍ଗଲରୁ ସଦ୍ୟ କଟାଯାଇ, ଚୋରାଚାଲାଣ କରାଯାଉଛି।

ଏକଥା ଶୁଣି ମନ ଚକ୍‌କର କାଟିଲା। ନବରଂଗପୁରରେ ସାଢ଼େ ତିନିବର୍ଷ ଡିଭିଜନ୍ ଦାୟିତ୍ୱରେ ଥିଲାବେଳେ ଏପରି ଅଭାବନୀୟ ପରିସ୍ଥିତିରେ ସାମ୍ନା କେବେ କରିବାକୁ ପଡ଼ିନଥିଲା। କାଳ ବିଳମ୍ବ ନ କରି, ଆମ ବନଖଣ୍ଡରେ ମାତ୍ର ପାଞ୍ଚଦିନ ତଳେ କାର୍ଯ୍ୟରେ ଯୋଗ ଦେଇଥିବା ଏ.ସି.ଏଫ.ଶ୍ରୀ ଗଙ୍ଗାଧର ମିଶ୍ରଙ୍କୁ ଘଟଣାଟି ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବାର ଦାୟିତ୍ୱ ଦେଲି। ଶ୍ରୀ ମିଶ୍ର ଜଣେ ଅଭିଜ୍ଞ ଅଫିସର୍। ଏହା ପୂର୍ବରୁ

ଅନେକ ଦିନଧରି କଳାହାଣ୍ଡି ଡିଭିଜନରେ ସେ ଦକ୍ଷତାର ସହ କାର୍ଯ୍ୟ କରିଥିଲେ। ନିଜେ ମଧ୍ୟ ସରଜମିନ ତଦନ୍ତ ପାଇଁ ଏ.ସି.ଏଫ୍ ଶ୍ରୀ ମିଶ୍ର ଓ ବନ ଉନ୍ନୟନ ନିଗମର ଡିଭିଜନାଲ୍ ମ୍ୟାନେଜରଙ୍କୁ ସାଙ୍ଗରେ ଧରି ରୋଡ଼ାଙ୍ଗୀ ଜଙ୍ଗଲ ପରିଦର୍ଶନରେ ବାହାରିଲି। ଉକ୍ତ ଜଙ୍ଗଲର ୧୯ ଓ ୨୦ ନମ୍ବର କୂପ୍‌ରେ ବନଉନ୍ନୟନ ନିଗମ କାରଣ କରୁଥିବାରୁ ନିଗମର ଡିଭିଜନାଲ ମ୍ୟାନେଜରଙ୍କୁ ପରିଦର୍ଶନ ବେଳେ ସାଙ୍ଗରେ ନେଇଥିଲି।

ରାୟଗଡ଼ା ସହରଠାରୁ କୋଡ଼ିଏ କିଲୋମିଟର ଦୂରରେ କୈଳାସକୋଟା ଘାଟୀ ଉପରେ ଅବସ୍ଥିତ। ରୋଡ଼ାଙ୍ଗୀ ସଂରକ୍ଷିତ ଜଙ୍ଗଲ। ସଦର ରାୟଗଡ଼ା ରେଞ୍ଜ ଅଧୀନସ୍ଥ, କୁମୁଡୁଲପେଟା ଫରେଷ୍ଟ ସେକ୍‌ସନ୍ ଓ କୈଳାସକୋଟା ବିଟ୍ ଗାର୍ଡ଼ଙ୍କ ଅଧୀନରେ ଥିବା ୧୯ ଏବଂ ୨୦ ନମ୍ବର ସିଲେକ୍‌ସନ୍ କୂପ୍‌ରେ ଯଥାକ୍ରମେ ୧୯୮୧-୧୯୮୨ ମସିହାଠାରୁ ବନ ନିଗମ, ମାର୍କା କରାଯାଇଥିବା ଗଛଗୁଡ଼ିକ କାଟିବାର ଦାୟିତ୍ୱ ନେଇଥିଲା। ଗଛଗୁଡ଼ିକ କାଟି, ରାୟଗଡ଼ାସ୍ଥିତ ନିଗମ ଡିପୋକୁ ବୋହିବା ନିମନ୍ତେ, କର୍ପୋରେସନ୍ ତରଫରୁ ଶ୍ରୀ ତାରିଣୀ ଚୌଧୁରୀ ଟ୍ରାନସ୍‌ପୋର୍ଟ କଂଟ୍ରାକ୍ଟରଙ୍କୁ ନିଯୁକ୍ତି ଦିଆଯାଇଥିଲା। ଅନୁସଂଧାନରୁ ଜଣାପଡ଼ିଲା, ସେ ମହାଶୟ ହିଁ ଏ ସମସ୍ତ ବେନିୟମ ଗଛକଟା ଓ ଚୋରା ଚଲାଣର ସୂତ୍ରଧର ଥିଲେ। ଶ୍ରୀ ଚୌଧୁରୀଙ୍କ ପ୍ରରୋଚନାରେ ଏବଂ ତାଙ୍କ ସହଯୋଗୀମାନଙ୍କ ଦ୍ୱାରା କର୍ପୋରେସନ୍ କାମ କରୁଥିବା କୂପ୍ ଗୁଡ଼ିକର ଆଠଚେନ୍ ଅବଧି ଭିତରେ ଥିବା ରାଜସ୍ୱ ଜଙ୍ଗଲରୁ ପ୍ରାୟ ୩୧ଟି ମୂଲ୍ୟବାନ ଶାଳ, ପିଆଶାଳ ଗଛ, ବିଗତ ୨୦ରୁ ୩୦ ଦିନ ଭିତରେ କଟାଯାଇଥିଲା। ସେହି ଜଙ୍ଗଲରେ ଗଛଗୁଡ଼ିକୁ ଗଡ଼ କରି, ଭଲ ଗଣ୍ଡିଗୁଡ଼ିକୁ ଟ୍ରକ୍‌ରେ ବୋହିନେଇ କେ.ସିଙ୍ଗପୁର ଷ୍ଟେସନ୍‌ରେ ଦୁଇଟି ୱାଗନରେ ଲୋଡକରି  ଯଥାକ୍ରମେ ପଞ୍ଜାବର ପାତିଆଲା ଓ ପଶ୍ଚିମବଙ୍ଗର ବର୍ଦ୍ଧମାନକୁ ପଠାଯାଇଥିଲା। ଜଙ୍ଗଲରେ ଛାଡ଼ିଯାଇଥିବା ବଳକା ୫୫ଟି କାଠଗଣ୍ଡିକୁ ଆମେ ସିଜ୍ କରିଥିଲୁ।

କଥାରେ କହନ୍ତି, କଟକ ସହର ବାଉନ ବଜାର, ତେପନ ଗଳି, ଯୁଆଡ଼େ ଯାଅ ଗଳି ଆଉ ଗଳି। ଗଳି ଭିତରେ ବଜାର। ସେହିପରି କୁହାଯାଇପାରେ ରାୟଗଡ଼ା ଡିଭିଜନ୍ ସାରା କେବଳ ଷ୍ଟେସନ୍ ହିଁ ଷ୍ଟେସନ୍। ଆନ୍ଧ୍ରର ବିଜୟନଗରମ୍ ଜଙ୍କସନ୍‌ରୁ ବାହାରି, ଜିମିଡ଼ିପେଟା ବା 'ଜେମାଦେଇ ପେଣ୍ଠ'ଠାରେ ଓଡ଼ିଶାରେ ପ୍ରବେଶ କରିଥିବା ଦକ୍ଷିଣ ପୂର୍ବ

ରେଳପଥ ଟିଟିଲାଗଡ଼ଠାରୁ ମଧ୍ୟ ପ୍ରଦେଶର ରାୟପୁର ନଚେତ ଓଡ଼ିଶାର ସମ୍ବଲପୁର, ଝାରସୁଗୁଡ଼ା ପର୍ଯ୍ୟନ୍ତ ଯାଇଛି । ଏହି ରେଳପଥରେ ରାୟଗଡ଼ା, ଜେକେପୁର, ଥେରୁବାଲି, କେ.ସିଙ୍ଗପୁର, ବିଷମକଟକର ଓ ମୁନିଗୁଡ଼ା ଷ୍ଟେସନ୍‌ରେ ସାଇଡିଂ ୟାର୍ଡ ଅଛି ଏବଂ ଏସବୁ ସ୍ଥାନରେ ୱାଗନ ଲୋଡିଂ ହେବାର ମଧ୍ୟ ବ୍ୟବସ୍ଥା ରହିଛି । କୈଳାସକୋଟା ଘାଟୀରୁ, କେ.ସିଙ୍ଗପୁର ବା ବିଷମକଟକ ଷ୍ଟେସନ୍‌କୁ ଚୋରାକାଠ ବୋହି ନେଇଗଲେ ମଧ୍ୟ ବାଟରେ ଏହାକୁ ଯାଞ୍ଚ କରିବାକୁ କୌଣସି ଫରେଷ୍ଟ ଚେକ୍ ଗେଟ୍ ପଡ଼ିବ ନାହିଁ ।

ଏ.ସି.ଏଫ. ଶ୍ରୀ ଗଙ୍ଗାଧର ମିଶ୍ରଙ୍କ ନେତୃତ୍ୱରେ ଗଠିତ ସ୍କ୍ୱାର୍ଡ ଉଭୟ ରୋଡ଼ାଙ୍ଗୀ ଜଙ୍ଗଲ ଏବଂ କେ.ସିଙ୍ଗପୁର ରେଳୱେ ଷ୍ଟେସନ୍‌ରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିଥିଲେ । ଶ୍ରୀ ମିଶ୍ର ପ୍ରଦାନ କରିଥିବା ତଥ୍ୟଭିତ୍ତିକ ରିପୋର୍ଟରୁ ଜଣାଗଲା ଜୁଲାଇ ୧ ତାରିଖରେ ଜେ.କେ.ପୁରର ଜନୈକ ଶ୍ରୀ ଜେନା, କେ.ସିଙ୍ଗପୁର ଷ୍ଟେସନ୍‌ରେ ୨୯ ଖଣ୍ଡ ଶାଳ, ପିଆଶାଳ ଗଣ୍ଡି ଗୋଟିଏ ୱାଗନରେ ବୁକ୍ କରିଥିଲେ । ୱାଗନଟି ପଶ୍ଚିମବଂଗର ବର୍ଦ୍ଧମାନକୁ ପଠାଯାଇଥିଲା । ଅନ୍ୟ ଏକ ୱାଗନରେ ୩୨ ଖଣ୍ଡ ଶାଳକାଠ ଗଣ୍ଡି, ସେହି ଜେକେପୁରର ଅନ୍ୟ ଜଣେ ବ୍ୟକ୍ତି ୟୁ.କେ. ସାହୁଙ୍କ ଦ୍ୱାରା ପଞ୍ଜାବର ପାତିଆଲାକୁ ବୁକ୍ କରାଯାଇଥିଲା । ଉଭୟ ୱାଗନ ସକାଳ ଛଅଟା ତିରିଶ ମିନିଟ୍‌ରେ କେ.ସିଙ୍ଗପୁର ଷ୍ଟେସନ୍ ଛାଡ଼ି, ରାୟଗଡ଼ା ଷ୍ଟେସନ୍‌ରେ ସେହିଦିନ ସକାଳ ସାତଟା ପନ୍ଦର ମିନିଟ୍‌ରେ ପହଞ୍ଚିଥିଲା ଏବଂ ସେଠାରୁ ରାତି ଏଗାରଟା ପଚିଶ ମିନିଟ୍‌ରେ ଗନ୍ତବ୍ୟସ୍ଥଳ ଅଭିମୁଖେ ଯାତ୍ରା କରିଥିଲା । ମିଳିଥିବା ତଥ୍ୟରୁ ଏତିକି ଅନ୍ତତଃ ନିଶ୍ଚିତ ହୋଇଗଲା ଯେ, ତିନିତାରିଖ ସଂଧ୍ୟାବେଳକୁ ୱାଗନ ଦୁଇଟି ରାୟଗଡ଼ା ଷ୍ଟେସନ୍ ଛାଡ଼ି ଦେଇଥିବା ସଂପର୍କରେ ରେଞ୍ଜ ଅଫିସର୍ ଓ ତାଙ୍କ ଷ୍ଟାଫ୍ ଯେଉଁ ସମ୍ବାଦ ଆମକୁ ଦେଇଥିଲେ, ତାହା ସଂପୂର୍ଣ୍ଣ ମିଥ୍ୟା ଥିଲା । ସମଗ୍ର ଘଟଣାଟି ବନ ବିଭାଗର ରେଞ୍ଜ ଷ୍ଟାଫ୍ ଏବଂ ଷ୍ଟେସନ୍‌ର ବୁକିଙ୍ଗ୍ ଷ୍ଟାଫ୍‌ମାନଙ୍କ ମଧ୍ୟରେ ଅସାଧୁ ସଂପର୍କ ଥିବା ବିଷୟକୁ ଇଂଗିତ କରୁଥିଲା ।

ୱାଗନରେ ଚାଲାଣ କରାଯାଇଥିବା ମାଲ, ଜେକେପୁରର ଯେଉଁ ଦୁଇଜଣ ବ୍ୟକ୍ତିଙ୍କ ନାମରେ ବୁକ୍ ହୋଇଥିଲା, ସେଠାରେ ସେପରି ନାମଧାରୀ କୌଣସି ବ୍ୟକ୍ତି ନଥିବାରୁ ଜଣାପଡ଼ିଲା । ଯେଉଁ ଦୁଇଟି ପରମିଟ୍ ବଳରେ ମାଲ ଚାଲାଣ ନିମନ୍ତେ କାଗଜପତ୍ର ପ୍ରସ୍ତୁତ କରାଯାଇଥିଲା, ସେଗୁଡ଼ିକ ହେଲା ରାୟଗଡ଼ା ଡିଭିଜନର ୩୨୭

ନମ୍ବର ପରମିଟ୍ ବହିର ୨୯ ନମ୍ବର ପରମିଟ୍ ଏବଂ ୩୨ ନମ୍ବର ବହିର ୩୦ ନମ୍ବର ପରମିଟ୍। ଏହି ପରମିଟ୍ ଦୁଇଟି ଅନେକ ବର୍ଷ ତଳୁ ଅର୍ଥାତ୍ ୧୯୭୫ ମସିହା ଅଗଷ୍ଟ ଓ ସେପ୍ଟେମ୍ବର ମାସରେ ବିଷମକଟକ ରେଂଜରୁ ଇସ୍ୟୁ ହୋଇଥିଲା। ଜଣାଗଲା ଲୋକ ନକଲି ପରମିଟ୍ ମଧ୍ୟ ନକଲି । ଘଟଣାଟି କ୍ରମଶଃ ଅଧିକରୁ ଅଧିକ ଜଟିଳ ହୋଇପଡୁଥିଲା।

ସମସ୍ତ ଘଟଣା ଓ ପରିସ୍ଥିତିକୁ ବିଶ୍ଳେଷଣ କରି, ସେହି ମାସ ୧୩ ତାରିଖରେ ପାତିଆଲା ଏବଂ ବର୍ଦ୍ଧମାନର ଡ଼ି.ଏଫ.ଓ. ସେଠିକାର ରେଲୱେ ଷ୍ଟେସନ୍ ମାଷ୍ଟର ତଥା ସୁପରିଣ୍ଟେଣ୍ଡେଟ୍‌ଙ୍କୁ ଦୁଇଟି ୱାଗନ (ନିର୍ଦ୍ଦିଷ୍ଟ ନମ୍ବର ସହ) ରିଲିଜ ନକରି, ଜବତ କରିବାକୁ ଟେଲିଗ୍ରାମ ଜରିଆରେ ଅନୁରୋଧ କରାଗଲା। ପାତିଆଲା ଓ ବର୍ଦ୍ଧମାନର ପୋଲିସ୍ ଅଧୀକ୍ଷକଙ୍କୁ ମଧ୍ୟ ଏହାର ନକଲ ଦିଆଯାଇଥିଲା। ଟେଲିଗ୍ରାମ ପାଇ ସେମାନେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେଲେ। କିଂତୁ ଏହା ପରେ ପରେ କାଠ ମାଫିଆମାନେ ଅଧିକ ସକ୍ରିୟ ହୋଇଉଠିଲେ ଏବଂ ତିନି ଚାରି ଦିନ ଭିତରେ ମୁନିଗୁଡ଼ା ସବ୍‌ପୋଷ୍ଟ ଅଫିସ୍‌ରୁ ମୋ ନାଁରେ (ଟେଲିଗ୍ରାମ୍‌ରେ ଲେଖାଥିଲା ଡି.ଏଫ.ଓ. ପଟ୍ଟନାୟକ) ପାତିଆଲା ଓ ବର୍ଦ୍ଧମାନର ଫରେଷ୍ଟ ଅଫିସର୍ ଓ ଷ୍ଟେସନ୍ ମାଷ୍ଟରଙ୍କୁ ଚାରୋଟି କାଳ୍ପନିକ ଟେଲିଗ୍ରାମ ପଠେଇ ଦେଲେ। ସେଥିରେ ଲେଖାଯାଇଥିଲା। ଅନୁସନ୍ଧାନରୁ ଜଣାପଡ଼ିଲା, ସବୁ ଠିକ୍ ଠାକ୍ ଅଛି। ତେଣୁ ଜବତ କରାଯାଇଥିବା ୱାଗନଗୁଡ଼ିକୁ ମୁକ୍ତ କରିଦିଆଯାଉ।

ଆମର ପ୍ରଥମ ଟେଲିଗ୍ରାମ ପାଇଲା ପରେ, ପାତିଆଲା ଡ଼ି.ଏଫ.ଓ. ସଂପୃକ୍ତ ଷ୍ଟେସନ୍ ମାଷ୍ଟରଙ୍କୁ ୱାଗନଟିକୁ ଜବତ କରିବାକୁ ଲିଖିତ ଭାବେ ଜଣାଇଥିଲେ। କିଂତୁ ପରବର୍ତ୍ତୀ ଜାଲ ଟେଲିଗ୍ରାମ ପାଇଲାପରେ, ପାତିଆଲା ଷ୍ଟେସନ୍‌ରେ ମୁଖ୍ୟ ୱାଗନଟିକୁ ରିଲିଜ୍ କରିଦେଲେ।

କାଠ ଚୋରୀ ପଛରେ ଯେ ଗୋଟିଏ ସୁସଂଗଠିତ ର୍‍ୟାକେଟ୍ କାମ କରୁଛି ଏକଥା କ୍ରମଶଃ ସ୍ପଷ୍ଟହୋଇ ଆସୁଥିଲା। ଏସବୁ ଘଟଣା ଘଟିବା ସମୟରେ, ପଞ୍ଜାବରେ ଆତଙ୍କ ତଥା ଗଣ୍ଡଗୋଳର ନିଆଁ ଜଳୁଥାଏ। ହାଣକାଟ୍, ଲୁଟ୍, ଡରାଜ, ମର୍ଡର, ଘରପୋଡ଼ି ଆଦି ଆତଙ୍କବାଦୀ କାର୍ଯ୍ୟକଳାପ। ପଞ୍ଜାବ ସେତେବେଳେ ଅରାଜକତାର ଚରମ ସୀମାରେ ଥିଲା କହିଲେ ଚଳେ। ତଥାପି ମଧ୍ୟ ଜଣେ ଯୁବ ଓ କର୍ମଠ ରେଞ୍ଜ ଅଫିସର ଶ୍ରୀ ଦୟାନିଧି ତ୍ରିପାଠୀ। (ବର୍ତ୍ତମାନ ସେ ବ୍ରହ୍ମପୁରଠାରେ ଅବସ୍ଥାପିତ), ପାତିଆଲା ଯାଇ

ବିଷଦ ଅନୁସନ୍ଧାନ କରିବାକୁ ସମ୍ମତ ହେଲେ। ତାଙ୍କୁ ରାଜ୍ୟ ବାହାରକୁ ପଠାଇବା ପାଇଁ, କୋରାପୁଟ କଞ୍ଜରଭେଟରଙ୍କ ଜରିଆରେ ରାଜ୍ୟ ସରକାରଙ୍କର ଅନୁମତି ଲୋଡ଼ା ଗଲା। କିଂତୁ ଅନୁମତି ମିଳିବାରେ ମାତ୍ରାଧିକ ବିଳମ୍ବ ହେବାରୁ ଏବଂ କାଠ ମାଫିଆମାନେ ସମସ୍ତ ସାକ୍ଷ୍ୟ-ପ୍ରମାଣ ନଷ୍ଟ କରି ଦେବାର ଭୟ ଥିବାରୁ, କଞ୍ଜରଭେଟରଙ୍କ ଅନୁମତିକ୍ରମେ, ଦୟାନିଧି ତ୍ରିପାଠୀଙ୍କୁ ପଞ୍ଜାବର ପାତିଆଲା ଏବଂ ଜହରଲାଲ ଦାସଙ୍କୁ ପଶ୍ଚିମବଂଗର ବର୍ଦ୍ଧମାନକୁ ପଠାଗଲା।

ସରକାରଙ୍କର ଅନୁମତି ହାସଲ ନ କରି ତ୍ରିପାଠୀଙ୍କୁ ପାତିଆଲା ଭଳି ଏକ ସ୍ପର୍ଶକାତର ଓ ବିପଦପୂର୍ଣ୍ଣ ଜାଗାକୁ ପଠାଇଥିବାରୁ, ତାଙ୍କ ବାପ ଅଫିସ୍‌କୁ ଆସି ମୋତେ ଧମକେଇଲେ ଏବଂ ତାଙ୍କ ପୁଅର କିଛି କ୍ଷତି ହେଲେ ମୋ ନାଁରେ ପୋଲିସ୍ କେଶ୍ କରିବେ ବୋଲି ପ୍ରକାଶ କରିଥିଲେ। । କିନ୍ତୁ ଭଗବାନଙ୍କ କୃପାରୁ, ଅନୁସନ୍ଧାନ କାର୍ଯ୍ୟ ସମାପନ କରି ଶ୍ରୀ ତ୍ରିପାଠୀ ପାତିଆଲାରୁ ସକୁଶଳେ, ଅକ୍ଷତ ଅବସ୍ଥାରେ ଫେରି ଆସିଥିଲେ।

ତ୍ରିପାଠୀଙ୍କ ପ୍ରଦତ୍ତ ରିପୋର୍ଟରୁ ଜଣାପଡ଼ିଲା, ପାତିଆଲାଠାରେ ବନବିଭାଗର ଡି.ଏଫ.ଓ. ବା କଞ୍ଜରଭେଟରଙ୍କ ଠାରୁ କୌଣସି ସହାୟତା ନ ପାଇ ସେ ସ୍ଥାନୀୟ ପୋଲିସ୍ ଲାଇନ୍‌ରେ ସେଠିକାର ଏସ.ପି. ମହୋଦୟଙ୍କୁ ଭେଟିଥିଲେ ଏବଂ ତାଙ୍କ ଠାରୁ ଆଦେଶନାମା ନେଇ ସିଟି ଡି.ଏସ୍‌ପି.ଙ୍କୁ ଦେଇଥିଲେ। ଡି.ଏସ.ପି. ମହୋଦୟ, ପଞ୍ଜାବରେ ଆତଙ୍କବାଦୀ କାର୍ଯ୍ୟକଳାପ ଲାଗି ବ୍ୟସ୍ତ ରହିଥିବାରୁ, ଅନୁସନ୍ଧାନରେ ଅଧିକ ମୁଣ୍ଡ ନ ଖେଳେଇବାକୁ ପରାମର୍ଶ ଦେଇଥିଲେ। ଏଥିରେ ଜୀବନହାନୀର ଆଶଙ୍କା ଅଛି ବୋଲି ମଧ୍ୟ ସତର୍କ କରାଇଦେଇଥିଲେ।

ଏସବୁ ସତ୍ତ୍ୱେ ସାହସ ଓ ଦୃଢ଼ତାର ସହିତ ଶ୍ରୀ ତ୍ରିପାଠୀ ଦ୍ୱିତୀୟଦିନ ପାତିଆଲା ରେଳଷ୍ଟେସନ୍‌କୁ ଯାଇ ସଂପୃକ୍ତ ରେଳ ଅଧିକାରୀମାନଙ୍କୁ ଭେଟିଥିଲେ । ସେଠାରୁ ତଥ୍ୟ ସଂଗ୍ରହ କରି କାଠ ଡେଲିଭରି ନେଇଥିବା 'ଧିମାନ ଉଡ୍‌ଷ୍ଟୋର'କୁ ଯାଇଥିଲେ। ଅଧିକାଂଶ କାଠ ଏ ଭିତରେ ଚିରା ହୋଇ ବିକ୍ରୀ ସରିଥିଲା। କାଗଜପତ୍ର ତନଖିରୁ ଜଣାପଡ଼ିଲା ସେମାନେ ଏହି କାଠକୁ ଓଡ଼ିଶାର ଅମ୍ବାଦୋଳାର ଜନୈକ ଓ.ପି.ଶର୍ମା ଏବଂ

ଅର୍ଜୁନ ଦାସ ଅଗ୍ରଓ୍ୱାଲାଙ୍କଠାରୁ ଟ. ୯୦,୦୦୦ ଙ୍କାରେ କଣିଛନ୍ତି। ସମସ୍ତ ଆବଶ୍ୟକୀୟ ଚାଲଣପତ୍ର ଶ୍ରୀ ତ୍ରିପାଠୀ ଜବତ କରିଥିଲେ।

ତୃତୀୟଦିନ ଧିମାନ ଷ୍ଟୋରର ମାଲିକ, ତ୍ରିପାଠୀ ରହିଥିବା ହୋଟେଲକୁ ଆସି, ମୂଳ କାଗଜପତ୍ର ଓ ଦଲିଲ ଇତ୍ୟାଦି ନେଇଯିବାକୁ ଚାହିଁଲା। ସଂଗେ ସଂଗେ ଓଡ଼ିଶା ଫେରି ନ ଗଲେ, ବିପଦର ସଂଭାବନା ଅଛି ବୋଲି ମଧ୍ୟ ରେଂଜ ଅଫିସରଙ୍କୁ ସତର୍କ କରେଇଦେଲା। ଅଗତ୍ୟା ଶ୍ରୀ ତ୍ରିପାଠୀ, କେବଳ କାଗଜପତ୍ରର ଜେରୋକ୍ସ୍ କପି ଧରି ସେହିଦିନ ଅପରାହ୍ନରେ ହିଁ ଅମ୍ୱାଲାକାଣ୍ଟରୁ ଦିଲ୍ଲୀ ବସ୍ ଯୋଗେ ଫେରି ଆସିଥିଲେ।

ତ୍ରିପାଠୀଙ୍କ ରିପୋର୍ଟକୁ ଅନୁଶୀଳନ କଲାପରେ ଜଣାପଡ଼ିଲା, ଏହି କାଠଚୋରୀ ପଛରେ ଏକ ସୁସଂଗଠିତ ଠକଦଳ କାମ କରୁଛନ୍ତି। ସେମାନଙ୍କ ସହିତ ରାୟଗଡ଼ା ଜଙ୍ଗଲ ବିଭାଗର କିଛି ଅସାଧୁ କର୍ମଚାରୀ ଓ ରେଳ ବିଭାଗ କର୍ମଚାରୀଙ୍କର ମଧ୍ୟ ସଲାସୁତୁରା ରହିଛି। ସବୁ ବିଷୟକୁ ଦୃଷ୍ଟିରେ ରଖି ଉଭୟ କୋରାପୁଟ କଞ୍ଜରଭେଟର୍ ଏବଂ ପୋଲିସ୍ ଏସ.ପି.ଙ୍କ ଅନୁମତି ନେଇ ୧୯୮୪ ମସିହା ନବବର୍ଷର ପ୍ରଥମ ଦିନରେ ସମସ୍ତ ବିବରଣୀ, ଘଟଣାର ଏ ଯାବତ ତଦନ୍ତ ପ୍ରବାହ ତଥା ଅଗ୍ରଗତି ବିଷୟ ବର୍ଣ୍ଣନା କରି ରାୟଗଡ଼ା ସଦର ପୋଲିସ୍ ଷ୍ଟେସନ୍‌ରେ ଏଫ.ଆଇ. ଆର. ଦର୍ଜ କରାଗଲା। ଘଟଣାଟିର ଜଟିଳତା ଦୃଷ୍ଟିରୁ ତଥା ଆନ୍ତଃ ରାଜ୍ୟ ସଂପୃକ୍ତ ଥିବାରୁ ପରିଶେଷରେ ପୋଲିସ୍ ରାଜ୍ୟ କ୍ରାଇମ୍‌ବ୍ରାଞ୍ଚଙ୍କୁ କେଶ୍‌ଟିକୁ ହସ୍ତାନ୍ତର କରିଦେଲେ।

ଦୁର୍ନୀତି ନିବାରଣ ବିଭାଗ ମଧ୍ୟ ତାଙ୍କର ଅନୁସନ୍ଧାନ ଜାରି ରଖିଥିଲେ। ମୁଁ ରାୟଗଡ଼ା ଡିଭିଜନରୁ ବଦଳି ହୋଇ ଚାଲି ଆସିବାର କେଶ୍ କିଛିଦିନ ପରେ, ଭିଜିଲାନ୍‌ସ ରିପୋର୍ଟ ରାଜ୍ୟ ସରକାରଙ୍କୁ ପ୍ରଦାନ କରାଯାଇଥିଲା। ରିପୋର୍ଟରେ ଡି.ଏଫ.ଓ.ଙ୍କ ସାଧୁତା ଉପରେ ମଧ୍ୟ ପ୍ରଶ୍ନବାଚୀ ସୃଷ୍ଟି କରାଯାଇ ତାର୍ଯକ୍ ଭାବେ ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଥିଲା। କିଛିଦିନ ଉପରାନ୍ତେ କ୍ରାଇମ୍‌ବ୍ରାଞ୍ଚ ତରଫରୁ ସହାୟତା କରିଥିବା ଅସାଧୁ ଅଫିସରମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ସୁପାରିଶ କରାଯାଇଥିଲା। କ୍ରାଇମ୍‌ବ୍ରାଞ୍ଚ୍ ରିପୋର୍ଟରେ ଡି.ଏଫ.ଓ.ଙ୍କୁ ଉଭୟ ତ୍ରୁଟି ବିଚ୍ୟୁତି ବା ଆପରାଧୀକ ଦିଗରୁ ସଂପୂର୍ଣ୍ଣ ରୂପେ ଦୋଷମୁକ୍ତ କରାଯାଇଥିଲା।

କଥାରେ ଅଛି, ରାଜ୍ୟର ଦୋଷ ରାଜା ମୁଣ୍ଡରେ ଯାଏ। ରାୟଗଡ଼ା ବନଖଣ୍ଡର ମୁଖ୍ୟ ହିସାବରେ ଏହି ଘଟଣାକ୍ରମରେ ମୋର ଗୋଟିଏ ଦୋଷ ଥିଲା, ଯାହାକୁ ଦୁର୍ବଳତା ମଧ୍ୟ କୁହାଯାଇପାରେ, ତାହା ହେଉଛି ଅନ୍ୟକୁ ସହଜରେ ବିଶ୍ୱାସ କରିଯିବା। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ସେଥିପାଇଁ ବୋଧହୁଏ କୁହାଯାଇଥିଲା, ରାଜା ବା ଶାସକ ପ୍ରଥମେ ତା'ର ସମସ୍ତ ସହଯୋଗୀମାନଙ୍କୁ ସନ୍ଦେହ ବା କୁଟିଳ ଦୃଷ୍ଟିରେ ଦେଖିବ। ଯେଉଁମାନେ ସମୟକ୍ରମେ ସନ୍ଦେହର କଷଟି ପଥରରେ ଉତ୍ତୀର୍ଣ୍ଣ ହୋଇଯିବେ, ସେମାନଙ୍କୁ ବିଶ୍ୱାସ କରିବ ଏବଂ ବିଶ୍ୱାସର ସିଡ଼ିରେ ଚଢ଼ି, ଯେଉଁମାନେ ଉପରକୁ ଉଠିପାରିବେ, ସେମାନେ କେବଳ ଆସ୍ଥାଭାଜନ ହୋଇପାରିବେ।

ଏହି ସାମାନ୍ୟ ତ୍ରୁଟିପାଇଁ ଭବିଷ୍ୟତରେ ମୋତେ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିଛି।

୧୯୮୩ ମସିହା ବେଳକୁ କୋରାପୁଟର ଦାମନଯୋଡ଼ିଠାରେ ଆଲୁମିନା ପ୍ରକଳ୍ପ ବସିବା ପାଇଁ ଜୋର୍‌ଦାର ପ୍ରସ୍ତୁତି ଆରମ୍ଭ ହୋଇଯାଇଥାଏ। କୋରାପୁଟରୁ ପଟାଙ୍ଗୀଯିବା ରାସ୍ତାରେ, ସୁନାବେଢ଼ା, ଶେମିଳିଗୁଡ଼ା ପାର ହୋଇ କିଛିବାଟ ଗଲା ପରେ, ବାଁ ପଟକୁ ବାଙ୍କି ଗଲେ, ଅନତିଦୂରରେ ପଡ଼ିବ ଦାମନ୍‌ଯୋଡ଼ି। ସେ ସମୟରେ ଦାମନଯୋଡ଼ି ଥିଲା ଏକ ଅଖ୍ୟାତ୍ ଆଦିବାସୀ ପଲ୍ଲୀ ଗାଁ। ଗାଁ ପାଖକୁ ଲାଗିଥାଏ ବିସ୍ତୃତ 'ପଞ୍ଚପଟ୍ଟମାଳି' ପର୍ବତମାଳା। ଆଲୁମିନିୟମ୍ ପ୍ରସ୍ତୁତ ନିମନ୍ତେ ଦରକାର ହେଉଥିବା କଞ୍ଚାମାଲ ବକ୍‌ସାଇଟ୍‌ର ଗନ୍ତାଘର ଏହି ପଞ୍ଚପଟ୍ଟମାଳି ପର୍ବତ।

ସେତେବେଳେ ପ୍ରାୟ ଦୁଇ, ତିନିଦିନ ଅନ୍ତରରେ ଆସି ରାୟଗଡ଼ାରେ ଡି.ଏଫ.ଓ.ଙ୍କ ବଙ୍ଗଳାରେ ପହଞ୍ଚିଯାନ୍ତି, ପ୍ରସ୍ତାବିତ ପଞ୍ଚପଟ୍ଟମାଳି ନାଲ୍‌କୋ ପ୍ରକଳ୍ପର ଭୂତତ୍ତ୍ୱବିତ୍ ଡ. ରମେଶ ମହାନ୍ତି। ତାଙ୍କ ଜିପ୍‌ରେ ବସେଇ ମୋତେ ସର୍ଭେ କାମ ତଦାରଖ ପାଇଁ ନେଇଯାଆନ୍ତି। କାକିରିଗୁମା ନିକଟରୁ ଅଣଓସାରିଆ କେବଳ ଜିପ୍ ଗଲାଭଳି ଘାଟି ରାସ୍ତାରେ ଚଢ଼ି ଆମେ ଅଳ୍ପସମୟରେ ପଞ୍ଚପଟ୍ଟମାଳୀ ପାହାଡ଼ ଉପରେ ପହଞ୍ଚିଯାଉ, ତାପରେ ଆରମ୍ଭ ହୋଇଯାଏ, ଖଣି ଲିଜ୍ ପଞ୍ଚପଟ୍ଟମାଳୀ ପାହାଡ଼।

ପାହାଡ଼ ଉପରର ମନୋରମ ଦୃଶ୍ୟ ମୋତେ ବିହ୍ୱଳ କରିଦିଏ। ଲମ୍ୱାରେ ପ୍ରାୟ ୧୫ରୁ ୧୬ ମାଇଲ ଏବଂ ହାରାହାରି ଚାରିଶରୁ ପାଞ୍ଚଶ ମିଟର ଓସାର ବିଶିଷ୍ଟ ପାହାଡ଼ର ଉପରିଭାଗ ଫୁଟବଲ୍ ପଡ଼ିଆ ପରି ବେଶ୍ ସମତଳ। ଆରାମରେ ଏହା ଉପରେ ମନଇଚ୍ଛା

ଜିପ୍ ଚଳେଇ ହେବ। ଚାହିଁଲେ ଫୁଟ୍‌ବଲ ମଧ୍ୟ ଖେଳିହେବ। ମଣିଷକୁ ଉଡ଼େଇ ନେଲାପରି ପବନର ଝକାସ। ବେଳେବେଳେ ମନେହୁଏ, ଆମେ ଯେପରି ମର୍ତ୍ତ୍ୟରୁ ସ୍ୱର୍ଗକୁ ସିଡ଼ି ଚଢ଼ି ଯାଉ ଯାଉ ମଝି ପାହାଚରେ ଅଟକି ଯାଉଛୁ। ଉପରେ ନୀଳ ଆକାଶ। ତଳେ ଛୋଟ ଛୋଟ ଆଦିବାସୀ ପଲ୍ଲୀ ଗାଁ। ମଝିରେ ଆମେ ଛିଡ଼ା ହୋଇଛୁ ବିରାଟକାୟ ସମତଳ ପାହାଡ଼ ଚଟାଣ ଉପରେ। କବିତାଟିଏ ଲେଖିଥିଲି :

"ପାଦ ତଳକୁ କାକିରିଗୁମା
ମଥା ଉପରେ ଦାମନ୍‌ଯୋଡ଼ି
ଆଦିବାସୀ ଲଳନାଟିଏ
ଶୋଇଯାଇଛି, ଦେହ ମୁକାଳି।"

ପାହାଡ଼ ଉପରେ କାଁ, ଭାଁ, ବୁଦା ବୁଦା ଜଙ୍ଗଲକୁ ଛାଡ଼ି ଦେଲେ ବଡ଼ ବଡ଼ ଗଛ ବା ଜଙ୍ଗଲ କିଛି ନଥାଏ। କାକିରିଗୁମ୍ମା ପଟକୁ ଥିଲା, ଗୋଟିଏ ଛୋଟିଆ ଇଉକାଲିପଟ୍‌ସ ପ୍ଲାଣ୍ଟେସନ୍। ଅତୀତରେ ଜଙ୍ଗଲ ବିଭାଗର ଜଣେ ଦକ୍ଷ ଅଫିସର ଶ୍ରୀ ଅଭିନବ ପ୍ରଧାନ ଏହି ପ୍ଲାଣ୍ଟେସନ୍‌ଟି କରିଥିଲେ। କିଂତୁ ଏ ଭିତରେ ଅନେକ ବର୍ଷ ବିତିଯାଇଥିଲେ ମଧ୍ୟ ଗଛଗୁଡ଼ିକ ପାଞ୍ଚ, ଛଅଫୁଟରୁ ଅଧିକ ଉପରକୁ ଉଠି ପାରି ନଥିଲା। କାରଣ ମାଟିର ଫୁଟେ, ଦୁଇଫୁଟ ତଳେ ବକ୍‌ସାଇଟ୍ ଗଚ୍ଛିତ ଥିବାରୁ, ଗଛଗୁଡ଼ିକ ଭଲଭାବେ ବଢ଼ି ପାରୁ ନଥିଲା।

ସର୍ଭେ କାମ ସରିଲାବେଳକୁ, ବେଳ ଗଡ଼ି ଯାଇଥାଏ। ପାହାଡ଼ର ଅପରପାର୍ଶ୍ୱରେ ଅର୍ଥାତ୍ ଦାମନଯୋଡ଼ି ପଟେ ତଳକୁ ଓହ୍ଲାଇ ନାଲ୍‌କୋ ତରଫରୁ ତଳେ ତିଆରି କରାଯାଇଥିବା ଧାଡ଼ିକିଆ ଅସ୍ଥାୟୀ ଟିଣ ଘରେ ପହଞ୍ଚୁ। ସେଇ ଟିଣ ଛପର ଘର ହିଁ ଥିଲା, ନାଲ୍‌କୋ ସଂସ୍ଥାର ଅସ୍ଥାୟୀ ଗେଷ୍ଟ ହାଉସ୍। ମଧ୍ୟାହ୍ନ ଭୋଜନ ପାଇଁ ରନ୍ଧା ହୋଇଥିବା ଖାଦ୍ୟ ଥଣ୍ଡା ହୋଇଯାଇଥାଏ। ସାମାନ୍ୟ କିଛି ଖାଇ ନେଇ, କୋରାପୁଟ ବାଟ ଦେଇ ସଂଧ୍ୟାବେଳକୁ ରାୟଗଡ଼ା ଫେରି ଆସେ। ରମେଶ ବାବୁ ରହିଯା'ନ୍ତି ଦାମନଯୋଡ଼ିଠାରେ। ତାଙ୍କ ସହିତ ଅନ୍ୟ କେତେକ ଅଫିସ୍‌ର ମଧ୍ୟ ରହୁଥାନ୍ତି, ସେହି ଅସ୍ଥାୟୀ ଡାକବଙ୍ଗଳାରେ।

ବକ୍‌ସାଇଟ୍ ଖଣି ଲିଜ୍ ସଂକ୍ରାନ୍ତରେ ଜଙ୍ଗଲ ଜମି ନାଲ୍‌କୋକୁ ହସ୍ତାନ୍ତର କରିବାକୁ ଏମିତି ଆଠ ଦଶଥର ମୋତେ ଯିବାକୁ ପଡ଼ିଛି ପଞ୍ଚପଟମାଳି ପାହାଡ଼କୁ। ପ୍ରତିଥର ପାହାଡ଼

ଉପରେ ପହଞ୍ଚିଗଲେ ମନେହୁଏ, ମୁଁ ଯେପରି ଅନ୍ୟ ଏକ ଜଗତକୁ ଚାଲି ଆସିଛି। ପାହାଡ଼ର ମଥାନ ଉପରେ, ବିସ୍ତୃତ ଖୋଲା ଆକାଶ ତଳେ ଉର୍ଦ୍ଧ୍ୱବାହୁ ହୋଇ ଛିଡ଼ା ହୋଇ ଧସେଇ ପଶି ଆସୁଥିବା ମେଞ୍ଚା ମେଞ୍ଚା ଖୋଲାପବନକୁ ମୁଁ ଆକଣ୍ଠ ପିଇଯାଏ। ପାଟିରୁ ବାହାରି ଆସେ, ନେଇ ଯା'ରେ ମେଘ ମୋତେ, ମୋ ପ୍ରିୟା ପାଶେ।'

ହୁଏତ ପ୍ରଥମ ପର୍ଯ୍ୟାୟରେ ନାଲ୍‌କୋ ପ୍ରକଳ୍ପକୁ ଖଣିଲିଜ୍ ହସ୍ତାନ୍ତର ପ୍ରକ୍ରିୟାରେ ସଂଶ୍ଳିଷ୍ଟ ଥିବାରୁ ଦାମନ୍‌ଯୋଡ଼ି ସହ ମୋର କେମିତି ଏକ ଅନ୍ତରଂଗ ସଂପୃକ୍ତି ରହିଗଲା। ଏହାପରେ ଯେତେଥର କୋରାପୁଟ ଯାଇଛି, ଦାମ୍‌ନଯୋଡ଼ି ଯାଇ, ଏବେ ସେଠାରେ ଥିବା ନାଲ୍‌କୋର ସୁଦୃଶ୍ୟ, ସୁସଜ୍ଜିତ ଅତିଥି ଭବନରେ ରାତ୍ରୀଯାପନ କରିଛି। ସେଠାରୁ ପଞ୍ଚପଟ୍ଟମାଳି ପାହାଡ଼ ଉପରକୁ ଯିବାକୁ ବେଶ୍ ପ୍ରଶସ୍ତ, କଳା ମଚ ମଚ ପିଚୁରାସ୍ତା। ରାସ୍ତାରେ କିଛି ବାଟ ଉଠିଗଲାପରେ 'ଭ୍ୟୁ ପଏଣ୍ଟ' ପାଖରେ ଅଟକିବାକୁ ହୁଏ ଯେଉଁଠି ଦୃଶ୍ୟମାନ ହୁଏ, ଉପଭୋଗ କରିହୁଏ ରାଜ୍ୟର ସର୍ବୋଚ୍ଚ ଗିରିଶୃଙ୍ଗ 'ଦେଓମାଳି'ର ମନଲୋଭା ଦୃଶ୍ୟ। ପ୍ରଥମ ପର୍ଯ୍ୟାୟରେ ଯୋଡ଼ି ହୋଇଥିବା ପଞ୍ଚପଟ୍ଟମାଳି ପବର୍ତ ଏବଂ ପାଦଦେଶରେ ଗଢ଼ି ଉଠିଥିବା ଦାମନ୍‌ଯୋଡ଼ି ସହର ଏବେ ବି କେମିତି ଆପଣାର ମନେ ହୁଏ। ୧୯୭୬ ମସିହାରେ ଜାତୀୟ କୃଷି କମିଶନ ତାଙ୍କ ରିପୋର୍ଟରେ ଯେଉଁ ସୁପାରିଶ କରିଥିଲେ, ସେଥିରେ ବନ ଉନ୍ନୟନ କ୍ଷେତ୍ରରେ ପ୍ରତିଫଳିତ ହୋଇଥିବା ଆଭିମୁଖ୍ୟଟି ହେଲା,ସାମାଜିକ ବନୀକରଣ ବା ସୋସିଆଲ ଫରେଷ୍ଟ୍ରି। ଏହି କମିଶନ ଅନୁଭବ କରିଥିଲେ, ରାଜ୍ୟର ପାରମ୍ପରିକ ସଂରକ୍ଷିତ ଜଙ୍ଗଲ ସାଧାରଣ ଜନତାର ମୌଳିକ ବନଜାତ ଦ୍ରବ୍ୟର ଆବଶ୍ୟକତା ପୂରଣ କରିବାପାଇଁ ସମର୍ଥ ନୁହେଁ। ସାମାଜିକ ବନୀକରଣ ବା ଜଙ୍ଗଲ ଜମି ବାହାରେ ଜଙ୍ଗଲ ସୃଷ୍ଟି କରିବା ହିଁ ଏହାର ଏକମାତ୍ର ବିକଳ୍ପ ଉତ୍ତର। ତେଣୁ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ଦେଶର ବିଭିନ୍ନ ରାଜ୍ୟରେ ସାମାଜିକ ବନୀକରଣ ଯୋଜନା ହାତକୁ ନିଆଗଲା। ଆମ ଓଡ଼ିଶାରେ ୧୯୮୩-୮୪ ମସିହାରେ ସାମାଜିକ ବନୀକରଣ ପ୍ରକଳ୍ପ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରାଗଲା।

୧୯୮୩ ମସିହା ଶେଷ ଭାବରେ, ରାଜ୍ୟର ଏକ ସ୍ୱତନ୍ତ୍ର ସାମାଜିକ ବନୀକରଣ ନିର୍ଦ୍ଦେଶାଳୟ ପ୍ରତିଷ୍ଠା କରି, ସୁଇଡେନ୍ ଇଣ୍ଟରନାସ୍‌ନାଲ ଡେଭଲପମେଣ୍ଟ ଅଥରିଟି (ସିଡ଼ା) ସହାୟତାରେ ପ୍ରଥମ ପର୍ଯ୍ୟାୟରେ ତତ୍‌କାଳୀନ ନଅଟି ଜିଲାରେ ସାମାଜିକ

ବନୀକରଣ ଯୋଜନା ଆରମ୍ଭ କରାଗଲା। ଓଡ଼ିଶା ଉନ୍ନୟନ ମଣ୍ଡଳର ବନ ସଂରକ୍ଷକ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ଦାସ, ଆଇ.ଏଫ. ଏସ୍‌ଙ୍କ ତତ୍ତ୍ୱାବଧାନରେ ପ୍ରଥମେ ବିଭାଗ ପାଇଁ ଉପଯୁକ୍ତ ଅଫିସର୍ ଚୟନ କାର୍ଯ୍ୟକ୍ରମ ହାତକୁ ନିଆଗଲା। ସମାଜର ଲୋକମାନଙ୍କ ପାଇଁ ଲୋକମାନଙ୍କ ଦ୍ୱାରା ଅର୍ଥାତ୍ ସେମାନଙ୍କର ସକ୍ରିୟ ସହଯୋଗରେ ଏବଂ ସରକାରୀ ସହାୟତାରେ ହେବାକୁ ଥିବା ସାମାଜିକ ବନୀକରଣ କାର୍ଯ୍ୟକ୍ରମ,ଏକ ନୂତନ ଧରଣର ଚିନ୍ତାଧାରା ଉପରେ ପର୍ଯ୍ୟବସିତ ଥିବାରୁ, ଏଥିପାଇଁ ପ୍ରକୃଷ୍ଟ ଆଭିମୁଖ୍ୟ ଥିବା ପ୍ରଥମେ ଭୁବନେଶ୍ୱର 'ପ୍ରାଚୀ' ହୋଟେଲ (ହୋଟେଲ୍ ନିୟୁ ମାରିଆନ୍) ସମ୍ମିଳନୀ କକ୍ଷରେ ଏକ ଦୁଇଦିନିଆ କର୍ମଶାଳାର ଆୟୋଜନ କରାଗଲା। ରାଜ୍ୟର ପ୍ରାୟ ପଚାଶରୁ ଉର୍ଦ୍ଧ୍ୱ ବିଭାଗୀୟ ଅଫିସ୍‌ରଙ୍କୁ ଏହି କର୍ମଶାଳାରେ ଯୋଗଦେବା ପାଇଁ ଆମନ୍ତ୍ରଣ କରାଯାଇଥିଲା।

ରାୟଗଡ଼ା ଡିଭିଜନର ଡି.ଏଫ.ଓ. ହିସାବରେ ମୁଁ ମଧ୍ୟ ଆମନ୍ତ୍ରିତ ହୋଇ ଏହି କର୍ମଶାଳାରେ ଯୋଗଦେଇଥିଲି। ଆଲୋଚନା ସମୟରେ କେତେକ ଅଫିସର ସାମାଜିକ ବନୀକରଣ କାର୍ଯ୍ୟକ୍ରମର ପୃଷ୍ଠଭୂମି ତଥା କାର୍ଯ୍ୟଶୈଳୀକୁ ଖୋଲା ଖୋଲି ବିରୋଧ କଲେ, ଫିଲଡ୍ ଅଫିସର ବିଶେଷ କରି ରେଞ୍ଜ୍ ଅଫିସରମାନେ କଳ୍ପନା କରି ପାରୁନଥିଲେ । ସେମାନେ ଯଦି ସାମାଜିକ ବନୀକରଣ ଯୋଜନା ମୁତାବକ ଗାଁ ଗଣ୍ଡାକୁ ଯାଇ, ଲୋକଙ୍କ ସହିତ ମିଶି ଗାଁ ଗଣ୍ଡାରେ ସେମାନଙ୍କ ସହିତ ଏକାଠି ବସି, ଗ୍ରାମ ବନକମିଟି' ଗଠନ କରିବେ ଓ କମିଟିର ପ୍ରସ୍ତାବ ମୁତାବକ ବନୀକରଣ ବା ଯତ୍ନ ପରିଚାଳନା ଯୋଜନା ପ୍ରସ୍ତୁତ କରିବେ, ତାହାଲେ, ଜଙ୍ଗଲରୁ କାଠ ଚୋରୀ କରୁଥିବା ସେହି ଗାଁର ଅପରାଧୀ ମାନଙ୍କୁ ଧରିବେ କେମିତି ? କେତେକ ଡି.ଏଫ.ଓ. ଆଲୋଚନା ଅବକାଶରେ ମତବ୍ୟକ୍ତ କଲେ; ବ୍ରିଟିଶ ଶାସନ ଅମଳରୁ ପ୍ରଚଳିତ ଖାକି ପୋଷାକ ପ୍ରତି ଲୋକଙ୍କର ଯେଉଁ ଭୟ ରହିଛି, ବିନା ଡ୍ରେସ୍‌ରେ ଗଲେ ସେ ଭୟ କ୍ରମଶଃ ଦୂର ହୋଇଯିବ। ଗାଁ ଲୋକମାନେ ଆଉ ବନ ବିଭାଗ କର୍ମଚାରୀଙ୍କୁ ଖାତିର କରିବେ ନାହିଁ। ଏଥିରେ ବନ ବିଭାଗ କର୍ମଚାରୀଙ୍କର ମୌଳିକ କର୍ତ୍ତବ୍ୟ ସଂପାଦନରେ ଅର୍ଥାତ୍ ଜଙ୍ଗଲ ସୁରକ୍ଷା କାର୍ଯ୍ୟ ବାଧାପ୍ରାପ୍ତ ହେବ।

ଲୋକମାନଙ୍କର ସକ୍ରିୟ ସହଯୋଗରେ ହିଁ ବଣ ଜଙ୍ଗଲର ପ୍ରକୃତ ସୁରକ୍ଷା ସଂଭବ - ଏକଥାଟିକୁ କୌଣସି ଅଫିସର ସେତେବେଳେ ବିଶ୍ୱାସ କରି ପାରୁ ନଥିଲେ।

ଏ ଚିନ୍ତାଧାରାକୁ ହଜମ କରିବାକୁ ସେମାନେ ପ୍ରସ୍ତୁତ ନ ଥିଲେ, କାଳେ ସାମାଜିକ ବନବିଭାଗକୁ ସେମାନଙ୍କର ପୋଷ୍ଟିଂ ହୋଇଯିବ, ଏହି ଭୟରେ ଅନେକ ଦକ୍ଷ, ତରୁଣ ଅଫିସର କୌଣସି ନା କୌଣସି ବାହାନା କରି ଆଲୋଚନାଚକ୍ରକୁ ମଧ୍ୟ ଆସି ନଥିଲେ। ଜଣେ ଅଫିସର ଖବର ପଠେଇଥିଲେ ଆସୁଆସୁ ବାଟରେ ତାଙ୍କ ଗାଡ଼ି ବ୍ରେକ୍ ଡାଉନ୍ ହୋଇଗଲା। ଅନ୍ୟ ଜଣେ ଅଫିସର୍ ଦେହ ଖରାପ ଥିବାରୁ ଆସି ପାରିଲେନି ବୋଲି ସନ୍ଦେଶ ଦେଇଥିଲେ।

ପ୍ରାଚୀ ହୋଟେଲରେ ହୋଇଥିବା ଓ୍ୱାର୍କସପ୍‌ରେ ୨୫ ଜଣ ବିଭିନ୍ନ ବର୍ଗର ଅଫିସରଙ୍କୁ ବଛାଯାଇ ଅଧିକ ଟ୍ରେନିଂ ଦେବା ପାଇଁ ସ୍ଥିର କରାଗଲା। ୧୯୮୪ ମସିହା ଫେବୃୟାରୀ ମାସରେ, ଏହି ଅଫିସରମାନଙ୍କୁ ଚିଲିକା ନିକଟସ୍ଥ ବଡ଼କୁଳ ପାନ୍ଥ ନିବାସରେ ଚାରିଦିନ ରଖାଯାଇ, କମ୍ୟୁନିକେସନ୍ କମ୍ୟୁନିଟ୍ ପାର୍ଟିସିପେସନ୍ ଏବଂ ସୋସିଆଲ ସାଇନ୍‌ସ ଆଦି ବିଷୟରେ ପ୍ରଶିକ୍ଷଣ ଦିଆଯିବାର ବନ୍ଦୋବସ୍ତ ହୋଇଥିଲା। ଶିବିର ପରିଚାଳନା କରୁଥିଲେ, ବନ୍‌ବିଭାଗର ତତ୍‌କାଳୀନ ଶାସନ ସଚିବ ଡ. ରାଧାକାନ୍ତ ନାୟକ, ଆଇ.ଏ.ଏସ.ଏବଂ ସାମାଜିକ ବନପ୍ରକଳ୍ପର ପ୍ରସ୍ତାବିତ ମୁଖ୍ୟ କାର୍ଯ୍ୟନିର୍ବାହୀ ଶ୍ରୀ ମହେଶ ଚନ୍ଦ୍ର ଦାସ, ଆଇ.ଏଫ.ଏସ୍.। ଟ୍ରେନିଂ ଦେବା ନିମନ୍ତେ ଗୁଜୁରାଟର ଅହମଦାବାଦରୁ ସ୍ୱତନ୍ତ୍ର ଭାବେ ଆମନ୍ତ୍ରିତ ହୋଇଆସିଥିଲେ 'ସେଣ୍ଟର ଫର୍ ଏନ୍‌ଭରନମେଣ୍ଟ ଏଜୁକେଶନ୍'ର କର୍ମକର୍ତ୍ତା ବୃନ୍ଦ।

ଟ୍ରେନିଂ ମଡେଲ ସେମାନେ ଅହମଦାବାଦରୁ ପ୍ରସ୍ତୁତ କରି ଆଣିଥିଲେ। ମନସ୍ତାତ୍ତ୍ୱିକ ସ୍ତରରେ ଟ୍ରେନିଂ ଦେବା ନିମନ୍ତେ ବିଭିନ୍ନ ଧରଣର ଗେମସ୍ କେଶ୍ ଷ୍ଟଡି ଇତ୍ୟାଦିର ସହାୟତା ନିଆଯାଉଥିଲା ଏବଂ ପ୍ରତ୍ୟେକ ଦିନ ଅପରାହ୍ଣରେ ସେଦିନର କାର୍ଯ୍ୟକ୍ରମ ଉପରେ ମୂଲ୍ୟାୟନ କରାଯାଉଥିଲା । ଚାରିଦିନର ଟ୍ରେନିଂ, ସେମିନାର୍ ଓ ମୂଲ୍ୟାୟନକୁ ଭିତ୍ତି କରି ଚାରିଜଣ ଅଫିସର ଏବଂ ଚାରିଜଣ ରେଞ୍ଜ ଅଫିସର୍ ଏହିପରି ସର୍ବମୋଟ ଆଠଜଣଙ୍କୁ ପରିଶେଷରେ ବଛାଗଲା। ଅଫିସ୍‌ରମାନଙ୍କ ଭିତରେ ମୁଁ ଥିଲି ଅନ୍ୟତମ। ଅହମଦାବାଦସ୍ଥିତ ଜାଭିୟର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜମେଣ୍ଟ୍‌ରେ ଏକ ସପ୍ତାହ ନିମନ୍ତେ 'ବିହେଭିଅରାଲ୍ ସାଇନ୍‌ସ' ଉପରେ ଟ୍ରେନିଂ କାର୍ଯ୍ୟକ୍ରମ ଥାଏ, ପ୍ରଥମଥର ପାଇଁ ରେଞ୍ଜ ଅଫିସରମାନଙ୍କୁ ମଧ୍ୟ ଆମ ସହିତ ଏରୋପ୍ଲେନ୍‌ରେ ଯାତ୍ରା କରିବା ପାଇଁ ରାଜ୍ୟ ସରକାର ସ୍ୱତନ୍ତ୍ର ଭାବେ ଅନୁମତି ପ୍ରଦାନ କରିଥିଲେ।

୧୯୮୪ ମସିହା ଏପ୍ରିଲ ୨୬ ତାରିଖରୁ ମେ'୨ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା, ସପ୍ତାହ ବ୍ୟାପି ପ୍ରଶିକ୍ଷଣ କାର୍ଯ୍ୟକ୍ରମ। ସେହି ସମୟରୁ ଏକଥା ନିଶ୍ଚିତ ହୋଇଯାଇଥିଲା ଯେ, ବଛାଯାଇଥିବା ସମସ୍ତ ଆଠଜଣଯାକ ଅଫିସର୍ ଟ୍ରେନିଂରୁ ଫେରିଲା ପରେ ନୂଆ କରି ଖୋଲାଯାଇଥିବା ବନୀକରଣ ବିଭାଗରେ ପୋଷ୍ଟିଂ ପାଇବେ।

ସତକୁ ସତ ସେହି ବର୍ଷ ଜୁଲାଇ ୨୦ ତାରିଖ ଦିନ, ମୋର ସାମାଜିକ ବନୀକରଣ ନିର୍ଦ୍ଦେଶାଳୟକୁ ଉପନିର୍ଦ୍ଦେଶକ (ମୂଲ୍ୟାୟନ ଓ ପର୍ଯ୍ୟାଲୋଚନା) ଭାବରେ ପୋଷ୍ଟିଂ ଅର୍ଡର ସମ୍ବଳିତ ସରକାରୀ ନିର୍ଦ୍ଦେଶନାମା ବାହାରିଲା। ସେତେବେଳେ ଏହି ନିର୍ଦ୍ଦେଶାଳୟଟି କଟକର ତୁଳସୀପୁରଠାରେ ଏକ ବେସରକାରୀ ଭଡ଼ାଘରେ କାର୍ଯ୍ୟ ଆରମ୍ଭ କରିଥାଏ।

ମୋର ବଦଳି ଅର୍ଡର ବାହାରିଥାଏ ସତ, କିଂତୁ ମୋ ସ୍ଥାନରେ କିଏ ନିଯୁକ୍ତି ବାହାଲ ହୋଇଛନ୍ତି, ସେ ସଂପର୍କରେ କୌଣସି ସୂଚନା ସରକାରୀ ଆଦେଶନାମାରେ ନଥାଏ। ତେଣୁ ମୋତେ ଆନୁସଙ୍ଗିକ ପ୍ରସ୍ତୁତି ସାରି ରାୟଗଡ଼ା ଛାଡ଼ିବା ପାଇଁ କିଛିଟା ମହଲତ ପ୍ରକାରାନ୍ତରେ ମିଳିଯାଇଥିଲା।

ସେତେବେଳକୁ ସ୍ତ୍ରୀ ସାତ ମାସର ଅନ୍ତଃସତ୍ତ୍ୱା। ସବ୍‌ଡିଭିଜନ ହସ୍‌ପିଟାଲର ସ୍ତ୍ରୀ ରୋଗ ବିଶେଷଜ୍ଞ ଡ. ପଟ୍ଟନାୟକଙ୍କ ନିକଟରେ ସେ ଟ୍ରିଟ୍‌ମେଣ୍ଟ ହେଉଥିଲେ। ତେଣୁ ଏ ଅସମୟରେ ରାୟଗଡ଼ା ଛାଡ଼ିବା ଉଚିତ୍ ହେବକି ନାହିଁ ସେ ବିଷୟରେ ତାଙ୍କର ପରାମର୍ଶ ନେବାକୁ ମନସ୍ଥ କଲି। ମୋଠାରୁ ସମସ୍ତ ବିଷୟ ଶୁଣି ଡ. ପଟ୍ଟନାୟକ କହିଲେ ଆପଣଙ୍କ ସ୍ତ୍ରୀଙ୍କର ସାମାନ୍ୟ ଶାରୀରିକ ଦୁର୍ବଳତା ରହୁଛି। ରକ୍ତରେ ହେମୋଗ୍ଲୋବିନ୍ ପରିମାଣ କିଛିଟା କମ୍ ଅଛି। ଏ ସମୟରେ ପାହାଡ଼ିଆ ଘାଟି ରାସ୍ତାରେ ୨୦୦ କିଲୋମିଟର ବ୍ରହ୍ମପୁର ପର୍ଯ୍ୟନ୍ତ ଏବଂ ସେଠୁ ଆଉ ୨୦୦ କିଲୋମିଟର କଟକ ପର୍ଯ୍ୟନ୍ତ, ସ୍ତ୍ରୀଙ୍କୁ ଜିପ୍‌ରେ ବସେଇ ନେବା ଆଦୌ ସ୍ପୃହଣୀୟ ନୁହେଁ ଏବଂ ମୁଁ ମଧ୍ୟ ଆପଣଙ୍କୁ ଏଭଳି ପରାମର୍ଶ ଦେଇପାରିବି ନାହିଁ, ବରଂ ତିନି ଚାରିମାସ ଅପେକ୍ଷା କରିଯା'ନ୍ତୁ। ଡେଲିଭରି ହୋଇଗଲା ପରେ ଚାଲିଯିବେ।

ମୁଁ ଅପେକ୍ଷା କରିଥାଏ । ମୋ ସ୍ଥାନରେ କାହାର ରେଗୁଲାର ପୋଷ୍ଟିଂ ହେବ। ଏହି ଅବସରରେ ଦିନେ କଟକରୁ ବନବିଭାଗର ତତ୍‌କାଳୀନ ସର୍ବୋଚ୍ଚ ମୁଖ୍ୟ ପଦାରବିନ୍ଦ ମହାପାତ୍ରଙ୍କର ଫୋନ ପାଇଲି।

ପୂର୍ବରୁ କହିଛି, ଦୈନିକ ସମ୍ବାଦପତ୍ର 'ସମାଜ'ରେ ଜୀବଜନ୍ତୁ ଓ ପକ୍ଷୀମାନଙ୍କ ଉପରେ 'ଶିଶୁ ରାଇଜ' ଫର୍ଦ୍ଦରେ କ୍ରମାଗତ ଭାବରେ ଲେଖୁଥିବାର, ପଦାରବିନ୍ଦ ବାବୁଙ୍କର ବିଶେଷ ଶ୍ରଦ୍ଧାଭାଜନ ମୁଁ ହୋଇପାରିଥିଲି। ଏଠି କହି ରଖିବା ଉଚିତ୍ ହେବ ଯେ, 'ସମାଜ'ର ତତ୍କାଳୀନ ସଂପାଦକ ରାଧାନାଥ ରଥ ଥିଲେ, ପଦାରବିନ୍ଦ ବାବୁଙ୍କର ଶ୍ୱଶୁର ଅର୍ଥାତ୍ ତାଙ୍କ ସ୍ତ୍ରୀ ଶ୍ରୀମତୀ ମନୋରମା ମହାପାତ୍ରଙ୍କର ବାପା। ମୁଁ ରାୟଗଡ଼ାରେ ଥିଲାବେଳେ, ରାଧାନାଥ ବାବୁ, ମୋ ପାଖକୁ ନୀଳମଣି ସେନାପତି, ଆଇ.ସି.ଏସ୍ (ସଂପ୍ରତି ସ୍ୱଗତ)ଙ୍କର 'ଇନ୍ ଦ ୱାଇଲ୍ଡସ୍ ଅଫ୍ ଓରିଶା', ବହି ଖଣ୍ଡିଏ ପଠାଇ ଏହାର ଓଡ଼ିଆ ଅନୁବାଦ କରିଦେବାକୁ ଅନୁରୋଧ କରିଥିଲେ। ଅନୁଦିତ ପୁସ୍ତକଟିକୁ 'ସମାଜ' ଅନୁଷ୍ଠାନ ତରଫରୁ ପ୍ରକାଶ କରିବାକୁ ପ୍ରତିଶ୍ରୁତି ଦେଇଥିଲେ। ପ୍ରାୟ ମାସେ ଦେଢ଼ମାସ ଭିତରେ 'ଓଡ଼ିଶାର ଅରଣ୍ୟ'ରେ ଶୀର୍ଷକ ମୁଁ ସେ ବହିଟିର ଆମୂଳଚୂଳ ଅନୁବାଦ କରି ପଠାଇଥିଲି।

୧୯୮୩-୮୪ ମସିହା ବେଳକୁ, ଅବସରପ୍ରାପ୍ତ ଭାରତୀୟ ସିଭିଲି ସର୍ଭିସ୍‌ର ଅଫିସର ନୀଳମଣି ସେନାପତି ଜୀବିତ ଥିଲେ। ୧୯୨୫ରୁ ୧୯୩୫ ମସିହା ଭିତରେ ଚାକିରିର ବିଭିନ୍ନ ପର୍ଯ୍ୟାୟରେ ଲେଖକଙ୍କର ବନ୍ୟଜନ୍ତୁମାନଙ୍କ ସହ ଘଟିଥିବା କେତେକ ଉତ୍ତେଜନାପୂର୍ଣ୍ଣ ମୁକାବିଲା ବା ଘଟଣାପ୍ରବାହ ପୁସ୍ତକଟିରେ ବର୍ଣ୍ଣନା କରାଯାଇଛି, ପଚାଶ ବର୍ଷ ତଳର ଓଡ଼ିଶାର ରୂପରେଖ, ପ୍ରାକୃତିକ ପରିବେଶ, ଜୀବଜନ୍ତ ନଦନଦୀ, ଅରଣ୍ୟ ଓ ଜଳପ୍ରପାତ ଘେରା ବିଭିନ୍ନ ରମଣୀୟ ସ୍ଥାନ, ଚିତ୍ରପଟରେ ଆଙ୍କିଦେଲା ଭଳି ଭୁବନେଶ୍ୱରର ତତ୍କାଳୀନ ଛବି, ଚିଲିକାରେ ଅପରୂପ ଶୋଭା ସଂପଦର ନିଛକ ବର୍ଣ୍ଣନା, ଏବେକାର ପିଲାମାନଙ୍କୁ ନିଜ ରାଜ୍ୟକୁ ଚିହ୍ନିବା ପାଇଁ ଯେ ନିଶ୍ଚିତ ଭାବେ ପଥପ୍ରଦର୍ଶକ ହେବ ଏକଥା ଅନୁଭବ କରି ମୁଁ ନିବିଡ଼ ଓ ନିଷ୍ଠାପର ଭାବେ ବହିଟିର ଅନୁବାଦ ପାଇଁ ପ୍ରଯତ୍ନ କରିଥିଲି।

ଅବଶ୍ୟ ଏକଥା ଅତ୍ୟନ୍ତ ଦୁଃଖଦାୟକ ଯେ, ସମସ୍ତ ପ୍ରତିଶ୍ରୁତି ସତ୍ତ୍ୱେ, 'ସମାଜ' ଅନୁଷ୍ଠାନ କୌଣସି କାରଣରୁ ବହିଟିକୁ ପ୍ରକାଶ କଲେ ନାହିଁ। ଏହି ଘଟଣାର ପ୍ରାୟ ୧୭ ବର୍ଷ ପରେ ୨୦୦୧ ମସିହାରେ, କଟକର ନାମଜାଦା ପ୍ରକାଶନ ସଂସ୍ଥାନ 'ଗ୍ରନ୍ଥ ମନ୍ଦିର'ଙ୍କ ସୌଜନ୍ୟରୁ ବହିଟି ପ୍ରକାଶ ପାଇଥିଲା।

ହଁ, ରାଜ୍ୟବନ ବିଭାଗର ମୁଖ୍ୟ ପଦାରବିନ୍ଦ ମହାପାତ୍ରଙ୍କ ଠାରୁ ପାଇଥିବା ଫୋନ୍ ସଂପର୍କରେ କହୁଥିଲି। ୧୯୮୪ ମସିହା ଅଗଷ୍ଟ ମାସର ପ୍ରଥମ ସପ୍ତାହ ହେବ ବୋଧହୁଏ। ରାୟଗଡ଼ା ଡିଭିଜନରେ ମୋର ଦେଢ଼ବର୍ଷ ବି ପୂରି ନାହିଁ। ତେଣୁ ମୁଁ କାହିଁକି 'ସୋସିଆଲ ଫରେଷ୍ଟ୍ରି'ରେ ଯୋଦେବାକୁ ଚାହୁଁଛି ବୋଲି ସେ ଫୋନ୍‌ରେ ପଚାରୁଥିଲେ। ତାଙ୍କ ମତରେ ମୁଁ ଟେରିଟୋରିଆଲ୍ ଡିଭିଜନର ନିଶ୍ଚିତତା ଛାଡ଼ି, ସାମାଜିକ ବନୀକରଣର ଅନିଶ୍ଚିତତା ଭିତରକୁ କାହିଁକି ଗୋଡ଼ ବଢ଼ଉଛ? ବରଂ ପୋଷ୍ଟିଂ ଅର୍ଡର ବାତିଲ ନିମନ୍ତେ ଏକ ରିପ୍ରେଜେଣ୍ଟସନ୍ ଦେବାକୁ ସେ ମୋତେ ଫୋନ୍‌ରେ ପରାମର୍ଶ ଦେଇଥିଲେ।

ଅତ୍ୟନ୍ତ ବିନମ୍ରତାର ସହିତ ମୁଁ ତାଙ୍କୁ କହିଥିଲି, ସାର୍ ସାମାଜିକ ବନୀକରଣ ବିଭାଗକୁ ଯିବା ପାଇଁ ମୁଁ କାହାକୁ କହି ନଥିଲି କିମ୍ବା ସରକାର ସ୍ୱଇଚ୍ଛାରେ ମେର ବଦଳି ବାତିଲ କରିଦେଲେ ମଧ୍ୟ ମୋର କୌଣସି ଆପତ୍ତି ନାହିଁ। କିଂତୁ ମୁଁ ନିଜ ତରଫରୁ ବଦଳି ବାତିଲ କରିବା ପାଇଁ ଦରଖାସ୍ତ କରିବି ନାହିଁ।

ଚାକିରି ଜୀବନର ପ୍ରାକ୍ କାଳରେ ମୁଁ ଯେଉଁ ନିଷ୍ପତ୍ତି ନେଇଥିଲି, ଅନ୍ୟ ସମୟରେ ମଧ୍ୟ ତାହାକୁ କାଏମ ରଖିବାକୁ ଚେଷ୍ଟା କରିଛି। ସେତେବେଳେ, ଯେଉଁଠିକି ବଦଳି ହୋଇଛି, ସେଠାକୁ ଯାଇ ମୁଁ କାର୍ଯ୍ୟଭାର ଗ୍ରହଣ କରିଛି। ଏହି କାରଣରୁ ମୋର କେବେ ଲୋଭନୀୟ ଟେରିଟୋରିୟାଲ୍ ବା କେନ୍ଦୁପତ୍ର କଞ୍ଜରଭେଟର ଭାବରେ ପୋଷ୍ଟିଂ ହୋଇନାହିଁ। ଏ ଯାବତ୍ ଚାକିରି ଜୀବନର ୩୨ବର୍ଷ ଭିତରେ ପ୍ରାୟ ଦଶ, ଏଗାର ବର୍ଷ ସାମାଜିକ ବନୀକରଣ ବିଭାଗରେ କଟିଛି। ତିନି ତିନି ଥର ବିଭିନ୍ନ ପଦବୀରେ ଓଡ଼ିଶା ବନ ଉନ୍ନୟନ ନିଗମରେ ପୋଷ୍ଟିଂ ହୋଇଛି ଏବଂ ଦୁଇଥର ଓଡ଼ିଶା ସେକ୍ରେଟାରୀଏଟ୍‌ରେ ଥରେ ବନ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ (ପ୍ରାୟ ତିନିବର୍ଷରୁ ଉର୍ଦ୍ଧ୍ୱ) ଏବଂ ଅନ୍ୟ ଥରକ ପରିବେଶ ନିର୍ଦ୍ଦେଶକ ଭାବେ ଅବସ୍ଥାପିତ ହୋଇଛି। ଓଡ଼ିଶା ବନ ଉନ୍ନୟନ ନିଗମର ସର୍ବୋଚ୍ଚ ମର୍ଯ୍ୟାଦାଜନକ ପଦବୀ ଅଧକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ (ସି.ଏମ.ଡ଼ି.) ଥିଲାବେଳେ, ମୋତେ ବଦଳି କରାଯାଇ ଅପେକ୍ଷାକୃତ କମ୍ ପ୍ରାଧାନ୍ୟ ଥିବା ପରିବେଶ ନିର୍ଦ୍ଦେଶକ ପୋଷ୍ଟକୁ ଅଣାଯାଇଛି। ସେତେବେଳେ ମଧ୍ୟ ବଦଳି ବାତିଲ କରିବା ପାଇଁ ମୁଁ କାହାକୁ ଅନୁରୋଧ କରିନାହିଁ।

ସୁତରାଂ ମୋ ସ୍ଥାନରେ ରାୟଗଡ଼ାକୁ ଅନ୍ୟ ଜଣେ ଅଫିସରଙ୍କୁ ଶୀଘ୍ର ପୋଷ୍ଟି କରିବା ପାଇଁ, ମୁଁ ପଦାରବିନ୍ଦ ବାବୁଙ୍କୁ ଫୋନ୍‌ରେ ଅନୁରୋଧ ଜଣାଇ ରହିଲି।

ରାୟଗଡ଼ା ଡିଭିଜନ୍‌ରୁ ମୋର ବଦଳି ସଂକ୍ରାନ୍ତୀୟ ଆଦେଶନାମା ବାହାରିବାର ମାସେ ବି ହୋଇ ନଥାଏ। ଜୁଲାଇ ୨୦ ତାରିଖରେ ଅର୍ଡର ବାହାରିଥିଲା। ଅଗଷ୍ଟ ତୃତୀୟ ସପ୍ତାହ ବେଳକୁ ଗୁଜବ ରଚିଗଲା ଯେ, ମୁଁ ରାୟଗଡ଼ା ଛାଡ଼ିବାକୁ ଇଚ୍ଛୁକ ନୁହେଁ। ତେଣୁ ମୋର ବଦଳି ଆଦେଶ ବାତିଲ ହୋଇଯାଇପାରେ। କଟକରୁ ସାମାଜିକ ବନ ପ୍ରକଳ୍ପର ମୁଖ୍ୟ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ଦାସ ଫୋନ୍ କରି, ମୋର ମତାମତ ଏ ସଂପର୍କରେ ଜାଣିବାକୁ ଚାହିଁଲେ। ସାମାଜିକ ବନ ନିର୍ଦ୍ଦେଶାଳୟରେ ଯୋଗ ଦେବା ପାଇଁ ମୁଁ ନିଶ୍ଚିତ ଭାବରେ ପ୍ରତିଶ୍ରୁତିବଦ୍ଧ, ଏକଥା ମହେଶବାବୁଙ୍କୁ ଜଣାଇଲି ଏବଂ ଆଉ ବିଳମ୍ବ ନ କରି ଯଥାଶୀଘ୍ର ରାୟଗଡ଼ା ଡିଭିଜନରୁ ବିଦାୟ ନେବା ପାଇଁ ବ୍ୟବସ୍ଥା ଆରମ୍ଭ କରିଦେଲି।

ବିଳମ୍ବିତ ଗର୍ଭାବସ୍ଥାରେ ପେଟରେ ଆଠମାସର ପିଲାକୁ ଧରି ରାୟଗଡ଼ାଠାରୁ କଟକ ପ୍ରାୟ ୪୦୦ କିଲୋମିଟର ଉର୍ଦ୍ଧ୍ୱ ରାସ୍ତା ଏବଂ ତହିଁରୁ ଅର୍ଦ୍ଧାଧିକ ପାହାଡ଼ିଆ ଘାଟି ରାସ୍ତାରେ ଜିପ୍‌ରେ ବସି ଯିବା ବିଷୟ ଶୁଣି ସ୍ତ୍ରୀ ମଧ୍ୟ ମନେମନେ ସାମାନ୍ୟ ଆତଙ୍କିତ ହୋଇପଡ଼ିଥିଲେ।

ଏ ଭିତରେ ଦିନେ କଟକରୁ ଶାଶୂ (ସ୍ତ୍ରୀଙ୍କର ମା') ଫୋନ୍ କରିଥିଲେ। ସେ ଉପଦେଶ ଦେଲେ ଆଠମାସର ଗର୍ଭ ଥିଲାବେଳେ ଝିଅମାନେ ବାପଘରକୁ ଯାଆନ୍ତି ନାହିଁ। ବରଂ ଆଠମାସ ପୂରିଯାଇ ନଅମାସ ଚାଲିଲା ବେଳକୁ ତୁମେ ରାୟଗଡ଼ା ଛାଡ଼ି ଆସିପାରିବ। ସମୟ ଗଡ଼ି ଯାଉଥାଏ। ଯିବା ନ ଯିବାର ଦୋଛକିରେ ଆମେ ବ୍ୟତିବ୍ୟସ୍ତ ହୋଇପଡ଼ିଲୁ। ଶେଷରେ ମୁଁ ନିଷ୍ପତ୍ତି ନେଇ ସ୍ତ୍ରୀଙ୍କୁ ଜଣାଇଲି - ତୁମ ମା'ଙ୍କ ଉପଦେଶ ଅନୁସାରେ ଆଠମାସ ପୂରିଗଲେ ଆମେ ରାୟଗଡ଼ା ଛାଡ଼ିବା। ଏ ପର୍ଯ୍ୟନ୍ତ ତ ମୋ ବଦଳରେ ଅନ୍ୟ କାହାର ପୋଷ୍ଟିଂ ହୋଇନାହିଁ। ତେଣୁ ବ୍ୟସ୍ତ ହେବାର କିଛି ନାହିଁ।

ରାୟଗଡ଼ା ଛାଡ଼ିବା ପାଇଁ ଆମେ ଜିନିଷପତ୍ର ପ୍ରାୟତଃ ସବୁ ବଂଧାବଂଧି କରି ସାରିଥାଉ। କିନ୍ତୁ ଶାଶୂଙ୍କ ଉପଦେଶ ଅନୁଯାୟୀ ସ୍ତ୍ରୀଙ୍କର ଗର୍ଭଧାରଣର ଆଠମାସ ପୂରିବାକୁ ଅପେକ୍ଷା କରିଥାଉ। ଆଉ ଅଫିସ୍ କାମରେ ସେତେ ରୁଚି ନଥାଏ। ଦିନ ଗଣୁଥାଉ। କେବେ ଛାଡ଼ିବାକୁ ହେବ ଡି.ଏଫ.ଓ ପଦବୀ । ଛାଡ଼ିଯିବାକୁ ହେବ ସବୁଜ ସୁନ୍ଦର ରାୟଗଡ଼ା ଉପତ୍ୟକାର ବର୍ଣ୍ଣିଳ ପରିବେଶ! ଏଠି ଆମ ପରିବାର ସହିତ ସୁନ୍ଦର ଭାବେ ମିଶିଯାଇଥିବା କିଛି ପଡ଼ୋଶୀ ଏବଂ ଅଫିସର ସହୃଦୟ ସହକର୍ମୀବୃନ୍ଦଙ୍କୁ।

ଏହି ଅବସରରେ, ଦିନେ ସ୍ତ୍ରୀଙ୍କୁ ନେଇ ଥେରୁବାଲିସ୍ଥିତ 'ଇମ୍ଫା' କାରଖାନାର ଅନତି ଦୂରରେ ଅବସ୍ଥିତ, 'ପାଇକପଡ଼ା' ଶିବ ମନ୍ଦିରକୁ ଯାଇଥିଲି। ପାତାଳରୁ ଆବିର୍ଭୂତ ପାଇକପଡ଼ାର ଶିବଲିଙ୍ଗ ବେଶ୍ ପ୍ରତ୍ୟକ୍ଷ। ମନ୍ଦିରରେ ସ୍ତ୍ରୀ ମାନସିକ କରି ପକାଇଲେ, ଏଥର ଝିଅଟିଏ ହେଲେ ଏ ଶିବ ମନ୍ଦିରରେ ଭୋଗ କରିବେ। ଆଗରୁତ୍ ପୁଅଟିଏ ହୋଇଛି, ତେଣୁ ଏଥର ଝିଅଟିଏ ହେଉ। ସତକୁ ସତ ପ୍ରଭୁଙ୍କର ଅପାର କରୁଣାରୁ ରାୟଗଡ଼ା ଛାଡ଼ି ଆସିବାର ଅଳ୍ପ କିଛିଦିନ ପରେ ଆମକୁ କନ୍ୟାରତ୍ନଟିଏ ପ୍ରାପ୍ତ ହୋଇଥିଲା। ଏହାର ଅନେକ ଅନେକ ଦିନ ପରେ କେବେ ଥରେ ସୁବିଧା ମିଳିବାରୁ, ପୁନର୍ବାର ସସ୍ତ୍ରୀକ ରାୟଗଡ଼ା ଆସି, ପାଇକପଡ଼ାର ଶିବ ମନ୍ଦିରରେ ସ୍ତ୍ରୀଙ୍କର ମନସା ପୂରଣ କରିଥିଲୁ।

ଇତି ମଧ୍ୟରେ କୋରାପୁଟ ସର୍କଲ କଞ୍ଜରଭେଟର ସଦାନନ୍ଦ ପତିଙ୍କର ପ୍ରମୋଶନ ହୋଇ ବଦଳି ହୋଇଗଲା। ତାଙ୍କ ସ୍ଥାନରେ ବନମଣ୍ଡଳାଧୀଶ ଭାବରେ ନିଯୁକ୍ତି ପାଇଥାନ୍ତି, ଭାରତୀୟ ବନସେବାର ଅନ୍ୟତମ ବରିଷ୍ଠ ଅଫିସର୍ ଶ୍ରୀ ମନି ମିତ୍ର। ଶ୍ରୀଯୁକ୍ତ ମିତ୍ର ଅଗଷ୍ଟ ମାସ ୨୬ ତାରିଖ ଦିନ ରାତି ବାରଟା ପରେ କୋରାପୁଟ ମଣ୍ଡଳର ଦାୟିତ୍ୱଗ୍ରହଣ କଲେ। ମିତ୍ରସାହେବ ଚାଲିଚଳଣ, ହାବଭାବରେ ବେଶ୍ ଧର୍ମପରାୟଣ ଥିଲେ। ପାଞ୍ଜି ଦେଖି ଶୁଭ୍ ତିଥି, ବାର, ନକ୍ଷତ୍ର ଓ ମାହେନ୍ଦ୍ରବେଳାର ସେ କୌଣସି କାର୍ଯ୍ୟର ଶୁଭାରଂଭ କରୁଥିଲେ। ହୁଏତ ସେହି କାରଣରୁ ବୋଧହୁଏ,ବେଳା ଲଗ୍ନ ସ୍ଥିର କରି ସେଦିନ ରାତି ୨ଟା ରେ ସ୍ନାନ କର୍ମ ସମାପନ କରି ଶାବର ଶ୍ରୀକ୍ଷେତ୍ରର ଜଗନ୍ନାଥ ମନ୍ଦିରକୁ ଯାଇ, ବେଢ଼ା ବାହାରୁ ଠାକୁରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଅଫିସ୍‌କୁ ଆସିଥିଲେ ଏବଂ ରାତିର ବିଳମ୍ବିତ ପ୍ରହରରେ ଅର୍ଥାତ୍ ରାତି ୨ଟା ୩୦ ମିନିଟ୍‌ରେ ଦାୟିତ୍ୱ ଗ୍ରହଣ ପୁସ୍ତିକାରେ ସ୍ୱାକ୍ଷର କରିଥିଲେ।

ତହିଁ ପରଦିନ ଅର୍ଥାତ୍ ୨୭ ତାରିଖ ପୂର୍ବାହ୍ନରେ ପୂର୍ବତନ ବନସଂରକ୍ଷକଙ୍କୁ ବିଦାୟ ସଂବର୍ଦ୍ଧନା ଏବଂ ନୂତନ ବନସଂରକ୍ଷକଙ୍କୁ ସ୍ୱାଗତ କରିବା ନିମନ୍ତେ ଏକଜୁଟ ହୋଇଥିବା କୋରାପୁଟ ବନମଣ୍ଡଳର ଡି.ଏଫ.ଓ. ମାନଙ୍କ ସହିତ ବିଭିନ୍ନ ସମସ୍ୟା ସଂପର୍କରେ ଆଲୋଚନା କରିଥିଲେ। ଅପରାହ୍ନରେ ମିତ୍ର ମହୋଦୟ କଟକ ଫେରିଯାଇଥିଲେ।

ତିନି ଚାରିଦିନ ପରେ, ଜୟପୁରର ତତ୍‌କାଳୀନ ଡି.ଏଫ. ଓ ଶ୍ରୀଯୁକ୍ତ ଷ୍ଟିଫେନ୍ ବେହେରା କଟକ ଯାଇଥିଲେ ଏବଂ ଫେରିଲାବେଳେ ବାଟରେ ରାୟଗଡ଼ାରେ ଆମ

ଘରକୁ ଆସିଥିଲେ। କଥା ପ୍ରସଙ୍ଗରେ ଷ୍ଟିଫେନବାବୁ କଟକରେ ନୂଆ କଞ୍ଜେରଭେଟରଙ୍କ ସହ ଦେଖା ହୋଇଥିବା କଥାକହିଲେ। ମିତ୍ର ସାହେବ ତାଙ୍କ ହାତରେ ମୋ ପାଖକୁ ସନ୍ଦେଶ ପଠାଇଥିଲେ। ସେ କୋରାପୁଟ ନ ଫେରିବା ପର୍ଯ୍ୟନ୍ତ ଏବଂ ତାଙ୍କ ଠାରୁ ଲିଖିତ ଆଦେଶ ନ ପାଇବା ପର୍ଯ୍ୟନ୍ତ, ମୁଁ ଅନ୍ୟ କାହାକୁ ଦାୟିତ୍ୱ ହସ୍ତାନ୍ତର କରିବି ନାହିଁ ବା ରାୟଗଡ଼ା ଛାଡ଼ିବି ନାହିଁ।

ଏକଥାଶୁଣି ମୋ ମୁଣ୍ଡରେ ଚଡ଼କ ପଡ଼ିଲା। କିଏ ଜାଣେ ହୁଏତ କଞ୍ଜରଭେଟର ମୋତେ ଆଦୌ ରାୟଗଡ଼ାରୁ ରିଲିଭ୍ ନ କରି ପାରନ୍ତି ଏଭଳି ପରିସ୍ଥିତି ଯଦି ଆସେ, ତେବେ ଭବିଷ୍ୟତରେ ସାମାଜିକ ବନ ପ୍ରକଳ୍ପର ମୁଖ୍ୟ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ଦାସଙ୍କର ରୋଷର ଶିକାର ମୋତେ ହେବାକୁ ପଡ଼ିବ ଏବଂ ମୁଁ ବଦଳି ବାତିଲ କରିବା ପାଇଁ ଚେଷ୍ଟା କରୁଛି ବୋଲି ଉଠିବ। ଏଣୁ ମାଇଲେ ଗୋ ହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା।

ଅଗତ୍ୟା ନିରୁପାୟ ହୋଇ, ବନ ବିଭାଗର ମୁଖ୍ୟ ଶ୍ରୀଯୁକ୍ତ ପଦାରବିନ୍ଦ ମହାପାତ୍ରଙ୍କ ସହ ଟେଲିଫୋନ୍‌ରେ ଯୋଗାଯୋଗ କଲି, ମୋର ଅସହାୟ ଅବସ୍ଥା ସଂପର୍କରେ ସମ୍ୟକ ସୂଚନା ଦେଇ, ରାୟଗଡ଼ାରେ କାର୍ଯ୍ୟରତ ଏ.ସି.ଏଫ ତଥା ଅନ୍ୟତମ ଆଇ.ଏଫ. ଏସ୍. ଅଫିସର ଗୌରୀନାଥଙ୍କୁ ଦାୟିତ୍ୱ ହସ୍ତାନ୍ତର କରିବା ନିମନ୍ତେ ନିର୍ଦ୍ଦେଶ ଦେବାକୁ ଅନୁରୋଧ ଜଣାଇଲି। ଏ ବିଷୟରେ ଖୁବ୍ ଶୀଘ୍ର କିଛି ଗୋଟାଏ ନିଷ୍ପତ୍ତି ନେଇ ମୋତେ ଜଣେଇଦେବେ କହି ପଦାରବିନ୍ଦବାବୁଙ୍କୁ ଫୋନ୍ ରଖିଦେଲେ।

ଦିନେ ଦି'ନ ଭିତରେ, କଟକସ୍ଥିତ ବନବିଭାଗ ମୁଖ୍ୟ କାର୍ଯ୍ୟାଳୟରୁ ଫୋନ୍‌ରେ ମୌଖିକ ନିର୍ଦ୍ଦେଶ ଆସିଗଲା- ରାୟଗଡ଼ାଠାରେ ଅବସ୍ଥାପିତ, ବନୀକରଣ ବିଭାର ଡି.ଏଫ. ଓ ତଥା ଓଡ଼ିଶା ବନସେବାର ବରିଷ୍ଠ ଅଫିସର ଜଗବନ୍ଧୁ ମହାନ୍ତିଙ୍କୁ (ବର୍ତ୍ତମାନ ସ୍ୱଗତ) ମୁଁ ଦାୟିତ୍ୱ ହସ୍ତାନ୍ତର କରିପାରିବି।

ରାୟଗଡ଼ାରୁ ବିଦାୟ ନେବାର ବେଳ ଆସିଗଲା। ବଦଳି ଆଦେଶ ପାଇବା ପରଠାରୁ ଆସବାବପତ୍ର ପ୍ୟାକିଙ୍ଗ୍ ଆରମ୍ଭ ହୋଇଯାଇଥିଲା। ଦୈନନ୍ଦିନ ଚଳଣି ପାଇଁ ଯେଉଁ କେତୋଟି ଛୋଟ ମୋଟ ବ୍ୟବହାର୍ଯ୍ୟ ଜିନିଷ ବାହାରେ ରହିଥିଲା, ତାକୁ ମଧ୍ୟ ବନ୍ଧାବନ୍ଧି କରିବା ଆରମ୍ଭ କରିଦେଲୁ। ଦାୟିତ୍ୱ ହସ୍ତାନ୍ତର କରିବାର ଦୁଇଦିନ ପୂର୍ବରୁ ଟ୍ରକ୍‌ଟିଏ ଭଡ଼ା କରି, ପ୍ୟାକିଙ୍ଗ୍ କରାଯାଇଥିବା ସାମାନପତ୍ର, ଆମ ଗାଁ ମୁକୁନ୍ଦପ୍ରସାଦକୁ

ପଠାଇଦେଲୁ । ଗାଁ ଘରେ ଠିକ୍ ଠାକ୍ ଜିନିଷ ପହଞ୍ଚାଇ ଦେବା ପାଇଁ ଟ୍ରକ୍ ସହିତ ଡିଭିଜନ୍‌ର ଜଣେ ଷ୍ଟାଫ୍ ମଧ୍ୟ ଯାଇଥିଲେ।

ରାୟଗଡ଼ାରେ ଆମର ରହଣି ଥିଲା ମାତ୍ର ଦେଢ଼ବର୍ଷ। ସ୍ୱଳ୍ପ ସମୟର ଅବଧି ହୋଇଥିଲେ ମଧ୍ୟ, ଘରଟା ପ୍ରତି କେମିତି ମାୟା ଆସି ଯାଇଥିଲା। ଡି.ଏଫ.ଓ. ଚାକିରି ଆରମ୍ଭ କରିବାର ପ୍ରାୟ ସାଢ଼େ ତିନିବର୍ଷ ପରେ ଏମିତି ଏକ ବିଶାଳ କମ୍ପାଉଣ୍ଡ୍ ବିଶିଷ୍ଟ ସରକାରୀ ବାସଗୃହଟିଏ ଆମକୁ ମିଳିଥିଲା। ଘର ସାମ୍ନାରେ ଥିବା ପୁରାତନ ଶାଖା, ପ୍ରଶାଖା ବିଶିଷ୍ଟ ଝଙ୍କାଳିଆ ସ୍ୱର୍ଣ୍ଣଚମ୍ପା ଗଛଟି ବର୍ଷର ଅଧିକାଂଶ ସମୟ ଫୁଲରେ ମଣ୍ଡି ହୋଇ ମହକୁ ଥିଲା। ସାମ୍ନାରେ ସୁନ୍ଦର ଲନ୍ ଏବଂ ଲନ୍ କଡ଼େକଡ଼େ ଫୁଲବଗିଚା ଆମେ କରିଥିଲୁ। ଏଇ ଘରୁ ପୁଅ ଆମର ପ୍ରଥମ କରି ସ୍କୁଲ ଯିବା ଆରମ୍ଭ କରିଥିଲା। ଅପରାହ୍ନରେ ତାର ତିନିଚକିଆ ସାଇକେଲ୍‌ରେ ବସି ଫୁଲ ବଗିଚା ଭିତରେ ରହିଥିବା ଘାସ ଲନ୍‌ରେ ଘିରିଘିରି ବୁଲୁଥିଲା, ନଚେତ ନଇଁ ଆସିଥିବା ଚମ୍ପାଗଛର ଡାଳରେ ଚଢ଼ି ଡାଳମାଙ୍କୁଡ଼ି ଖେଳୁଥିଲା। ଘର ଅଗଣା ଓ ବାରିପଟେ ଥିବା ଦୁଇଟି ବୟସ୍କ ପଣସ ଗଛର ଗଣ୍ଡି ଖରାଦିନେ ଶହ ଶହ ପଣସ କଷିରେ ଭରିଯାଉଥିଲା। ସାହି, ପଡ଼ିଶା, ଅଫିସର, ଷ୍ଟାଫ୍‌ମାନଙ୍କ ଭିତରେ ବାଣ୍ଟିଲେ ମଧ୍ୟ ସରୁ ନଥିଲା।

ଘର ଛାଡ଼ିବା କଥା ଭାବି ଦେଲାବେଳକୁ ମୁଁ ଓ ମୋ ସ୍ତ୍ରୀ ମୋହଗ୍ରସ୍ତ ହୋଇପଡୁଥିଲୁ। କିଂତୁ ସରକାରୀ ଚାକିରିରେ ଏମିତି ଅନେକ ସମୟ ଆସିବ, ଯେଉଁଠି ଆପଣେଇ ନେଇଥିବା ଘରଟିକୁ ଛାଡ଼ିବାକୁ ପଡ଼ିବ ଏବଂ ପୁଣି କେବେ, କେଉଁଠି ଘରଟିଏ ମିଳିଲେ ତାକୁ ନିଜର କରିବାକୁ ପ୍ରଚେଷ୍ଟା କରିବାକୁ ପଡ଼ିବ।

ସେପ୍ଟେମ୍ବର ଦଶ ତାରିଖ ଦିନ ପୂର୍ବାହ୍ନ ଦଶଟା ସମୟରେ ବନୀକରଣ ଡି.ଏଫ୍. ଓ. ଶ୍ରୀ ଜଗବନ୍ଧୁ ମହାନ୍ତିଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ସଂଗେ ସଂଗେ ଆମେ ରାୟଗଡ଼ା ଛାଡ଼ିଲୁ।

ମନରେ ଆଶଙ୍କା ଛାଇ ରହିଥାଏ। ନଅମାସର ଗର୍ଭବତୀ, ଆସନ୍ନ ପ୍ରସବା ସ୍ତ୍ରୀଙ୍କୁ, କେଭି ଲାଇନ୍‌ରେ ଘାଟି ରାସ୍ତା ଦେଇ ପ୍ରାୟ ୪୦୦ କିଲୋମିଟର ଦୂର କଟକକୁ ବଦଳି ଅବସରରେ ସ୍ଥାନାନ୍ତରିତ କରିବା କେତେ ଦୂର ଯୁକ୍ତିଯୁକ୍ତ ତଥା ବିପଦମୁକ୍ତ, ଏକଥା ମୁଁ ନିଜ ମନକୁ ମଧ୍ୟ ବୁଝାଇ ପାରୁ ନଥାଏ। ରାୟଗଡ଼ା ଛାଡ଼ିବା ଦିନ ସକାଳେ, ସଦର

ହସ୍ପିଟାଲର ସ୍ତ୍ରୀ ରୋଗ ବିଶେଷଜ୍ଞ ଡ. ପଟ୍ଟନାୟକଙ୍କ ସହ ମଧ୍ୟ ପରାମର୍ଶ କରିଥିଲୁ। ଗର୍ଭାବସ୍ଥା ଆରମ୍ଭରୁ ସ୍ତ୍ରୀ ତାଙ୍କର ତତ୍ତ୍ୱାବଧାନରେ ଥିଲେ। ଡକ୍ଟର ମତ ଦେଲେ ଏପରି ସମୟରେ ପାହାଡ଼ିଆ ଘାଟି ରାସ୍ତାରେ ଯାତ୍ରା କରିବା ନିଶ୍ଚିତ ଭାବେ ବିପଦଜନକ। ଯାତ୍ରା କ୍ଲେଶ ଜନିତ ଧକଡ଼ଚକଡ଼ରେ କେଉଁ ମୁହୂର୍ତ୍ତରେ ଗର୍ଭଯନ୍ତ୍ରଣା ଆରମ୍ଭ ହୋଇଯାଇପାରେ। ଯଦି ଯିବା ନିହାତି ଜରୁରୀ,ତେବେ ପ୍ରତି ଦୁଇ ତିନି ଘଣ୍ଟା ଯାତ୍ରା ପରେ, ଅନ୍ତତଃପକ୍ଷେ ନିକଟରେ ଥିବା ଯେ କୌଣସି ଡାକବଙ୍ଗଳାରେ ଅନ୍ତତଃ ପକ୍ଷେ ଘଣ୍ଟାଏ ଶୋଇ ରହି ବିଶ୍ରାମ ନେବାକୁ ସେ ପତ୍ନୀଙ୍କୁ ପରାମର୍ଶ ଦେଲେ। ତା' ଛଡ଼ା ଡେଲିଭରି ସମୟକୁ କିଛି ଦିନ ଘୁଞ୍ଚାଇ ଦେବାକୁ, ସେ କିଛି ଔଷଧ ମଧ୍ୟ ଖାଇବାକୁ ଦେଲେ। କଟକରୁ ସ୍ତ୍ରୀଙ୍କର ବାପା ଡାକ୍ତର ଜୟକୃଷ୍ଣ ମହାନ୍ତି (ସଂପ୍ରତି ସ୍ୱଗତ) ମଧ୍ୟ ଅନୁରୂପ ପରାମର୍ଶ ଦେଇଥିଲେ।

ଆମ୍ବାସାଡ଼ର କାର୍‌ଟିଏ ଭଡ଼ା କରି ମୁଁ, ସ୍ତ୍ରୀ ଓ ପୁଅ ଟିକନ ରାୟଗଡ଼ାରୁ ବିଦାୟ ନେଲୁ। ସମସ୍ତଙ୍କର ଆଖି ଛଳ ଛଳ। ବିଦାୟ ଦେବା ଲୋକଙ୍କର ଏବଂ ବିଦାୟ ନେବା ଲୋକଙ୍କର। ଉଭୟଙ୍କର ଆଖି ଅଶ୍ରୁଳ। ସାଙ୍ଗରେ ରାୟଗଡ଼ା ଡିଭିଜନ୍‌ର ଅନ୍ୟତମ ଏ.ସି.ଏଫ୍. ଶ୍ରୀ ରଙ୍ଗାଧର ମିଶ୍ର ମଧ୍ୟ ଜିପ୍‌ଟିଏ ନେଇ ବ୍ରହ୍ମପୁର ପର୍ଯ୍ୟନ୍ତ ବାଟେଇ ଦେବାକୁ ଆସିଥିଲେ। ବାଟରେ କିଛି ଅସୁବିଧା ହେଲେ ତାଙ୍କର ସାହାଯ୍ୟ ଏକାନ୍ତ ଜରୁରୀ ଥିଲା।

କୈଳାସକୋଟା ଘାଟି ଟପି, କେଭି ଲାଇନ୍ ଧରିଲାବେଳକୁ ସମୟ ଦିନ ସାଢ଼େ ଏଗାରଟା। କାର୍‌ର ପଛ ସିଟ୍‌ରେ ମୁଣ୍ଡ ତଳେ ପତଳା ତକିଆଟିଏ ଦେଇ ସ୍ତ୍ରୀ ଶୋଇ ରହିଥାନ୍ତି। ଆଗ ସିଟ୍‌ରେ ମୁଁ ପୁଅକୁ କୋଳରେ ଧରି ବସିଥାଏ। ଗୁମୁଡ଼ାଠାରେ ବଂଶଧାରା ନଦୀର ପୋଲ ଆସିବା ପର୍ବୂରୁ ପଡ଼ିବ ପୂର୍ତ୍ତବିଭାଗର ଡାକବଙ୍ଗଳା। ସେଠି ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥାଏ। ବଙ୍ଗଳାରେ ପହଞ୍ଚିଲାବେଳକୁ ମଧ୍ୟାହ୍ନ ଗୋଟାଏ। ଯେତେଦୂର ସଂଭବ ଧୀରେ ଧୀରେ ଯାତ୍ରା କରୁଥିଲେ ମଧ୍ୟ, ସ୍ତ୍ରୀ ତଳି ପେଟରେ ସାମାନ୍ୟ ଯନ୍ତ୍ରଣା ଅନୁଭବ କରିବାରୁ ଅପରାହ୍ନ ପ୍ରାୟ ତିନିଟା ବେଳକୁ ପୁର୍ନବାର ଯାତ୍ରା ଆରମ୍ଭ ହେଲା। ପରବର୍ତ୍ତୀ ଗନ୍ତବ୍ୟ ସ୍ଥଳ ଥାଏ ତପ୍ତପାଣି ଘାଟିର ଡାକବଙ୍ଗଳା।

ମନେ ପଡ଼ିଯାଉଥାଏ, ଏହି କେଭି ଲାଇନ୍ କଡ଼େ କଡ଼େ ଯାଇଥିବା ପାହାଡ଼ିଆ ରସ୍ତାରେ ଆମେ ଅନେକଥର ସରକାରୀ କାର୍ଯ୍ୟ ଅବସରରେ କଟକ ଯାଇଛୁ। ଜିପ୍

ଆଗରେ ମୁଁ ବସେ। ପଛପଟେ ସ୍ତ୍ରୀ ଓ ତାଙ୍କ କୋଳରେ ପୁଅ। ଜିପ୍ ଚାଲିବାର କିଛି ସମୟ ପରେ ପୁଅ ନିଶ୍ଚିନ୍ତରେ ପଛ ସିଟ୍‌ରେ ସ୍ତ୍ରୀଙ୍କ କୋଳରେ ମୁଣ୍ଡ ଦେଇ ଶୋଇ ଯାଏ। ଥରକର କଥା, ରୟାଗଡ଼ାରୁ କଟକ ଯିବା ବାଟରେ ତପ୍ତପାଣି ଘାଟିରେ ଜିପ୍ ତଳକୁ ଗଡୁଥିବା ବେଳେ, ନିଦ ଭାଙ୍ଗି ଯିବାରୁ ପୁଅ ଉଠି ବସିଲା ଏବଂ ମୋ ପାଖକୁ ଆଗ ସିଟ୍‌କୁ ଆସିବାକୁ ଚାହିଁଲା। ଆକାଶରେ ମେଘ ଢାଙ୍କି ହୋଇ ରହିଥାଏ। ରାସ୍ତା କଡ଼େ ଯାଇଥିବା ଇଲେକ୍‌ଟ୍ରିକ୍ ଖୁଣ୍ଟକୁ ସଂଯୋଗ କରୁଥିବା ତାରରେ ପକ୍ଷୀମାନେ ଇତସ୍ତତଃ ଉଡ଼ିଆସି ବସି ଯାଉଥାନ୍ତି। କିଛି ସମୟ ନିବିଡ଼ ଭାବେ ବାହାରକୁ ଚାହିଁଲା ପରେ, ଆକାଶର କଳା ଘୁମର ମେଘକୁ ଲକ୍ଷ୍ୟ କରି, ପୁଅ ଦିପଦ ଗୀତ ମନରୁ ପ୍ରସ୍ତୁତ କରି ଗାଇଦେଲା। ମନ ମୋର ତୃପ୍ତିରେ ଜୁଡୁବୁଡୁ ହୋଇଗଲା। ଯାହାହେଉ, ବାପ ପରି ପୁଅ ଭିତରେ ମଧ୍ୟ କାବ୍ୟିକ ଆତ୍ମାଟିଏ ଉଙ୍କି ମାରୁଛି।

ତପ୍ତପାଣିସ୍ଥିତ ବଙ୍ଗଳାରେ ପହଞ୍ଚିଲାବେଳକୁ ସଂଧ୍ୟା ଆଗତ ପ୍ରାୟ। ଆଉ କିଛି ବାଟ ତଳକୁ ଓହ୍ଲେଇଗଲେ, ଘାଟି ରାସ୍ତାର ସମାପ୍ତି ଘଟିବ । ତେଣିକି କେବଳ ସମତଳ ରାସ୍ତା। ତପ୍ତପାଣି ବଙ୍ଗଳାରେ ସ୍ତ୍ରୀ ପ୍ରାୟ ଘଣ୍ଟାଏ ଦେଢ଼ଘଣ୍ଟା ଶୋଇ ରହି ବିଶ୍ରାମ ନେଲେ, ପେଟର ଯନ୍ତଣା ଅପେକ୍ଷାକୃତ କମିଯାଇଥାଏ। ବାଟରେ ଦିନ ସାରା ସେ କିଛି ଖାଇ ନଥିଲେ, ସାଙ୍ଗରେ ନେଇଥିବା ଫଳ ଓ ମିଠା ଖାଇବା ପରେ ଚା'ପାନ କରି ତପ୍ତପାଣି ଛାଡ଼ିଲୁ। ବ୍ରହ୍ମପୁର ସହରରେ ରାତି ସାଢ଼େ ନଅଟା ପାଖାପଖି ପହଞ୍ଚି, ସେଠିକାର ପୌରନିଗମ ଅତିଥିଶାଳାରେ ରାତ୍ରୀଯାପନ କଲୁ।

ପଛରେ ରହିଗଲା, ବିଗତ ଦେଢ଼ବର୍ଷ ଧରି ଆପଣେଇ ନେଇଥିବା ପ୍ରିୟ ସହର-ରାୟଗଡ଼ା। 'କୈଳାସକୋଟା' ଓ 'ଗୁମ୍ମାଘାଟି' ମଝିରେ ରହିଥିବା ଅବଗୁଣ୍ଠିତ ଉପତ୍ୟକା, ସ୍ୱର୍ଣ୍ଣଚମ୍ପାର ସହର ରାୟଗଡ଼ା। କିଛି ସଫଳତା ଓ କିଛି ବିଫଳତାରେ ପେଣ୍ଟାଫେଣ୍ଟି ସହର ରାୟଗଡ଼ା !





ଶିଳ୍ପୀ ରାଜକୁମାରଙ୍କ ତୂଳୀରେ ବିଜୟ କେତନ



ପତ୍ନୀ ଲିପିକାଙ୍କ ସହ ବିଜୟ କେତନ



କନ୍ୟା ରୋମିଲା, ପୁତ୍ର ବିଶ୍ୱଜିତ୍ ଓ ପତ୍ନୀ ଲିପିକାଙ୍କ ସହ ବିଜୟ କେତନ



କୌତୁକ ପୋଷାକ ପ୍ରତିଯୋଗିତାରେ କୃଷ୍ଣ ସାଜିଥିବା ପୁଅ ଟିକନ
ରାୟଗଡ଼ା ଡି.ଏଫ୍.ଓ.ଙ୍କ ବାସଗୃହ ସାମ୍ନା ଚମ୍ପାଗଛର ନୂଆଁଣିଆ ଡାଳରେ ବସିଛି



ରାୟଗଡ଼ା ଡିଭିଜନ୍‌ର ରଜତ ଜୟନ୍ତୀ ଉତ୍ସବ ଅବସରରେ ଆୟୋଜିତ
ପ୍ରଦର୍ଶନୀରେ ଲେଖକ, ମୁଖ୍ୟ ବନ ସଂରକ୍ଷକ ପଦ୍ମାରବିନ୍ଦ ବାବୁ ଓ
କୋରାପୁଟର ବନ ସଂରକ୍ଷକ ସଦାନନ୍ଦ ପତି



ଉମରକୋଟ ବ୍ଲକ୍‌ରେ ପ୍ଲାଣ୍ଟେସନ୍ ପାଇଁ ପ୍ରସ୍ତୁତି



ଉମରକୋଟ ବିଧାୟିକା ଶ୍ରୀମତୀ ପରମା ପୂଜାରୀଙ୍କ ସହ ଲେଖକ



ମୃତ ବାଘୁଣୀ ସହିତ ବାମପଟେ ବନ୍ଧୁକ ସହ ଲେଖକ
ଏବଂ ଡାହାଣପଟେ ଶିକାରୀ ଶ୍ରୀ କୃଷ୍ଣମୂର୍ତ୍ତି



ବାମରୁ ବନ୍ଧୁକ ସହ ଶିକାରୀଙ୍କ ସହଯୋଗୀ, ଶିକାରୀ ଶ୍ରୀ କୃଷ୍ଣମୂର୍ତ୍ତି
ଏବଂ ସ୍ଥାନୀୟ ରେଞ୍ଜର ଶ୍ରୀ ତ୍ରିପାଠୀ



ମୃତ ବାଘୁଣୀ ନିକଟରେ ଡରରେ ଜିଭ କାମୁଡ଼ି ପକାଇଛି କୁନିପୁଅ ଟିକନ



ଷ୍ଟେସନ୍ ୱାଗନ୍ ବନେଟ୍ ଉପରେ ମୃତ ବାଘୁଣୀ ।
ଡାହାଣରୁ ଦ୍ୱିତୀୟ, ଲେଖକଙ୍କ ପତ୍ନୀ ଲିପିକା



ନିୟମଗିରିର ଡଙ୍ଗରିଆ କନ୍ଧ



ରାୟଗଡ଼ା କବିତା ଉତ୍ସବରେ ଭାଷଣ ଦେଉଛନ୍ତି ଲେଖକ



ଡେରାଡୁନ୍‌ଠାରେ ସହପାଠୀ ବନ୍ଧୁମାନଙ୍କ ଗହଣରେ ଲେଖକ (ବାମରୁ ଦ୍ବିତୀୟ)



ମସୌରୀର 'ଗନ୍‌ହିଲ୍' ଉପରେ ଶନିବାରର ଫିଲ୍ଡ
ଏକସ୍‌କରସନ୍ ପରେ । ଲେଖକ-ବାମରୁ ପ୍ରଥମ



ଓଡ଼ିଆ ସମାଜ, ଡେରାଡୁନ୍ ତରଫରୁ ଆୟୋଜିତ ସାଂସ୍କୃତିକ
କାର୍ଯ୍ୟକ୍ରମରେ ନୃତ୍ୟଶିକ୍ଷୀଙ୍କ ଗହଣରେ ଲେଖକ



ଡେରାଡୁନ୍‌ରେ ବେଙ୍ଗଲୀ ଏବଂ ଓଡ଼ିଆ ସମାଜର ଏକ
ମିଳିତ ବଂଧୁମିଳନ କାର୍ଯ୍ୟକ୍ରମରେ ଲେଖକ



ଭାରତୀୟ ବନ ମହାବିଦ୍ୟାଳୟ କ୍ୟାମ୍ପସ୍‌ରେ ଦୀପାବଳିରେ ଲେଖକ



ନବରଂଗପୁର ୟୁକାଲିପଟାସ୍ ପ୍ଲାଣ୍ଟେସନ୍ ଭିତରେ ଲେଖକ



ନବରଂଗପୁର ଡିଭିଜନ୍ ପ୍ଲାଣ୍ଟେସନ୍‌ରେ ଲେଖକ



ମସୌରୀରୁ ହିମାଳୟ ଦର୍ଶନ ଯାଇଥିବା ଅବସରରେ ଲେଖକ



ପତ୍ନୀ ଲିପିକାଙ୍କ ସହ ବିଜୟ କେତନ




ରାୟଗଡ଼ା ବନଖଣ୍ଡର ରଜତ ଜୟନ୍ତୀ ଉତ୍ସବରେ (ବାମରୁ ଡାହାଣକୁ)
ଉଦ୍‌ବୋଧନ ଦେଉଛନ୍ତି ଲେଖକ, ମଞ୍ଚାସୀନ କୋରାପୁଟ ବନ ସଂରକ୍ଷକ
ସଦାନନ୍ଦ ପତି, ତତ୍‌କାଳୀନ ରାଜ୍ୟ ମୁଖ୍ୟ ବନ ସଂରକ୍ଷକ ପଦାରବିନ୍ଦ
ମହାପାତ୍ର ଏବଂ ଜଙ୍ଗଲ ବିଭାଗ ମନ୍ତ୍ରୀ କୁଆଁରିଆ ମାଝି



ନବରଂଗପୁର ଅରଣ୍ୟରେ ଲେଖକ

## ଶ୍ରୀ ବିଜୟ କେତନ ପଟ୍ଟନାୟକ



ଜନ୍ମ : ଭାଦ୍ରବ କୃଷ୍ଣ ଜନ୍ମାଷ୍ଟମୀ, ୧୯୪୯
ପ୍ରକାଶିତ ପୁସ୍ତକ : ଛାମୁଙ୍କ ଆଖି ଲୁହ, ନଈ ପରି ଝିଅ (କବିତା) ଉଡ଼ି ଉଡ଼ି ଯାଏ 'କ', ଜୀବ ଜଗତର ଅଜବ କଥା, ବୃକ୍ଷ ହିଁ ଜୀବନ, ଚାଲ ବଣକୁ ଯିବା, ଆମ ରାଇଜ୍ ଆମ ପକ୍ଷୀ, ଆମ ବାଡ଼ି ବଗିଚାର ଔଷଧୀୟ ବୃକ୍ଷ, ଲତା ଓ ଗୁଳ୍ମ (ଶିଶୁ ସାହିତ୍ୟ), ପରିବେଶ ପରିକ୍ରମା, ଅରଣ୍ୟ ଓ ପରିବେଶ, ପରିବେଶ ପରିଚିତି, ଓଡ଼ିଶାର ଅରଣ୍ୟରେ (ଅନୁବାଦ)।

'ଅରଣ୍ୟଯାତ୍ରୀ' କବି ବିଜୟ କେତନ ପଟ୍ଟନାୟକଙ୍କ ଆତ୍ମ କଥନ। ନିଜ କର୍ମମୟ ଜୀବନ ଭିତରେ ସେ ଅନେକଥର ଭେଟିଛନ୍ତି ଅରଣ୍ୟକୁ, ଅରଣ୍ୟର ଅତୁଳନୀୟ ସୌନ୍ଦର୍ଯ୍ୟକୁ। ବନାନୀର ବିଜନତା, ବୃକ୍ଷର ବିଶାଳତା ବା ବିହଙ୍ଗର ବର୍ଣ୍ଣମୟତା ବାରବାର ବିଭୋର କରିଛି ତାଙ୍କୁ। କେବେ କଲମରୁ କବିତା ଝରିଛି ତ କେବେ କହିଛନ୍ତି କାହାଣୀ। ସେ କାହାଣୀରେ ଅଛି ଅଝାଡ଼ି ଅରଣ୍ୟର ଅନନ୍ୟ ଅନୁଭବ। କର୍ମମୟ ଜୀବନର ସଫଳତା ଓ ବିଫଳତା।

ବନବିଭାଗର ଜଣେ ପଦସ୍ଥ ଅଧିକାରୀଭାବେ କାର୍ଯ୍ୟରତ ଶ୍ରୀ ପଟ୍ଟନାୟକଙ୍କ ଏଇ ଆତ୍ମକଥନ ଯେତିତି ପାଠକୀୟ ସେତିକି ପ୍ରତିଶ୍ରୁତିବଦ୍ଧ। ଆଶା ପାଠକ ପାଠିକାମାନଙ୍କୁ ଏହା ଆନନ୍ଦ ଦେବ।

-ପ୍ରକାଶକ

